ସାହିତ୍ୟ ଅକାଦେମି ପୁରସ୍କାରପ୍ରାପ୍ତ ହିନ୍ଦୀ ଉପନ୍ୟାସ

# ଝରକା

ବିନୋଦ କୁମାର ଶୁକ୍ଳ

ଅନୁବାଦ

ଚଉଧୁରୀ ହେମକାନ୍ତ ମିଶ୍ର




ସାହିତ୍ୟ ଅକାଦେମି

*JHARAKA* : Oriya translation by Choudhury Hemakanta Mishra of Vinod Kumar Shukla's award-wining Hindi novel *Deewar Main Ek Khirkee Rahathi Thi*.Translation Centre, Kolkata, Sahitya Akademi, 2003. Price : Rs 80.



ISBN : 81-260-1545-4

ପ୍ରଥମ ପ୍ରକାଶ : ୨୦୦୩

ସାହିତ୍ୟ ଅକାଦେମି
ରବୀନ୍ଦ୍ର ଭବନ, ୩୫ ଫିରୋଜଶାହ ରୋଡ୍, ନୂଆଦିଲ୍ଲୀ ୧୧୦ ୦୦୧
ବିକ୍ରୟ କେନ୍ଦ୍ର : 'ସ୍ୱାତୀ', ମନ୍ଦିର ମାର୍ଗ, ନୂଆଦିଲ୍ଲୀ ୧୧୦ ୦୦୧
ଜୀବନତାରା, ୨୩ଏ/୪୪ଏକ୍ସ, ଡାଇମଣ୍ଡ ହାରବର ରୋଡ୍, କୋଲ୍କାତା ୭୦୦ ୦୫୩
ସି.ଆଇ.ଟି. କ୍ୟାମ୍ପସ, ଟି.ଟି.ଟି.ଆଇ. ପୋଷ୍ଟ, ତାରାମଣି, ଚେନ୍ନାଇ ୬୦୦ ୧୧୩
୧୭୨ ମୁମ୍ବାଇ ମରାଠୀ ଗ୍ରନ୍ଥ ସଂଗ୍ରହାଳୟ ମାର୍ଗ, ଦାଦର, ମୁମ୍ବାଇ ୪୦୦ ୦୧୪
ସେଣ୍ଟ୍ରାଲ କଲେଜ କ୍ୟାମ୍ପସ, ୟୁନିଭର୍ସିଟି ଲାଇବ୍ରେରୀ ବିଲ୍ଡିଂ,
ଡକ୍ଟର ଆମ୍ବେଦକର ଭୀଧି, ବାଙ୍ଗାଲୋର ୫୬୦୦୦୧

ମୂଲ୍ୟ : ୮୦ ଟଙ୍କା

ପ୍ରଚ୍ଛଦ : ତନୁଜ ମଲ୍ଲିକ

ଅକ୍ଷର ବିନ୍ୟାସ :
ସମର୍ ଗ୍ରାଫିକ୍ସ, ସହଦେବଖୁଣ୍ଟା, ବାଲେଶ୍ୱର ୭୫୬୦୦୧

ମୁଦ୍ରଣ :
ଡି. ଜି. ଅଫ୍‌ସେଟ୍, ୯୬/ଏନ୍, ମହାରାଣୀ ଇନ୍ଦିରା ଦେବୀ ରୋଡ୍, କୋଲ୍କାତା ୭୦୦୦୬୦

# ଅନୁବାଦ ବିଷୟରେ ପଦିଏ

ବିନୋଦ କୁମାର ଶୁକ୍ଳଙ୍କର ଉପନ୍ୟାସ 'ଦିୱାର ମେ ଏକ ଖିଡ଼କି ରହତୀ ଥୀ'କୁ ଓଡ଼ିଆରେ ଅନୁବାଦ କରିବାକୁ ସାହିତ୍ୟ ଅକାଦେମି ମୋତେ କାର୍ଯ୍ୟଭାର ଦେଇ ମୋର କୃତଜ୍ଞତା ଭାଜନ ହୋଇଛନ୍ତି । ଯଦ୍ୟପି ଏହି ଅନୁବାଦ ଭିତରୁ ମୁଁ ବହୁତ ଆନନ୍ଦ ପାଇଛି, ତଥାପି କିଛି କଷ୍ଟକାରିତା ମଧ୍ୟ ଅନୁଭବ କରିଛି ଯାହାକି ଉଲ୍ଲେଖଯୋଗ୍ୟ । ଏହି ଉପନ୍ୟାସରେ ଥିବା ପକ୍ଷୀ, ପନିପରିବା, ପୋଷାକ, ଅଳଙ୍କାର ଆଦିର ସମାର୍ଥକ ଓଡ଼ିଆ ପ୍ରତିଶବ୍ଦ ସଦାବେଳେ ମିଳିପାରିନାହିଁ । ଉଦାହରଣ ସ୍ୱରୂପ, ଗାଢ଼ ନୀଳବର୍ଣ୍ଣର ଏକ କ୍ଷୁଦ୍ରକାୟ ପକ୍ଷୀ 'ଫୁଲଚୁକ୍କୀ ଶକରଖୋର', ସ୍ତ୍ରୀ ଲୋକଙ୍କର ପରିଧେୟ 'ପୋଲ୍‌କା' ଓ ଛୁଇଁ କିମ୍ବା ଡାଙ୍ଗ ଥିବା ପରିବା 'ଜରା' । ସେହିପରି, ଗଛବୃକ୍ଷଙ୍କର ନାମ ମଧ୍ୟ ଅନ୍ୟ ଏକ ସମସ୍ୟା ହୋଇଛି । ଅନୁବାଦରେ ବେଳେ ବେଳେ ମୂଳ ହିନ୍ଦୀ ଶବ୍ଦ ଅବିକଳ ରଖାଯାଇଛି, ବେଳେବେଳେ ସଂକ୍ଷିପ୍ତ ଅର୍ଥ ଦିଆଯାଇଛି ଓ ବେଳେ ବେଳେ ଓଡ଼ିଆରେ ବୁଝିହେବା ଭଳି ଅନ୍ୟ କିଛି ଶବ୍ଦ ଦିଆଯାଇଛି । ତେବେ ଏଥିରେ ପାଠକଙ୍କର ରସଗ୍ରହଣରେ କିଛି ଅସୁବିଧା ହେବ ନାହିଁ ବୋଲି ଆଶା କରେ ।

ଶ୍ରୀ ଶୁକ୍ଳଙ୍କର ଭାଷା ଓ ଶୈଳୀ ଗଦ୍ୟ, ପଦ୍ୟ, ସ୍ୱପ୍ନ ଓ ଜାଗରଣ ମଧ୍ୟରେ ଘନ ଘନ ଯାତାୟାତ କରିଥାଏ । ଯଥାସମ୍ଭବ ସେହି ବାକ୍ୟରୀତିକୁ ଅବିକୃତ ରଖାଯାଇଛି । ଅନଭ୍ୟସ୍ତ ପାଠକ ପ୍ରଥମେ ସାମାନ୍ୟ ଅସୁବିଧା ବୋଧ କଲେ ମଧ୍ୟ ଅଳ୍ପ ସମୟ ମଧ୍ୟରେ ଏହାକୁ ଉପଭୋଗ କରିବେ ।

ଚଉଧୁରୀ ହେମକାନ୍ତ ମିଶ୍ର

# ଉପନ୍ୟାସରେ ପ୍ରଥମେ ଥିଲା ଏକ କବିତା

ଅଗଣିତରୁ ବାହାରିଥିଲା ଏକ ତାରା
ଏକ ତାରା ବା ଅଗଣିତଠାରୁ କିପରି ବାହାରିଥିଲା ?
ଅଗଣିତଠାରୁ ଭିନ୍ନ ହୋଇ
ଏକୁଟିଆ, ଏକାକୀ ।
ପ୍ରଥମେ ଥିଲା କିଛି ବେଳ ।
ଯେଉଁ ପବନ ଦମକାଏ ଆସିଥିଲା
ସେ ବି ଥିଲା ଅଗଣିତ ପବନର ଦମକାରୁ
ପ୍ରଥମ ଦମକା କିଛି ମୁହୂର୍ତ୍ତର
ଅଗଣିତରୁ ବାହାରି ଏକ ଲହଡ଼ି ବି
ପ୍ରଥମ, ବାସ୍ ନେଇ ମୁହୂର୍ତ୍ତକୁ ।
ଅଗଣିତର ଏକୁଟିଆ
ଅଗଣିତ ଏକୁଟିଆ ଅଗଣିତ ।
ଅଗଣିତଠାରୁ ଏକୁଟିଆ ଜଣେ
ସଙ୍ଗିନୀ ଆଜୀବନ ।

ହାତୀ ଆଗେଇ ଆଗେଇ ବାହାରି ଯାଉଥିଲା ଓ
ତା ପଛକୁ ହାତୀର ଖାଲି ଜାଗା ଛାଡ଼ି ଯାଉଥିଲା ।

ଆଜିର ସକାଳ । ସୂର୍ଯ୍ୟୋଦୟ ପୂର୍ବ ଦିଗରେ ଥିଲା । ଦିଗ ପୂର୍ବ ପରି ରହି ଆସିଛି, ବଦଳି ନାହିଁ । ଯା ବି ନୁହେଁ ଯେ ସୂର୍ଯ୍ୟ ଭୁଲ କରି ବାହାରିଛି, ସେ ବାହାରିବା କଥାରେ ସମସ୍ତଙ୍କର ବିଶ୍ୱାସ ଥିଲା । ଦିନେ ଦିନେ ସୂର୍ଯ୍ୟ ମେଘ ଭିତରେ ଲୁଚି ବାହାରୁଥିଲା କିନ୍ତୁ ନିଶ୍ଚୟ ବାହାରୁଥିଲା । ତାହାର ଉଦୟ ଓ ଅସ୍ତ ଥିଲା ସତ୍ୟ । ସୂର୍ଯ୍ୟର ଉଦୟ ହେବାର ପ୍ରମାଣ ଭଳି ଥିଲା ଦିନ ଓ ସୂର୍ଯ୍ୟାସ୍ତର ପ୍ରମାଣ ଭଳି ରାତି ହୋଇଯାଉଥିଲା । ଏବେ ରାତି ହୋଇଛି କଳା । ରାତିର କଳାରେ ସବୁ କଳା ଦିଶୁଥିଲା । ଦିନ ଏପରି ପାରଦର୍ଶୀ ଗୋରା ଥିଲା ଯେ ତହିଁରେ ଯିଏ ଯେଉଁ ରଙ୍ଗର, ସେହି ରଙ୍ଗର ହୋଇ ସ୍ପଷ୍ଟ ଦେଖାଯାଉଥିଲା । ରଘୁବର ପ୍ରସାଦର ରଙ୍ଗ କଳା ଥିଲା । ପିଲାଦିନେ ସକାଳୁ ଉଠିଲେ ତାଙ୍କୁ ଲାଗୁଥିଲା ଯେ ରାତି ତାଙ୍କ ଦେହରେ ଲାଗିକରି ରହିଯାଇଛି ଓ ମୁହଁ ହାତ ଧୋଇ, ତା'ପରେ ଗାଧୋଇ ପାଧୋଇ ନେଲେ ଯାଇ ସେ କିଛି ସଫାସୁତୁରା ହୋଇପାରିବେ । ମଝିରେ ମଝିରେ ମାସ ମାସ ଧରି ସକାଳୁ ଉଠିବା ପରେ ଏପରି ଲାଗିବାଟା ଛାଡ଼ିଯାଉଥିଲା । ସେ କାଳେ ଯେ ଚାନ୍ଦିନୀ ରାତି ଥିଲା ତାହା ନୁହେଁ । ମାସ ମାସ ଚାନ୍ଦିନୀ ରାତି ହେଉନଥିଲା । ବର୍ଷେ କାଳ ଉଜ୍ଜ୍ୱଳ ରାତି ହେଉନଥିଲା । ଯେବେ ଦୁଇ ତିନି ବର୍ଷ ଚାନ୍ଦିନୀ ରାତି ହେଉଥାନ୍ତା ତେବେ ତାଙ୍କର ରଙ୍ଗ ଏତେ କଳା ହୋଇନଥାନ୍ତା । ରଘୁବର ପ୍ରସାଦ ଏତେ କଳା ନଥିଲେ ଯେ ତାଙ୍କର ନାକନିଶ ତାଙ୍କର ଦିହର ରଙ୍ଗ ସାଙ୍ଗରେ ମିଶିଯାଇ ସ୍ପଷ୍ଟ ଦେଖାଯାଉନଥିବ । ରଘୁବର ପ୍ରସାଦ ବାଇଶି ତେଇଶ ବର୍ଷର ଥିଲା । କଳାରଙ୍ଗ ଠାରୁ ଆହୁରି କଳା ଭୂଲତା ଓ ବଡ଼ ବଡ଼ କଳା ଆଖି ସକାଶେ ଦେଖିବାକୁ ସୁନ୍ଦର ଥିଲେ । ଆଜି ଦିନରେ ଆଜିକାର ଚଢ଼େଇଙ୍କର କିଚିରି ମିଚିରି ଶୁଣିବାକୁ ମିଳୁଥିଲା । ଖିଡ଼ିକି ବାଟେ ଯେଉଁ ଗଛ ଦିଶୁଥିଲେ, ସେସବୁ ଆଜିକାର ଗଛ ପରି ଦିଶୁଥିଲେ । ସେସବୁ ଆମ୍ବଗଛ । ଆମ୍ବଗଛ ଭିତରେ ଦିଶୁଥିବା ପୁରୁଣା ନିମ୍ବଗଛଟା ଏବକାର । ଆମ୍ବଗଛରେ ପତ୍ରଯାକ ଆଜି ସାଗୁଆ ଦେଖାଯାଉଥିଲା, ଯେମିତି ସବୁ ଗଛରେ ଦିଶୁଥିଲା । ଆମ୍ବରେ ବଉଳ ହୋଇଥିଲା । ଗଛ ବଉଳରେ ଲଦେଇ ହୋଇଥିଲା । ବଉଳ ଗନ୍ଧରେ ନିଃଶ୍ୱାସ ଟାଣିନେଲେ ମନଟା ବୁଲେଇ ଯାଉଥିଲା । ଗଛମାନଙ୍କରେ ଏତେ ବଉଳ ହୋଇଥିଲା ଯେପରି ଯେତେ ବଉଳ ବାହାରିବାକୁ ଥିଲେ ବାହାରି ପଡ଼ିଛନ୍ତି । ଯାହାଙ୍କୁ ସବୁ ଆରବର୍ଷ ବାହାରିବାକୁ ଥିଲା, ଭୁଲ୍ କରି ଏହି ବର୍ଷ ବାହାରି ଆସିଥିଲେ ।

ଝରକାରୁ ପଡ଼ିଶା ଘରର ଛ' ସାତ ବର୍ଷର ଝିଅଟି ଉଙ୍କି ମାରି କହିଲା, ''ଗୋଟେ ଆମ୍ବ ବଉଳ ଡାଳ ଭାଙ୍ଗିଦିଅ ।'' ଝିଅଟି ଝରକା ତଳେ ଥୁଆ ହୋଇଥିବା ଇଟା ଉପରେ ଠିଆ ହୋଇଥିଲା । ରଘୁବର ପ୍ରସାଦଙ୍କ କୋଠରୀକୁ ଡୁଙ୍କିବା ଲାଗି ପାଖ ପଡ଼ିଶାର ଛୋଟ ଛୋଟ ପିଲାମାନେ ସେଇଠି ଇଟା ଜମେଇ ରଖିଥାନ୍ତି । ଯେଉଁମାନେ ବହୁତ ଛୋଟ ଛୋଟ ପିଲା, ସେମାନେ ତଥାପି ଡୁଙ୍କି ପାରନ୍ତି ନାହିଁ ।

''କ'ଣ ପାଇଁ ?''

''ପୂଜା ପାଇଁ । ବାଇ (ମାଆ) ମଗେଇଛି ।'' ଝିଅଟି ନିଜର ମା'କୁ ବାଇ ଡାକେ । ଝିଅ ଏହିକ୍ଷଣି ଶୋଇବାଠାରୁ ଉଠିଛି । ତା'ର ବାଳ ଗଭୀର ନିଦରେ ଶୋଇବା ବେଳରେ ଯେମିତି ଥାଏ ସେଇମିତି ଅଲରାବଲରା ଅଛି । ଦୁଇ ଜଟରେ କଳା ଫିତା ଅଛି, ଗୋଟିକ ଜଟରୁ ଫିତା ଖୋଲି କରି ଲଟକିଛି ।

''ତମ ବାପା ଶୋଇଛନ୍ତି ?''

''ବାହାରକୁ ଯାଇଛନ୍ତି । ତିନି ଦିନ ପରେ ଆସିବେ । ଭାଙ୍ଗିଦିଅ । ବାଇ ଗାଧୋଇ ସାରିଲାଣି ।''

''ଆଚ୍ଛା ରହିଥା !''

ରଘୁବର ପ୍ରସାଦ ସେ ଝିଅ ସଙ୍ଗେ ପଛପଟର ଆମ୍ବଗଛଯାକେ ଗଲେ । ରଘୁବର ପ୍ରସାଦଙ୍କର ମନେହେଲା ଝିଅଟା ବହୁତ ଆଗରୁ ତାଙ୍କର ଉଠିବାକୁ ଅପେକ୍ଷା କରୁଥିଲା ।

''ତୁ ମୋର ଉଠିବାର ବାଟ ଚାହିଁ ବସିଥିଲୁ ?''

''ହଁ ଉଠିବାର ବାଟକୁ ଉଙ୍କିମାରି ଚାହୁଁଥିଲି ।''

''ତୁ ଆଗ ଉଠି ପଡ଼ିଥିଲୁ ?''

''ହଁ ।''

ରଘୁବର ପ୍ରସାଦଙ୍କର ସେଇଠି ଗୋଟିଏ ଛୋଟ ବଖରା ଘର ଥିଲା । ଯହିଁରେ ଉଙ୍କିମାରି ଛୋଟ ଛୋଟ ପିଲାଏ ଭିତରେ ଅନେକ ବାଟ ଦେଖୁଥିଲେ । ଯଥା ତାଙ୍କର ବସିଥିବା ବେଳେ ଉଠି ଠିଆ ହେବାର ବାଟ । ସେ ପଢୁଥିବା ବେଳେ ତାଙ୍କର ସୁସୁରି ମାରିବାର ବାଟ, ପଦଚାରଣା କରୁ କରୁ ତାଙ୍କର ଶୋଇପଡ଼ିବାର ବାଟ । ପିଲାମାନଙ୍କର ଏପରି ଦେଖିବାରେ ରଘୁବର ପ୍ରସାଦଙ୍କର କିଛି ଯାଏ ଆସେନା । ପିଲାମାନେ ଆସିବାରୁ ତାଙ୍କର ସେହି ବଖରାର ଚାରିକାନ୍ଥ ମଧ୍ୟରେ ଏକାକୀତ୍ୱ ଭେଦି ଜାଣ ଆଉ ଏକ କବାଟ ଖୋଲିଯାଏ । ସେହି ଝରକାରୁ ଆସିବାର ତାଜା ପବନ ତାଙ୍କୁ ବେଶ୍ ଭଲ ଲାଗେ ।

ରଘୁବର ପ୍ରସାଦ ଡେଙ୍ଗାଲୋକ । ତାଙ୍କର ହାତ ଠିଆ ଠିଆ ବଉଳ ଯାକେ ପହଞ୍ଚିଥାନ୍ତା । ତଥାପି ସେ ଏପରି ଏକ ଡାଳକୁ ହାତ ବଢ଼ାଇଲେ ଯେଉଁଠାକୁ ହାତ ପାଉନଥିଲା । ସେ ଡିଆଁ ମାରିଲେ ଓ ବଉଳର ଡାଳ ଭାଙ୍ଗିକରି ତାଙ୍କ ହାତକୁ ଆସିଗଲା । କିନ୍ତୁ ଗୋଟିଏ ଆଖି ବୁଜି ଦେଇ ସେ ତଳେ ବସିପଡ଼ିଲେ ।

''କ'ଣ ହେଲା ?'' ଝିଅ ପଚାରିଲା ।

''ବଉଳର ଫୁଲ ଝଡ଼ିକରି ଆଖିରେ ପଡ଼ିଗଲା ।''

''ଫୁଙ୍କ ମାରିଦେବି ?''

ରଘୁବର ପ୍ରସାଦ କିଛି କହିଲେ ନାହିଁ । ଝିଅ ତା'ର ଫ୍ରକ୍‌ର ଧାରକୁ ଆଙ୍ଗୁଠିରେ ମୋଡ଼ିମାଡ଼ି ବାନ୍ଧିଲା ଓ ନିଜର ଗରମ ନିଃଶ୍ୱାସ ଦେଇ ଫୁଙ୍କିଲା ଓ ରଘୁବର ପ୍ରସାଦଙ୍କର ବିଲ୍‌କୁଲ୍ ପାଖକୁ ଆସି

ନିଃଶ୍ୱାସରେ ଗରମ ଫ୍ରକ୍‌ର ଗୁଳାକୁ ତାଙ୍କୁ ଆଖି ଉପରେ ଦେଲା । ଏହିପରି ସେ ଦୁଇ ତିନିଥର କଲା ।

''ବାସ୍ ଠିକ୍ ହୋଇଗଲା'' ରଘୁବର ପ୍ରସାଦ କହିଲେ । ତାଙ୍କ ଆଖି ଲାଲ୍ ହୋଇ ଯାଇଥିଲା ଓ ଲୁହ ଆସିଯାଇଥିଲା ।

''ଠିକ୍ ହୋଇଗଲା ?'' ଝିଅଟି ପଚାରିଲା ।

''ହଁ'' ସେ କହିଲେ ।

ରଘୁବର ପ୍ରସାଦଙ୍କ ହାତରୁ ବଉଳର ଡାଳ ନେଇ ଝିଅଟି ପଳାଇଗଲା । ଫେରିବା ବେଳେ ରଘୁବର ପ୍ରସାଦଙ୍କୁ ଠାଏ ଦୁଇଖଣ୍ଡ ଇଟା ଦେଖାଗଲା । ଇଟା ଦି'ଟି ମାଟି ବୋଳା ଥିଲେ । ହାତରେ ଗୋଟିଏ ଲେଖା ଇଟା ନେଇ ରଘୁବର ପ୍ରସାଦ ପଛପଟର ଝରକା ପାଖକୁ ଗଲେ । ଝରକା ତଳେ ପିଲାମାନେ ଠିକ୍ କରି ଇଟାକୁ ସଜାଡ଼ି ରଖିନାହାନ୍ତି । ଅଧା ଇଟା ଟେକିବା ସହଜ ହୋଇଥିବା ତେଣୁ ଅଧା ଇଟା ବେଶୀ ଥିଲା । ଧାର ପଟର ଇଟାରେ ଗୋଡ଼ ପଡ଼ିଗଲେ ଇଟା ଓଲଟି ପଡ଼ିଥାନ୍ତା ଓ ପିଲାଏ ପଡ଼ିଯାଇଥାନ୍ତେ । ଇଟାଗୁଡ଼ିକୁ ସେ ସଜାଇଦେଲେ । ଇଟାର ପିଣ୍ଡି ଉପରେ ଠିଆହୋଇ ସେ ଘର ଭିତରକୁ ଚାହିଁଲେ ଓ ଦେଖିଲେ ସେ ଘର ଭିତରେ ନାହାନ୍ତି । ଛୋଟ ପିଲାଙ୍କ ଲାଗି ତେବେ ବି ତଳୁଆ ହେବ । ସେ ଖୋଜି କରି ଆହୁରି ଦୁଇଖଣ୍ଡ ଇଟା ଆଣିଲେ ।

ଘର ଭିତରକୁ ଆସି ରଘୁବର ପ୍ରସାଦଙ୍କର ନିଜର ବାହାଘରର ନିମନ୍ତ୍ରଣପତ୍ର ପଢ଼ିବାକୁ ଇଚ୍ଛା ହେଲା । ବାହାଘର ହେବାର ବାରଦିନ ହୋଇଯାଇଥିଲା । ନିମନ୍ତ୍ରଣପତ୍ର ଖଟିଆ ତଳେ ବାକ୍ସରେ ଥିଲା । ବାକ୍ସ କାଢ଼ିବେ ବୋଲି ସେ ତଳକୁ ନଇଁଲେ । ସେ ଶୁଣିଲେ 'ଗ'ରେ ହ୍ରସ୍ୱ ଉ ଫଳା ଗୁଡ଼ିଆ । ଝରକା ଆଡ଼କୁ ସେ ଚାହିଁଲେ ଗୋଟିଏ ଛୋଟ ପୁଅ ଓ ଗୋଟିଏ ଛୋଟ ଝିଅ, ଦୁହିଁଙ୍କର ଉଚ୍ଚତା ସମାନ ଥିଲା । ଝରକାର ତଳ ଚଉକାଠ ଯାକେ ଦୁହିଁଙ୍କର ଥୋଡ଼ି ପହଞ୍ଚିଛି । ରଘୁବର ପ୍ରସାଦ ତାଙ୍କୁ ଚାହିଁଦେବାରୁ ଦୁହେଁ ମୁରୁକି ହସିଦେଲେ । ତା'ପରେ ଦୁହେଁ ହସି ପକାଇଲେ । ତାଙ୍କ ହସ ଶୁଣି ତଳେ ବସିଥିବା ଗୁଡ଼ିଆ ନାମ୍ନୀ ଝିଅ ମଧ ଠିଆ ହୋଇଗଲା । ରଘୁବର ପ୍ରସାଦ ତାକୁ ଦେଖିକରି କହିଲେ, ''ବ ରେ ହ୍ରସ୍ୱ ଉ ଫଳା ବୁଢ଼ିଆ'', ''ନାହିଁ ଗ ରେ ହ୍ରସ୍ୱ ଉ ଫଳା ଗୁଡ଼ିଆ ।'' ''ନାହିଁ ବ ରେ ହ୍ରସ୍ୱ ଉ ଫଳା ବୁଢ଼ିଆ । ଆଚ୍ଛା, ଏଥର ତୁମେ ସବୁ ଯାଅ । ତା'ପରେ ତିନିଜଣ ଯାକ ପିଲା ଝରକାରୁ ଉଭାନ ହୋଇଗଲେ ।

ରଘୁବର ପ୍ରସାଦଙ୍କର ମନେହେଉଥିଲା ଯେ ବାପା ଛୋଟୁ ସାଙ୍ଗରେ ପତ୍ନୀକୁ ବିଦା କରାଇ ଗାଁକୁ ଘେନି ଆସିଥିବେ । ଦିନେ ଦି'ଦିନ ଭିତରେ ଏଠାକୁ ଆସିଯିବେ କି ! ବାହାଘରର ତିନିଦିନ ପରେ ସ୍ତ୍ରୀ ବାପଘର ଚାଲିଗଲା । ବାପା ସ୍ତ୍ରୀ ଯିବାର ଛଅଦିନ ପରେ ରଘୁବର ପ୍ରସାଦଙ୍କୁ ବିଦା କରାଇବା ସକାଶେ କହିଥିଲେ । ବିଭାଗାଧ୍ୟକ୍ଷ ଛୁଟି ଦେବାକୁ ମନା କରିଦେଇଥିଲେ ।

ରଘୁବର ପ୍ରସାଦ ଏକ ପ୍ରାଇଭେଟ୍ କଲେଜରେ ଅଧ୍ୟାପକ ଥିଲେ । ଆଠଶହ ଟଙ୍କା ମିଳୁଥିଲା । ସେହି କଲେଜଟି ଏହି ସତୁରୀ ହଜାରର ଜନବସତିଠାରୁ ଆଠ କିଲୋମିଟର ଦୂରରେ ଥିଲା । ଏହି ବସ୍ତିର ସବୁଆଡୁ ଶେଷ ଘରକୁ ଲାଗି ବିଲ ଥିଲା । ମଝିର ବସ୍ତି ସବୁଠାରୁ ପୁରୁଣା ଥିଲା । ସବୁଗୁଡ଼ିକ

ଶେଷ ଘର ପରେ ତିଆରି ହୋଇଥିଲା । ବସ୍ତିର କିଛି ଏକଡ଼ ସେକଡ଼ର ଘର ବି ପୁରୁଣା ବସ୍ତି ବେଳର ତିଆରି ହୋଇଥିଲେ । ଏ ସେମିତିକା ସହର ନଥିଲା ଯେଉଁଠି ଶେଷ ଘର ପରେ ପରେ ଗାଁର ପ୍ରଥମ ଝୁମ୍ପୁଡ଼ି କୁଡ଼ିଆ ଆରମ୍ଭ ହୋଇଯାଏ । ଛ'ନମ୍ବର ଜାତୀୟ ରାଜପଥ ଉପରେ ଆଠ କିଲୋମିଟର ଯାକେ ବିସ୍ତୃତ ବିଲ ପରେ ସବୁଠାରୁ ନିକଟ ଥିଲା ଜୋରା ଗାଁ । ସହର ବଢ଼ି ବଢ଼ି ପାଖର ଗାଁ ଯାକେ ପହଞ୍ଚିଗଲେ ଗାଁଟି ହୋଇଯାଏ ସହରର ଏକ ସାହି । ଗାଁର ନାଁ ହୋଇଯାଏ ସାହିର ନାଁ । ଜୋରା ଗାଁ ଆଠ କିଲୋମିଟର ଦୂରରେ ଥିବାରୁ ଜୋରା ଗାଁ ନାମକ କୌଣସି ସାହି ହୋଇନଥିଲା । ସେଇଠି ଗୋଟିଏ କଲେଜ ଥିଲା । ସେ ଖପରଲି ଟାଇଲର ଛାତବାଲା ଲମ୍ବା ବାରାକ୍ ପଛ 'ଦାଉଙ୍କ ବାଡ଼ି'ରେ ଥିଲା । ଲାଇନ୍‌ରେ ବଖରାମାନ ତିଆରି ହୋଇଥିଲେ । ମାଟିର ଦି'ଫୁଟିଆ କାନ୍ଥ ଥିଲା । ସାମନା ପଟରେ ଗୋଟାଏ ଲମ୍ବା ବାରଣ୍ଡା ଥିଲା । କାନ୍ଥଯାକ ରଙ୍ଗମାଟି ଦେଇ ଲିପା ହୋଇଥିଲା । ବାରଣ୍ଡାରେ ବଡ଼ ବଡ଼ ଖିଲାଣ ଥିଲା । କଲେଜଟି ଛ'ନମ୍ବର ଜାତୀୟ ରାଜପଥ ଉପରେ ଥିବାରୁ ଟ୍ରକ୍, ଟେମ୍ପୋ, ବସ୍‌ମାନଙ୍କର ଯା' ଆସ ଲାଗି ରହିଥାଏ । କଲେଜର ସାମନାରେ ତିନି ଚାରିଟି ଶଗଡ଼ ଠିଆ ହୋଇ ରହିଥାଏ । ଗୋଟିଏ ଦୁଇଟି ଶଗଡ଼ରେ ବଳଦ ଯୋଚା ହୋଇଥାନ୍ତି । ମାଟିରେ ଲଗା ହୋଇ ରହିଥିବା ଶଗଡ଼ର ଖୋଲା ବଳଦ, ଘାସ ଖାଇ ଏଣେ ତେଣେ ଚରୁଥାନ୍ତି ।

ରଘୁବର ପ୍ରସାଦ କଲେଜ ଯିବାଲାଗି ଅଧଘଣ୍ଟା ଆଗରୁ ଜାତୀୟ ରାଜପଥରେ ଠିଆ ହୋଇଯାନ୍ତି । ଆଜିକାଲି ଗତ ତିନି ଚାରି ଦିନ ହେଲାଣି କଲେଜ ଆଡ଼କୁ ଯାଉଥିବା ଗୋଟିଏ ହାତୀକୁ ସେ ଦେଖୁଛନ୍ତି । ଫେରିବା ବେଳେ ବି ଦିନେ ଦିନେ ଦେଖୁଛନ୍ତି । ସେତେବେଳେ ହାତୀର ପିଠିରେ ଗଛଡାଳ ଲଦା ହୋଇଥାଏ । ସେଗୁଡ଼ିକୁ ହାତୀ ନିଜେ ଶୁଣ୍ଢ ଦେଇ ଭାଙ୍ଗିଥିବ । ଦାଢ଼ି ଓ ଲମ୍ବାବାଳ ରଖିଥିବା ଗୋଟିଏ ସୁନ୍ଦର ଯୁବକ ସାଧୁ ହାତୀ ଉପରେ ବସିଥାଏ । ସାଧୁର ବର୍ଣ୍ଣ ଗହମ ରଙ୍ଗର । ହାତୀର ମଥା, ଶୁଣ୍ଢ ଓ କାନର କିଛି ଅଂଶର ଚମଡ଼ା ନାଲି ରଙ୍ଗ ଦିଆଯାଇଥିଲା ଓ ତହିଁରେ କଳା କଳା ଛିଟ ବଡ଼ ସୁନ୍ଦର ଦିଶୁଥିଲା । ହାତୀ ଯୁବାବସ୍ଥାର ହୋଇଥିବ । ସୁନ୍ଦର ଥିଲା । କଳା ହାତୀ ଥିଲା ।

ରଘୁବର ପ୍ରସାଦ ମନକୁ ମନ ନିଜର ଗୋଟିଏ ହାତକୁ ଆଗକୁ ବଢ଼ାଇଦେଇ ଚାଲିଯାଉଥିବା ହାତୀର ରଙ୍ଗ ସଙ୍ଗେ ନିଜର ରଙ୍ଗର ତୁଳନା କଲେ । ହାତୀ ତୁଳନାରେ ତାଙ୍କ ରଙ୍ଗ ସଫା ଥିଲା ।

କେବେ କେମିତି ଦେଖାଯାଉଥିବା କଳା କି ଶ୍ୟାମଳା ମଣିଷଙ୍କ ପରେ ଦିନେ ସେ ଗଛମାନଙ୍କ ମଧ୍ୟରେ ତୁଳନା କରିଥିବେ ଯେ ଆମ୍ବଗଛର ଦେହର ରଙ୍ଗ ବିହୀ ଗଛର (ପିଜୁଳି ଗଛ ପରି ଏକ ଗଛ) ଦେହର ରଙ୍ଗଠାରୁ ବହୁତ କଳା ଥିଲା । ବିହୀ ଗଛର ରଙ୍ଗ ଗହମ ରଙ୍ଗ ଓ ଚିକ୍କଣ ଥିଲା । ଆମ୍ବ ଗଛର ଦେହର ରଙ୍ଗ ନିମ୍ବଗଛର ଦେହର ରଙ୍ଗ ଏକା ପରି କଳା । ଏହିପରି ଗଛ ଉପରେ ବସିଥିବା ପକ୍ଷୀଙ୍କ ସଙ୍ଗେ ଏବଂ ଉଡ଼ନ୍ତା ଚଢ଼େଇଙ୍କ ସଙ୍ଗେ ।

ଏକଥା ସତ ଯେ ପୃଥିବୀରେ ଗଛ ମାନେ ପତ୍ର, ଘାସ ସକାଶେ ସବୁଜ ରଙ୍ଗ ସବୁଠାରୁ ଅଧିକ । ଆକାଶରେ ନେଳିଆ ରଙ୍ଗ ଅଧିକ । ଖୋଲା ଜମି ଉପରେ ଥିବାରୁ ଏତକ ସୁବିଧା ଥାଏ ଯେ

ଏକବାରକେ ବହୁତ ଗୁଡ଼ାଏ ଆକାଶ ଦେଖାଯାଉଥାଏ । ସକାଳ ସଞ୍ଜରେ ଆକାଶ ସ୍ଥିର ଭାବେ ରଙ୍ଗୀନ ହେଲେ ବି ସାଗୁଆ ଉଡ଼ନ୍ତା ରଙ୍ଗ ଉଡ଼ନ୍ତା ଶୁଆଙ୍କ ଦଳ ସକାଶେ ଦେଖାଯାଉଥିଲା । ଆଠ ଦଶଟାରୁ ବେଶୀ କୁଆଙ୍କ ଦଳ ଏକାଠି ଉଡ଼ିବାର ଆକାଶରେ ଦିଶନ୍ତି ନାହିଁ । କୁଆଯାକ ବିଚ୍ଛାଡ଼ି ହୋଇ ଏଣେ ତେଣେ ଉଡୁଥିବାର ଦେଖାଯାନ୍ତି । ସଫା ଧଳା ରଙ୍ଗର ବଗ ମଧ୍ୟ ଚାରିଆଡ଼େ ବିଛେଇ ହୋଇ ଉଡ଼ନ୍ତି । କୋଇଲି ଗଛର ଡାଳ ଭିତରେ ଲୁଚି ଲୁଚି ରହିଥିବାର ଦେଖାଯାଏ । ଗୁଣ୍ଡୁଚିମୂଷା କେବେ ଗଛରେ ଏକୁଟିଆ ଦିଶେ ନାହିଁ । ପାଖ ଆଖରେ ଅନ୍ୟ ଗୁଣ୍ଡୁଚିମୂଷା କିମ୍ବା ଚଢ଼େଇ ନିଶ୍ଚୟ ଥିବ । ସେତେବେଳେ ସେ ଠିକ୍ ନିଶ୍ଚିତ ଜାଣି ପାରୁନଥିଲେ ଯେ ଏଇ 'ଟିଟ୍ ଟିଟ୍' ଡାକ ବୋବାଉଥିବାର ଜନ୍ତୁ ଗୁଣ୍ଡୁଚିମୂଷା ନା ଚଢ଼େଇ । ବେଳେବେଳେ ମନେହୁଏ ଗୁଣ୍ଡୁଚିମୂଷା ଆଉ କେବେ କେବେ ଲାଗେ ନା, ଚଢ଼େଇ । ପୋଖରୀ କୂଳରେ ଗଛ ଉପରେ ବସିଥିବା ରଙ୍ଗୀନ ଲମ୍ବ ଥଣ୍ଟର ଚଢ଼େଇ ଗୋଟିଏ ଛୋଟିଆ ଘଣ୍ଟି ଭଳିଆ କିଚିରି ମିଚିରି କରେ ବା ଝୁଣୁ ଝୁଣୁ କରୁଥାଏ ।

ରଘୁବର ପ୍ରସାଦଙ୍କର ଅଟୋ ଲାଗି ଅପେକ୍ଷା କରୁ କରୁ ଡେରି ହୋଇଗଲେ ଯଦି ସେତିକିବେଳେ ତାଙ୍କ ସାମନାରେ ହାତୀ ଯାଉଥିବାର ଦେଖିବାକୁ ମିଳେ ସେତେବେଳେ ତାଙ୍କର ମନହୁଏ ହାତୀରେ ବସିକରି କଲେଜ ଯାଆନ୍ତେ । ହାତୀ ଉପରେ ବସିଥିବା ସାଧୁର ଦୃଷ୍ଟି ରଘୁବର ପ୍ରସାଦଙ୍କ ଉପରେ ପଡ଼େ, ଯେବେ ରଘୁବର ପ୍ରସାଦ କହିଥାନ୍ତେ, ''ମୋତେ ନେଇଯିବ କି ?'' ତେବେ ବୋଧହୁଏ ସାଧୁ ହାତୀକୁ ଅଟକାଇ ଦେଇଥାନ୍ତା । ସାଧୁ ଯେବେ ନ ରହିବ ହାତୀ ନିଜେ ନିଜେ ରହିଯାନ୍ତା ।

ଯେଉଁଠାରେ ରଘୁବର ପ୍ରସାଦ ଅଟୋ ଲାଗି ଠିଆ ହେଉଥିଲେ, ସେଠାରେ ଗୋଟିଏ ଉଠା ଚା' ଦୋକାନ ଥିଲା । ଗୋଟିଏ ପାନର ଠେଲାଗାଡ଼ି ଥିଲା । ସାଇକେଲ୍ ମରାମତି ଦୋକାନ ଥିଲା । ସେହି ଦୋକାନ ଆଗରେ ଗୋଟିଏ ମଇଳା ପାଣିର ଗମଲା ଥୁଆ ହୋଇଥିଲା ଏବଂ ସେଇଠି ରିମ୍‌କୁ ଜାବୁଡ଼ି ଧରିବାର ଷ୍ଟାଣ୍ଡକୁ ଲାଗି ଗୋଟିଏ ପମ୍ପ୍ ଡେରା ହୋଇରହିଥାଏ । ଚାହା ଓ ପାନର ଦୋକାନ ଆଗରେ ମାଟିରେ ପୋତି ହୋଇ କାଠର ଦୁଇଟି ବେଞ୍ଚ୍ ପଡ଼ିଥିଲା । ବେଞ୍ଚ୍ ଏତେ ସ୍ୱାଭାବିକ ଦିଶୁଥାଏ ଯେ ମନେହୁଏ ସେସବୁ ଗଛ ଉପରେ ବେଞ୍ଚ ଆକାରରେ ହିଁ ଗଜୁରିଥିଲେ ଏବଂ କାଟିକରି ତାଙ୍କର ଗୋଡ଼ଗୁଡ଼ିକୁ ମାଟିରେ ପୋତି ଦିଆଯାଇଛି ।

ରଘୁବର ପ୍ରସାଦ ଅଟୋକୁ ଅନିସା କରିଥିଲେ । ଦୂରରୁ ରଘୁବର ପ୍ରସାଦ ହାତୀ ଆସୁଥିବାର ଦେଖିଲେ । ରଘୁବର ପ୍ରସାଦଙ୍କୁ ଲାଗିଲା ସେଠି ଠିଆ ହେଲେ ଯେପରି ଚାରିଟି ତାଳଗଛ ଦିଶୁଛନ୍ତି ସେହିପରି ଠିଆ ହୋଇଥିଲେ ଏଠାରେ ହାତୀକି ଦେଖିବାକୁ ମିଳେ । ତଫାତ୍ ଖାଲି ଏତିକି ଯେ ତାଳଗଛ ସେଇଠି ଠିଆ ରହିଥାନ୍ତେ କିନ୍ତୁ ହାତୀ ଚାଲିଆସୁଥିବାର ଦିଶୁଥିଲା । ଆସୁଥିବା ହାତୀ ତାଙ୍କ ଆଗରେ ଠିଆ ହୋଇଗଲା । ସାଧୁ ହାତୀ ପିଠିରେ ବନ୍ଧାଥିବା ଦଉଡ଼ି ସାହାଯ୍ୟରେ ଓହ୍ଲାଇଲା । ରଘୁବର ପ୍ରସାଦଙ୍କୁ ମନେହେଲା ଯେ ସାଧୁ ସମ୍ଭବତଃ ପାନ ଦୋକାନରୁ ଧୂଆଁପତ୍ର ଚୂନ ନେବାକୁ ଆସିଛି କି ଚାହା ଦୋକାନରୁ ଚାହା ପିଇବାକୁ ଆସିଛି । ସେ ସାଇକେଲ ଦୋକାନକୁ ତ ଯିବନାହିଁ । ହାତୀର ଗୋଡ଼ରୁ କ'ଣ ପବନ ବାହାରିଯିବ, ତାହା ତ ନୁହେଁ । ହାଉଆ ଭର୍ତ୍ତି କରିବାର ଇଚ୍ଛା ତା'ର ନ ଥିଲା । ସାଧୁ ଧୂଆଁପତ୍ର ଦଳି ଦଳି ରଘୁବର ପ୍ରସାଦଙ୍କ ପାଖରେ ଠିଆ ହୋଇଗଲା । ଆସ୍ତେ କରି ସେ ପଚାରିଲା, ''ଅଟୋ ମିଳିଲା ନାହିଁ ?''

''ମିଳିଲା ନାହିଁ ।'' ରଘୁବର ପ୍ରସାଦ ବି ଆସ୍ତେ କରି କହିଲେ ।

''ହାତୀରେ ବସିବେ ? କଲେଜ ଯିବେ ନା ?''

''ହାତୀରେ ? ଅଟୋ ତ ଆସୁଥିବ ।'' ଘାବରେଇ କରି ସେ କହିଲେ ।

ରଘୁବର ପ୍ରସାଦଙ୍କର ଆଶା ନ ଥିଲା ଯେ ସେ ହାତୀରେ ବସିବାକୁ କହିବ । ଆଶା ଥିଲେ ସେ କିଛି ଭାବି ନେଇଥାନ୍ତେ । ସେମିତି ଭାବିଥିଲେ ସେ ହୁଏତ ହାତୀରେ ବସିବାକୁ ପ୍ରସ୍ତୁତ ହୋଇଯାଇଥାନ୍ତେ । ସେ ଚାଲିଯିବା ପରେ ପୁଣି ବିଚାରିଲେ ତେବେ କ'ଣ ହାତୀରେ ଯିବା ଉଚିତ ହୋଇଥାନ୍ତା ? ହାତୀ ଉପରେ ଚଢ଼ିବାକୁ ଓ ଓହ୍ଲାଇବାକୁ ତାଙ୍କୁ ଡର ମାଡୁଥିଲା । କାରଣ ସେ କେବେ ଚଢ଼ି ନଥିଲେ କି ଓହ୍ଲାଇ ନଥିଲେ ।

ତାଙ୍କର ଡେରି ହୋଇଯାଉଥିଲା । ଏହି ଡେରି ଯୋଗୁଁ ଅକାରଣେ ସେ ପାନ ଖାଇବାକୁ ଚାହୁଁଥିଲେ । ହୁଏତ ପାନ ଭଙ୍ଗା ହେବା ଓ ତାଙ୍କର ଖାଇବା ଭିତରେ ଅଟୋ ନ ମିଳିବାର ଡେରିଟା ଅଟକି ରହିଯିବ ବା ବଦଳିଯିବ । ଡେରି ତ କୁଆଡ଼େ ଯାଆନ୍ତା ନାହିଁ, ଖାଲି ଡେରି ହେବାର ଅନୁଭୂତିରୁ କିଛି ଚାଲିଯାଇଥାନ୍ତା । ଗୋଟେ କାମ ନ ହେବାର ଅନୁଭୂତି ଆଉ ଗୋଟିଏ କାମ କରି ଭୁଲି ଯାଇହୁଏ ଆଉ କାମଟି କରିବା ଯୋଗ୍ୟ ପଛକେ ନ ହୋଇଥାଉ । ପାନ ଖାଇବା ଜାଗାରେ ବସିବା କାମଟା କରାଯାଇ ପାରିଥାନ୍ତା । ବସିଯିବାଟା ଆତ୍ମସମର୍ପଣ ଭଳିଆ ହୋଇଥାନ୍ତା । ଲଢ଼େଇ କଲାପରି ହୋଇନଥାନ୍ତା । ଚାଲି ଚାଲି ଆଗେଇଯିବା ଲଢ଼େଇ ଭଳି ହୋଇ ପାରିଥାନ୍ତା । କିନ୍ତୁ ଏଇଟା ବାଜେ କାମ । ପାନ ଖାଇବାର ଅଭ୍ୟାସ ନାହିଁ । ଅଟୋ ପାଇଁ ଅପେକ୍ଷା କରିବା ଭିତରେ ଅଟୋ ଆସୁନାହିଁ । ପାନ ଖାଇବା ଭିତରେ ଅଟୋ ଆସିଯାଉ । ପାନ ଖାଇବା ଅଟୋ ପାଇବା ଲାଗି ଗୋଟାଏ ତୁଟକାଟୁଟୁକି ଔଷଧ ହୋଇପାରେ । ଜୁଆ ଖେଳିବା ବି ହୋଇପାରେ । ଏଯାକେ ପାନ ଦୋକାନୀ ଲୋକଟି ରଘୁବର ପ୍ରସାଦଙ୍କ ଆଡ଼କୁ ସେପରି ଚାହାଣୀରେ ଚାହୁଁ ନାହିଁ ଯେ ରଘୁବର ପ୍ରସାଦ ପାନ ଖାଇପାରନ୍ତି । ଆଜି ଯେବେ ପାନ ଖାଇ ନେବେ ତେବେ କାଲିଠାରୁ ରୋଜ ରଘୁବର ପ୍ରସାଦ ପାନ ଖାଇବେ କି ନାହିଁ ଏ ଦୃଷ୍ଟିରେ ସେ ଚାହିଁବ ।

ଗୋଟିଏ ଅଟୋ ଅଟକିଲା । ବସିବାର ଜାଗା ନଥିଲା । ଦୁଇ ଜଣ ଛାତ୍ର ଥିଲେ । ଗାଁର ମାଇପେ ଟୋକେଇ ନେଇ ବସିଥିଲେ । ଉଙ୍କିମାରିବା ପରେ ସେ ପଛଘୁଞ୍ଚା ଦେଲେ । ବସିଲେ ନାହିଁ । ଜଣେ ଛାତ୍ର ତାଙ୍କୁ ଦେଖି ଓହ୍ଲେଇବ ଓହ୍ଲେଇବ ହେଲା, କିନ୍ତୁ ଓହ୍ଲାଇଲା ନାହିଁ । ତା'ର ବି ଠିକ୍ ସମୟରେ କଲେଜରେ ପହଞ୍ଚିବାକୁ ଅଛି । ବିଳମ୍ବରେ ତାଙ୍କୁ ଅଟୋ ମିଳିଲା । କଲେଜରେ ପହଞ୍ଚିବାରେ ତାଙ୍କର ବିଳମ୍ବ ହେଲା । ଅଧା ଦିନର ଛୁଟି ନେବାକୁ ପଡ଼ିଲା ।

ରଘୁବର ପ୍ରସାଦ ଭଲ ପଢ଼ାନ୍ତି । ଗଣିତ ପଢ଼ାନ୍ତି । ଶ୍ରେଣୀରେ ପଢ଼ାଇବା ବେଳେ ଅଧିକାଂଶ ସମୟରେ ତାଙ୍କର ପିଠି ଛାତ୍ରଙ୍କ ଆଡ଼କୁ ରହିଥାଏ ପିଠି ବୁଲାଇ କହୁ କହୁ ବୋର୍ଡ଼ ଉପରେ ଲେଖିଚାଲନ୍ତି । ଅଙ୍କ ହୋଇଥିବାରୁ ଛାତ୍ରମାନେ ଚୁପ୍ ହୋଇ ଶାନ୍ତିରେ ବସିଥାନ୍ତି । ରଘୁବର ପ୍ରସାଦ ଦୁଇ ହାତରେ ଲେଖିପାରନ୍ତି । ବୋର୍ଡ଼ ଉପରେ ବାଁ ହାତରେ ଲେଖା ଆରମ୍ଭ କରି ବେଳେ ବେଳେ ଡାହାଣ ହାତରେ ଲେଖିବାକୁ ଆରମ୍ଭ କରିଦିଅନ୍ତି । ସେ ଦୁଇଟିଯାକ ହାତରେ ସମାନ ଭାବେ ପରିଷ୍କାର

ଅକ୍ଷରରେ ଲେଖନ୍ତି । ବୋର୍ଡରେ ଲେଖା ଭର୍ତ୍ତି ହୋଇଯିବା ପରେ ସେ ଗୋଟିଏ କଡ଼କୁ ଘୁଞ୍ଚି ଠିଆ ହୋଇଯାନ୍ତି ଯଦ୍ୱାରା ଛାତ୍ରମାନେ ପ୍ରଶ୍ନ ସବୁ ସେମାନଙ୍କ ଖାତାରେ ଟିପି ନେଇ ପାରିବେ । ବାଁ ହାତର ଚକ୍ ଘୋରି ହୋଇ ସରିଗଲେ ଡାହାଣ ହାତରେ ଥିବା ଅନେକ ଖଡ଼ିରେ ଲେଖିବା ଆରମ୍ଭ କରିଦିଅନ୍ତି । ଏକଥା ସଙ୍ଗେ ସଙ୍ଗେ ଘଟିଯାଏ । ବାଁ ହାତ ପରେ ଡାହାଣ ହାତରେ ତାଙ୍କର ଲେଖିବା ଏପରି ହୁଏ ଯେ ହାତ ବଦଳି ହେବାର ଜଣାପଡ଼େ ନାହିଁ । ନୂଆ ଛାତ୍ରଙ୍କୁ ଏକଥା କେବଳ ସେମାନେ ପୁରୁଣା ହେବା ପରେ ଯାଇ ଜଣାପଡ଼େ । ପୁରୁଣା ଛାତ୍ରଙ୍କର ଏପରି ଅଭ୍ୟାସ ପଡ଼ିଯାଏ ଯେ ସେମାନେ ନୂଆ ଛାତ୍ରଙ୍କୁ ଏକଥା କହିବାକୁ ବି ଭୁଲିଯାନ୍ତି ।

ବିଭାଗାଧ୍ୟକ୍ଷଙ୍କୁ ବି ବହୁତ ଡେରିରେ ଏକଥା ଜଣା ପଡ଼ିଥିଲା ଯେ ରଘୁବର ପ୍ରସାଦ ଦୁଇ ହାତରେ ଲେଖନ୍ତି । ଯଦ୍ୟପି ସେ ତାଙ୍କୁ ବାଁ ଓ ଡାହାଣ ଦୁଇ ହାତରେ ଲେଖୁଥିବାର ଅନେକ ଥର ଦେଖିଛନ୍ତି । ସେ ଯେତେବେଳେ ରଘୁବର ପ୍ରସାଦଙ୍କୁ ବାଁ ହାତରେ ଲେଖିବାର ଦେଖନ୍ତି ସେ ତାକୁ ହିଁ ସତ୍ୟ ବୋଲି ଧରିନିଅନ୍ତି ଯେ ରଘୁବର ପ୍ରସାଦ ବାଉଁଆ ହାତିଆ ଲୋକ । ଯେତେବେଳେ ତାଙ୍କୁ ଡାହାଣ ହାତରେ ଲେଖୁଥିବାର ଦେଖନ୍ତି ତାଙ୍କୁ ଏହା ହିଁ ସଦାବେଳର ସତ୍ୟ ବୋଧହୁଏ । ପ୍ରଥମ ସତ୍ୟଟି ସେ ଭୁଲିଯାଆନ୍ତି । ପ୍ରକୃତରେ ରଘୁବର ପ୍ରସାଦଙ୍କର ଦୁଇଟି ଡାହାଣ ହାତ ଅଛି ।

ତହିଁ ଆରଦିନ ଅଟୋକୁ ଅପେକ୍ଷା କରୁଥିବାବେଳେ ପ୍ରଥମ ଦିନ ପରି ହାତୀକୁ ଆସୁଥିବାର ଦେଖିଲେ । ହାତୀକୁ ଦେଖିବା ପରେ ରଘୁବର ପ୍ରସାଦ ତାଳ ଗଛ ସବୁଙ୍କୁ ଦେଖିଲେ ସେଗୁଡ଼ିକ ସେଇଠି ଅଛନ୍ତି । ହାତୀ ଉପରେ ବସିଥିବା ଯୁବକ ସାଧୁ ରଘୁବର ପ୍ରସାଦଙ୍କୁ କାଲି ତାଙ୍କ ସଙ୍ଗେ କଥାବାର୍ତ୍ତା ହୋଇଯାଇଥିବାରୁ ପରିଚିତ ଚାହାଣୀରେ ଅନାଇଲା । ସାଧୁଙ୍କୁ ରଘୁବର ପ୍ରସାଦଙ୍କ ନାଁ ଜଣାନଥିଲା । ଯଦି ତାଙ୍କୁ ଜଣାଥାନ୍ତା ତେବେ ଚାହାଣୀରେ ନା ଜଣାଥିବା ପରିଚିତ ଭାବର ଦୃଷ୍ଟି ଥାନ୍ତା । ରଘୁବର ପ୍ରସାଦଙ୍କୁ ଲାଗିଲା ଯେ ଆଜି ସେ ତାଙ୍କୁ ଆଉ ପଚାରିବ ନାହିଁ। ହାତୀରେ ଚଢ଼ି କଲେଜ ଯିବାଟା ଠିକ୍ ହୋଇନଥାନ୍ତା । ହାତୀ ଏପରି ଚାଲୁଥିଲା ଯେପରି ତାର ଗୋଟିଏ ଯାତ୍ରୀ ଥିଲା ଯାହାର ଯିବା ବନ୍ଦ ହୋଇଯାଇଛି । ଏହିଭଳି ଭାବରେ ଚାଲୁଥାଏ । ଟିକିଏ ମାତ୍ର ଯାହାର ଚାଲିବା ବନ୍ଦ ହୋଇଯାଏ କିନ୍ତୁ ଥାଏ । ସେ ଚାହିଁଥିଲେ କାଲି ହିଁ ହାତୀରେ ବସି ପାରିଥାନ୍ତେ । ଅଟୋକୁ ଟଙ୍କାଏ ଦେବାକୁ ପଡ଼େ, ହାତୀ ଉପରେ ବେଶୀ ଦେବାକୁ ହେବ ? ଆଠ କିଲୋମିଟର ହାତୀରେ ବସିକରି ଯିବାକୁ ହେବ । ପହିଲେ ରଜା ରାଜୁଡ଼ା ବସୁଥଲେ । ଏବେ ବସିଲେ ହାସ୍ୟାସ୍ପଦ ହେବ । ଧର ହାତୀରେ ବସି ଭୂତପୂର୍ବ ରାଜା ପରିବା କିଣିବାକୁ ବଜାରକୁ ଆସିଲେ । ସଭିଏଁ ନିଜ ନିଜର ପରିବା ପସରା ପଛକୁ ଟାଣି ନେଇ ହାତୀ ଆସିବାର ରାସ୍ତାକୁ ଚଉଡ଼ା କଲେ । ତଥାପି ହାତୀ ବୁଲିପଡ଼ି ଫେରିବାକୁ ଜାଗା ନାହିଁ । ଏହି ଛିନ୍ନଛତ୍ର ଅବସ୍ଥାରେ ଭୂତପୂର୍ବ ରାଜା ଗୋଟିଏ ପରିବାବାଲୀ ପାଖକୁ ଗୋଟିଏ ବ୍ୟାଗ୍ ପକାଇ ଦେଇ କହିଲେ, ''ଅଧା କିଲୋ ଆଳୁ, ଟଙ୍କାକର ପାଳଙ୍ଗ ଶାଗ, ପାଏ ରସୁଣ ଓ ପଚାଶ ପଇସାର ଅଦା ଦିଅ ।'' ସେ ବ୍ୟାଗ୍‌ରେ ପରିବା ଭର୍ତ୍ତିକରି ପରିବାବାଲୀ ବ୍ୟାଗ୍‌କୁ ହାତୀର ଶୁଣ୍ଢରେ ଧରାଇ ଦେବ । ହାତୀ ଶୁଣ୍ଢକୁ ବୁଲାଇ ବ୍ୟାଗ୍‌ଟିକୁ ମାହୁନ୍ତକୁ ଦେଇଦେବ । ଭୂତପୂର୍ବ ରାଜା ପରିବାର ଦାମ୍ ପଚାରିବେ । ପୁଣି ଗୋଟିଏ ପୁଡ଼ିଆରେ ପଇସା ବାନ୍ଧିକରି ମାହୁନ୍ତକୁ

ଦେବେ । ମାହୁନ୍ତ ହାତୀକୁ ଦେବ । ହାତୀ ପରିବାବାଲାଙ୍କୁ ଦେବ । ଏହି ଦିଆ ନିଆ ଭିତରେ ବହୁତ ବଡ଼ ଗୋଟାଏ ହାତୀର ଭୂମିକା ହୋଇଥିବ । ବୁଲାବୁଲି କରିବା ପାଇଁ ହାତୀ ଉପରେ ବସିବା ଭଲ । କାମକୁ ଯିବା ଲାଗି ନୁହେଁ । ଘୋଡ଼ା ହୋଇଥିଲେ କିଛିଟା ଚଳିଯାଇଥାନ୍ତା ।

ଟେମ୍ପୋରେ ସଦାବେଳ ପରି ଗାଁର ମାଇପିଲୋକ ଓ ବୁଢ଼ାଙ୍କର ଭିଡ଼ ଥିଲା । ଗୋଟିଏ ବୁଢ଼ା ବାଡ଼ି ଧରି ବସିଥିଲା । ଛାତ୍ର ନଥିଲେ । ତେଣୁ ରଘୁବର ପ୍ରସାଦ ଭିତରକୁ ପଶିବାକୁ ଚେଷ୍ଟା କଲେ । ଟେମ୍ପୋବାଲା ଜାଗା କରିଦେବାକୁ କହିଲା । ଟେମ୍ପୋରେ ଜାଗା ଥିଲେ ସିନା ମିଳିଥାନ୍ତା । ଏମିତି ତ ହେବ ନାହିଁ ଯେ ବାହାରର ପଡ଼ିଆରୁ ଟିକିଏ ଜାଗା ନେଇକରି ଟେମ୍ପୋରେ ରଖିଦେଲେ ଜାଗା ହୋଇଯିବ । ଜାଗା ନଥିଲେ ବି ସେ ଟେମ୍ପୋରେ ପଶିଗଲେ । ଯେତେବେଳେ ଟେମ୍ପୋ ଚାଲିଲା ସେତେବେଳେ ତାଙ୍କୁ ଲାଗିଲା ଯେ ତାଙ୍କର ନିଃଶ୍ୱାସ ସତେ ଅବା ଅଟକିଯିବ । ଝିଅ ମାଇପିଙ୍କ ମେଳରେ ତାଙ୍କୁ ବସିଥିବାର କେହି ଛାତ୍ର ଦେଖିନେଲେ ତାଙ୍କୁ ଅଡୁଆ ଲାଗିବ ନାହିଁ । କାରଣ ଛାତ୍ର ଭାବିବ ଯେ ରଘୁବର ପ୍ରସାଦଙ୍କ ବସିବା ପରେ ମାଇପେ ବସିଥବେ । ମାଇପେ ବସିବା ପରେ ରଘୁବର ପ୍ରସାଦ ବସିଥିବେ ଏକଥା ବା କେହି ଛାତ୍ର କାହିଁକି ଭାବିବ ?

ହାତୀ ବାହାରି ଯାଇଥିଲା ଅନେକ ଆଗରୁ କିନ୍ତୁ ତେବେ ବି ହାତୀ ଏତେ ଧୀରେ ଧୀରେ ଚାଲିଥିଲା ଯେ ତାଙ୍କର ଟେମ୍ପୋ ହାତୀକୁ ଟପି ବାହାରିଗଲା । ବାଡ଼ି ଧରିଥିବା ବୁଢ଼ାର କୋଳରେ ଗୋଟିଏ କମ୍ବଳ ଥିଲା ଯାହା କି ରଘୁବର ପ୍ରସାଦଙ୍କୁ ଫୋଡ଼ି ଦେଉଥିଲା । ଶୀତ ଦିନ ଚାଲିଯିବାର କିଛିଦିନ ବିତିଗଲେ ବି ଆଗଦିନର ଅଭ୍ୟାସ ଭଳି କମ୍ବଳ ତାର କାନ୍ଧରେ ପଡ଼ିଥିଲା ।

ବିଭାଗାଧ୍ୟକ୍ଷଙ୍କ ସଙ୍ଗେ ରଘୁବର ପ୍ରସାଦ କଥା ହେଲେ, ''କଲେଜ ଆସିବାକୁ କଷ୍ଟ ହେଉଛି ସାର୍ । ଟେମ୍ପୋ ଠିକ୍ ସମୟରେ ମିଳୁନାହିଁ । ଡେରି ହେଲେ ଅଧା ଦିନର ଛୁଟି ନେବାକୁ ହେଉଛି ।

''ସ୍କୁଟରଟାଏ କିଣୁନାହଁ ।

''ସାର୍ ମୁଁ ଏତେ ଟଙ୍କା କାହୁଁ ପାଇବି ?

''ସାଇକେଲ ଚଢ଼ି ଆସ ।

''ସାଇକେଲ ଚଢ଼ି ଆସିବାକୁ ମନ ହୁଏ । ବାପାଙ୍କର ଗୋଟିଏ ପୁରୁଣା ସାଇକେଲ, ଖରାପ ହୋଇଯାଇଛି ।

''ଚଲେଇଲେ ତାର ହେପାଜତ୍ ହେବ, ସାଇକେଲ ଠିକ୍ ରହିବ ।''

''ସେଇଆ କରିବାକୁ ହେବ । ଆପଣ କେବେ ସ୍କୁଟର କିଣିଲେ ?''

''ଆଠ ବର୍ଷ ହୋଇଗଲାଣି ।''

''ଯିବା ଆସିବାବେଳେ ଆପଣଙ୍କର ହାତୀ ସଙ୍ଗେ ଭେଟ ହୁଏ ?''

''ହଁ ! କିଛି ଦିନ ହେଲା ନିତି ଦେଖାହୁଏ ।

''ସ୍କୁଟରର ହର୍ଣ୍ଣ ଶୁଣିଲେ ହାତୀ ହଟିଯାଏ ?''

''ହାତୀ ଶୁଣିକରି ହଟେ କି ନା କେଜାଣି । ମାହୁନ୍ତ ଶୁଣିକରି ତାକୁ ହଟାଇ ଦେଉଥିବ ।''

''ହାତୀ ବେଶ୍ ବୁଝିବାବାଲା ଜୀବ । ସେ ତ ଆପେ ଆପେ ହଟିଯିବା କଥା ।''

''ସାମନାରେ ବସ୍ କି ଟ୍ରକ୍‌କୁ ଆସିବାର ଦେଖିଲେ ହାତୀ କଡ଼କୁ ଚାଲିଯାଉଥିବ ।''

''ଯିବା କଥା ତ ।''

'ହାତୀର ପାଖ ଦେଇ ସ୍କୁଟର ଚଳାଇ ଆଣିବା ପାଇଁ ଆପଣଙ୍କୁ ଡର ଲାଗେ ନା ? ମୁଁ ହୋଇଥିଲେ ନିଶ୍ଚୟ ଡର ଲାଗିଥାନ୍ତା ।

''ଡର ଲାଗେ । ହାତୀ ନିଜର ବୋଧଶକ୍ତି ଓ ମାହୁନ୍ତର ବୋଧଶକ୍ତି ସଙ୍ଗେ ତାଳ ଦେଇ ଚାଲେ । ଯେବେ ଦୁହିଁଙ୍କ ବୋଧ ମଧ୍ୟରେ କିଛି ଫରକ ହେବ ତାହାହେଲେ ତ ମୁସ୍କିଲ କଥା ।''

''ଏମିତି ବି ହୋଇପାରେ ଯେ ମାହୁନ୍ତର ଭୁଲକୁ ହାତୀ ସମ୍ଭାଳିନେବ ।''

''ହଁ । ପୁଣି ମାହୁନ୍ତର ଠିକ୍ ଥିଲେ ହାତୀର ଭୁଲ ବି ହୋଇପାରେ ।''

''ଆଜ୍ଞା ହଁ ।''

''ହାତୀ ପାଖରେ ଯିବା ବେଳେ ମୁଁ ସ୍କୁଟରର ବେଗ କମାଇ ଧୀରେ କରିଦିଏ । ହାତୀଠାରୁ କିଛି ବାଟ ଦେଇ ବାହାରିଯାଏ ଯେପରି ହଠାତ୍ ସେ ବୁଲିପଡ଼ିଲେ ତାର ଶୁଣ୍ଢର ପହୁଞ୍ଚ ଭିତରେ ମୁଁ ନଥାଏ । ହାତୀକୁ ଟପିବା ପରେ ପରେ ଶୀଘ୍ର ଗତି ବଢ଼ାଇ ଦିଏ ।

''କାହିଁକି ?''

''କାରଣ ହାତୀ ଏତେ ବଡ଼ ଜୀବ, ତାର ଶୁଣ୍ଢ ଲମ୍ବ । ଶୁଣ୍ଢ ବଢ଼ାଇ ଧରିନେଇ ପାରେ ।'' ହସିକରି ବିଭାଗାଧ୍ୟକ୍ଷ କହିଲେ –

''ଆଚ୍ଛା କହିଲେ, ହାତୀ କ'ଣ ଶଗଡ଼ଠାରୁ ଜୋର୍‌ରେ ଯାଇପାରେ ।''

''ସ୍କୁଟର୍‌ରେ ବସି ସେକଥା କେମିତି ଜାଣିହେବ । ହେଲେ ହାତୀରେ କି ଶଗଡରେ ବସିଲେ ତେବେ ଯାଇ ଜଣାଯିବ ।''

''ତଥାପି, ଆପଣ କ'ଣ ଭାବୁଛନ୍ତି ?''

''ହାତୀ ଶଗଡ଼କୁ ଟପିଯିବ ।''

''ମୋର ବି ସେଇଆ ମନେହୁଏ । ଆଉ ସାଇକେଲ୍ ?''

''ସାଇକେଲ୍ ହାତୀକୁ ଟପିଯିବ ?''

''ଯଦି ହାତୀ ପାହୁଲରେ ଚାଲେ ତେବେ ?

''ହାତୀ ପାହୁଲରେ ଚାଲେ, ଯାର ମାନେ ? ଯଦି ନଚାଲେ କ'ଣ ଘୋଡ଼ା ଉପରେ ଚାଲିବ ?''

''ନା ସାର୍, ମୁଁ କହୁଥିଲି, ହାତୀ ଧାଇଁଲେ ବି ସାଇକେଲ ଟପି ପାରିବ ନାହିଁ ।''

''ହଁ । କିନ୍ତୁ ହାତୀ ଧାଇଁବ ତ ପାହୁଲ ପକେଇ ନା ? ମଇଁଷିକୁ ଧାଇଁବାର ଦେଖିଛ ? ବହୁତ ଜୋର୍‌ରେ ଦଉଡ଼େ ।

''ନାହିଁ ସାର୍ ! ମଇଁଷି ଏତେ ଜୋର୍‌ରେ ଦଉଡ଼େ ନାହିଁ, ଯେତେଟା ଦଉଡ଼ିବା ବେଳେ ଦେଖାଯାଏ । ମୋଟା ସୋଟା ହୋଇଥିବାରୁ ତା'ର ଦଉଡ଼ିବାଟା ଜୋର୍‌ରେ ଦଉଡ଼ିବା ପରି ଦିଶେ ।''

''ହାତୀ ଧାଇଁଲେ ମଇଁଷିଠାରୁ ପଛରେ ପଡ଼ିଯିବ ।''

''ତା' ହୋଇପାରେ ।''

''କିନ୍ତୁ ମାଇକେଲ ହାତୀକୁ ଟପି ଚାଲିଯିବ ।''

''ହଁ ମାଇକେଲ ତ ଟପି ଚାଲିଯିବ ।''

''ଯେତେବେଳେ କୁକୁର ବି ତ ହାତୀକୁ ଟପି ଚାଲିଯାଏ ।''

''କେଜାଣି କାହିଁକି ରାଜା ମହାରାଜାଏ ହାତୀରେ ବସୁଥିଲେ ।''

''ଉଚ୍ଚରେ ରହିବାକୁ ଓ ବସିବା ସକାଶେ ।''

''ଆଉ କିଛି ଉଚ୍ଚା ଯାନ ତ ନଥିଲା ।''

''ଓଟ ବି ଉଚ୍ଚା ହୁଏ ।''

''ହାତୀଠୁଁ ?''

''କେଜାଣି ।''

''ଯେଉଁଠି ଯାହା ମିଳେ ତାହାରି ବ୍ୟବହାର ହୁଏ । ଧାନ ହୁଏ ତେଣୁ ଭାତ ଖାଆନ୍ତି ।''

''ଚାଷୀ ଏଠି ଗହମ ବି ଅମଳ କରନ୍ତି, କିନ୍ତୁ ହାତୀ ଆଉ ଓଟ ଏଠି ଜନ୍ମ ହୁଅନ୍ତି ନାହିଁ ।''

''ହଁ ସାର୍'' ରଘୁବର ପ୍ରସାଦ କହିଲେ ।

ଫେରିବାବେଳେ ରଘୁବର ପ୍ରସାଦ ବିଭାଗାଧ୍ୟକ୍ଷଙ୍କ ସ୍କୁଟର ପଛରେ ବସିଥିଲେ । ବିଭାଗାଧ୍ୟକ୍ଷ ହିଁ ସ୍କୁଟରରେ ବସି ଯିବାକଥା କହଥିଲେ । ଆଜି ସେ ସ୍କୁଟରରେ ହାଉଆ ଭରିଥିଲେ ।

''ହାଓ୍ୱା ଠିକ୍ ଅଛି ତ ?'' ରଘୁବର ପ୍ରସାଦ ବସିବା ଆଗରୁ ପଚାରିଥିଲେ ।

''ହଁ ।''

''ବସେଁ ?''

''ହଁ ବସ । ସ୍କୁଟରକୁ ଷ୍ଟାର୍ଟ ଦେଇ ଠିଆ ହୋଇଛି । ତୁମକୁ ସ୍କୁଟରରେ ବସିବାକୁ ଯେବେ କହି ନଥାନ୍ତି ତେବେ କାଲି ତୁମେ ନିଜ ପାଇଁ ଗୋଟିଏ ହାତୀ କିଣିଥାନ୍ତ ।''

''ପେଟ୍ରୋଲ ବି ବହୁତ ମହଙ୍ଗା ।''

''ଯେ ହେଲା ପେଟ୍ରୋଲରେ ଚାଲିବାର ହାତୀ ।''

ରଘୁବର ପ୍ରସାଦଙ୍କୁ ହାତୀ ସାମନାରେ ଯାଉଥିବାର ଦେଖାଗଲା । ସେ ବିଭାଗାଧ୍ୟକ୍ଷଙ୍କୁ କହିବାକୁ ଚହୁଁଥିଲେ, ''ସାର, ହାତୀ'' କିନ୍ତୁ କିଛି କହିଲେ ନାହିଁ । ବିଭାଗାଧ୍ୟକ୍ଷ ବି ଦେଖିଥିବେ । ସେ ସ୍କୁଟରକୁ ଧୀରେ କରି ହାତୀଠାରୁ ଦୂରତ୍ୱ ରଖି ସ୍କୁଟରକୁ ଆଗକୁ ବଢ଼ାଇଦେଲେ । ରଘୁବର ପ୍ରସାଦ ମୁଣ୍ଡକୁ ବୁଲାଇ ବସିଥିବା ସାଧୁଙ୍କୁ ଦେଖିଲେ । ସାଧୁ ହାତ ଉଠାଇ ରଘୁବର ପ୍ରସାଦଙ୍କୁ 'ରାମ-ରାମ' କହିଲା ।

ରଘୁବର ପ୍ରସାଦ ଯେଉଁଠି ଅଟୋ ଲାଗି ଠିଆ ହୁଅନ୍ତି ସେହି ଜାଗାରେ ଓହ୍ଲାଇଗଲେ । ବିଭାଗାଧ୍ୟକ୍ଷ ସିଧା ବାହାରିଗଲେ । ରଘୁବର ପ୍ରସାଦ ଭାବୁଥିଲେ ଯେତେବେଳେ ଆରମ୍ଭ ଯୁଗରେ ଦୁନିଆ ଧୀରେ ଚାଲୁଥିଲା ସେତେବେଳେ ହାତୀ ଦୁନିଆ ସାଥୀରେ ତାଳ ଦେଇ ଚାଲୁଥିଲା । ଏବେ ସୁଦ୍ଧା ହାତୀ ଆଗଭଳି ଧୀର ଗତିରେ ଚାଲେ । ଦୁନିଆ ସାଙ୍ଗରେ ହାତୀ ଥାଉକି ନ ଥାଉ କିନ୍ତୁ ହାତୀ ସାଥିରେ ଦୁନିଆ ଏବେ ବି ଅଛି । ହାତୀର ଏହି ଦୁନିଆ ଭିତରେ ରଘୁବର ପ୍ରସାଦ ସାମିଲ୍ ହେଉଥିଲେ ।

ମାର୍ଚ୍ଚ ମାସ । ଆରମ୍ଭ ସମୟ । କିନ୍ତୁ ତେବେ ବି ବର୍ଷା ଏପରି ହେଉଛି ଯେ ଅଗଷ୍ଟ ମାସ ପରି ଲାଗୁଛି । ପାଣିର ଜୋର ଛାଟ ଖାଇ ଆମ୍ବ ବଉଳ ଝଡ଼ିଯାଉଛି । ବଉଳ ବାସନାରେ ଓଦା ଭାବ ଥିଲା । ଖାଲି ଥିବାବେଳେ ରଘୁବର ପ୍ରସାଦ ବିଭାଗାଧ୍ୟକ୍ଷଙ୍କ ସାଙ୍ଗରେ କଥା ହେବାକୁ ଚାହୁଁଥିଲେ । ଯଦି ବର୍ଷା ବନ୍ଦ ନହୁଏ ତେବେ ଏଇ ବର୍ଷା ଭିତରେ କେମିତି ଫେରାଯିବ । ଅଟୋ ଲାଗି ତିନ୍ତି କରି ଠିଆ ହେବାକୁ ପଡ଼ିଥାନ୍ତା । ରଘୁବର ପ୍ରସାଦଙ୍କ ପାଖରେ ଛତା କି ରେନ୍‌କୋଟ୍ ନାହିଁ । ସ୍କୁଟର ପଛରେ ଛତା ନେଇ ବସିଲେ ଛତାଟା ଓଲଟିକରି ଭାଙ୍ଗିଯାଇଥାନ୍ତା । ଆଉ କାହାରି ଛତା ଧରି ସ୍କୁଟରରେ ଯିବା ଠିକ୍ ହୋଇନଥାନ୍ତା । ରେନ୍‌କୋଟ୍ ପିନ୍ଧିକରି ଅବଶ୍ୟ ସ୍କୁଟରରେ ବସାଯାଇପାରେ । ହାତୀ ଉପରେ ବି ଛତା ନେଇ ବସାଯାଇପାରେ । ଝାଳରବାଲା ଛତା ହାଉଦାରେ ବାନ୍ଧିକରି ଏଇଥିପାଇଁ ରଖାଯାଉଥିବ ଯା'ଦ୍ୱାରା ଖରା ବର୍ଷାରୁ ରକ୍ଷା ମିଳିପାରିବ ।

''ସାର୍ ଗୋଟିଏ କଥା ପଚାରିବି ?'' ରଘୁବର ପ୍ରସାଦ କହିଲେ । ବିଭାଗାଧ୍ୟକ୍ଷ କିଛି କାମ କରୁଥିଲେ ।

''କିନ୍ତୁ ହାତୀ ବିଷୟରେ ନୁହେଁ ।'' ବିଭାଗାଧ୍ୟକ୍ଷ କହିଲେ ।

''ହଁ, ସାର୍ ।'' ରଘୁବର ପ୍ରସାଦ କହିଲେ । ସେ ଚୁପ୍ ହୋଇଗଲା ।

ଗଣିତ ବିଭାଗରେ ଦୁଇଜଣ ଶିକ୍ଷକ ଥିଲେ । ରଘୁବର ପ୍ରସାଦ ଓ ବିଭାଗାଧ୍ୟକ୍ଷ । କଲେଜ ଖୋଲିବାର ତୃତୀୟବର୍ଷ । ତିନିଟି କ୍ଲାସରେ ମୋଟ ଅଠତିରିଶ ଜଣ ଛାତ୍ର ଥିଲେ । ପ୍ରଥମ ବର୍ଷ ଅଠରଜଣ ଛାତ୍ର, ତୃତୀୟ ବର୍ଷର ଶ୍ରେଣୀରେ କେବଳ ନଅଜଣ ଛାତ୍ର ।

''ସାର୍ !''

''ହାତୀ ବିଷୟରେ ତା' କିଛି ପଚାରୁନା ଆଉ ?''

''ଆଜ୍ଞା ଅନ୍ୟ ଜନ୍ତୁଙ୍କ ବିଷୟରେ ।''

''କହନ୍ତୁ ।'' ବିଭାଗାଧ୍ୟକ୍ଷ ଭାବିଲେ, ହାତୀ ବଦଳରେ ଜନ୍ତୁଙ୍କ ବିଷୟରେ ପଚାରିବାକୁ ମନା କରିବା ଉଚିତ୍ ହୋଇଥାନ୍ତା । ହାତୀ ଆପେ ଆପେ ତହିଁରେ ସାମିଲ୍ ହୋଇଯାଇଥାନ୍ତା ।

''ସାର୍ କାଞ୍ଜି ହାଉସ୍‌ରେ ଭାଲୁକୁ ରଖି ହେବ କି ?'' ବିଭାଗାଧ୍ୟକ୍ଷଙ୍କର ଧାରଣା ହେଲା ଯେ ରଘୁବର ପ୍ରସାଦଙ୍କ କଳା ପଶୁଙ୍କ ପ୍ରତି ବେଶୀ ଆକର୍ଷଣ ଅଛି । ଯଥା –ହାତୀ, ଭାଲୁ, ମଇଁଷି ଇତ୍ୟାଦି ।

''ବାରବୁଲା ଗାଈଗୋରୁଙ୍କୁ କାଞ୍ଜି ହାଉସ୍‌ରେ ରଖନ୍ତି । ଭାଲୁକୁ ? ଭାଲୁ ଜଙ୍ଗଲରେ ଥାଏ ।

''ଜଙ୍ଗଲର ଭାଲୁ ବାରବୁଲା ଭାଲୁ ହେବନାହିଁ । ଗାଈ ଗୋରୁ ଯାହାଙ୍କୁ ଦେଖାଶୁଣା କରିବାକୁ କେହି ନଥିବ, ପାଚିଲା ଫସଲ ଯାଇ କରି ଚରିଯାନ୍ତି, ଲୋକସାନ କରନ୍ତି, ତେବେ ତାଙ୍କୁ କାଞ୍ଜି ହାଉସ୍‌ରେ ବନ୍ଦକରି ପାରିବା । ଯାହାର ଗାଈ ସେ ଆସି ଦଣ୍ଡ ଦେଇ ତାକୁ ଛଡ଼ାଇ ନେଇ ପାରିବ ।''

''ଜଙ୍ଗଲରୁ ବାହାରି ଆସି ଭାଲୁ ବିଲକୁ ଚାଲିଆସିଲେ ସେ ବାରବୁଲା ହୋଇଯିବ ନାହିଁ କି ?

''ବିଲକୁ ଆସିଲେ ବି ବାରବୁଲା ହେବ ନାହିଁ ।''

''ଗାଁକୁ ଆସିଗଲେ କ'ଣ ହେବ ?''

''ଭାଲୁ ଯୋଉଠିକି ଆସିଲେ ବି ଜଙ୍ଗଲି ରହିବ ।''

''ଲୋକବାକଙ୍କୁ ଯେବେ ଭାଲୁ ଲୋକ୍‌ସାନ୍ କରାଇବ ଓ ଧରା ପଡ଼ିଯିବ ତେବେ କାଞ୍ଜି ହାଉସ୍‌ରେ ଦେଇପାରିବା ତ ?''

''ଆରେ ! କାଞ୍ଜି ହାଉସ୍‌ରେ ଭାଲୁକୁ କ'ଣ ଖୁଆଇବା ? ତାକୁ କିଏ ଜୋରିମାନା ଦେଇ ଛଡ଼ାଇବ ? ଭାଲୁକୁ ଜଙ୍ଗଲ ବିଭାଗକୁ ଦେଇପାରିବା ଯେ ତାକୁ ପୁଣି ଜଙ୍ଗଲରେ ଛାଡ଼ିଦିଅନ୍ତୁ କି ନେଇ ଚିଡ଼ିଆଖାନାରେ ରଖନ୍ତୁ । ଜଙ୍ଗଲ ବିଭାଗ ଦୂର ଗହନ ବନରେ ଛାଡ଼ି ଦେଇପାରେ ।''

''ସାର୍, କାଞ୍ଜି ହାଉସ୍‌ରେ ଗାଇ ବଳଦଙ୍କୁ ନେବାକୁ କେହି ନ ଆସିଲେ କ'ଣ କରିବା ?''

''ନିଲାମ କରିଦେବା ।''

''ଭାଲୁର ନିଲାମ କଲେ ସର୍କସ୍‌ବାଲା, ଭାଲୁ ନଚାଇବା ବାଲା ଖର୍ଦ୍ଦି କରିପାରନ୍ତି ।''

''ଭାଲୁକୁ ନଚାଉଥିବା ଲୋକ କେତେ ଜଣ ମିଳିବେ ?''

''ଆଠ ଦଶଜଣ ତ ଏକାଠି ହୋଇଯିବେ ।''

''ଆଚ୍ଛା କାଲି ସେଥିରୁ ଅନ୍ତତଃ ଗୋଟେକୁ ଖୋଜି ଆଣ । ମୋର ତ ମନେହୁଏ ଦୁଇ ଚାରିଜଣ ବୁଲି ବୁଲି ଭାଲୁକୁ ନଚାଇ ବୁଲନ୍ତି । ଦୁଇ ଚାରିଜଣ ନୁହନ୍ତି, ଜଣେ ହେବ । ସେହି ଜଣକ ଦୁନିଆସାରା ବୁଲୁଥାଏ ।''

''ଆମ ବସ୍ତିରେ ଭାଲୁକୁ ନଚାଉଥିବାର ଲୋକ ଗୋଟିଏ ହେଲେ ନାହିଁ । ଯଦି ଥାନ୍ତା ସେ ଭାଲୁ ସଙ୍ଗରେ ରହୁଥାନ୍ତା ।''

''ଭାଲୁ ପୋଷ୍ୟ ପଶୁ ନୁହେଁ । ଜଙ୍ଗଲ ପଶୁ । ପାଳିତ ପଶୁଙ୍କର ନିଲାମ ହୁଏ । ଜଙ୍ଗଲି ପଶୁଙ୍କୁ ଜଙ୍ଗଲ ପଠାଇ ଦିଆହୁଏ, ବୁଝିଲ କି ?''

''ବୁଝିଲି । କିନ୍ତୁ ସାର୍ ! ଗାଈ ବି ଦିନେ ପୋଷ୍ୟ ନ ଥିବ, ସେ ବି ଜଙ୍ଗଲି ପଶୁ ହୋଇଥିବ । ମନୁଷ୍ୟ ଜଙ୍ଗଲି ଥିଲା । ଭାଲୁବି ଧୀରେ ଧୀରେ ପୋଷ୍ୟ ହୋଇଯାଇଥାନ୍ତା ।

''ନା, ଜମା ନୁହେଁ । ଭାଲୁ ପୋଷ୍ୟଜୀବ ନୁହେଁ ।''

''ସାର୍ ! ହାତୀ ପୋଷ୍ୟ ଜୀବ ହୋଇଗଲାଣି ।'' ରଘୁବର ପ୍ରସାଦ କହିଲେ ।

''ତମେ ଛତା ଆଣିଛ ?'' ବିଭାଗାଧ୍ୟକ୍ଷ ପଚାରିଲେ ।

''ନା, ଛତା କାହାଠୁ ମାଗିନେବ । ଚାଲିକରି ଯିବି ।''

''ଚପରାସୀଠାରୁ ଛତା ମାଗିନେବି । ଚାଲିକରି ଯିବ । ତିନ୍ତିକରି ଯିବାର ହେଲେ ମୋ ସାଙ୍ଗରେ ଚାଲ । ମୁଁ ତିନ୍ତିକରି ଯିବି ।''

''ମୁଁ ଚାଲିକରି ଯିବି । ମନ ହେଲେ ଛତା ନେଇ ଜଲ୍‌ଦି ଚାଲିବି । ଛତା ନେଇ ଦଉଡ଼ିବି ।''

''ପାଦରେ ଦଉଡ଼ିବ ?''

''ହଁ ସାର୍ ! ବାପା କହନ୍ତି ଯେ ଯେତେବେଳେ ବର୍ଷା ହୁଏ ସେତେବେଳେ ଚୋରମାନଙ୍କୁ ଚୋରି କରିବାକୁ ସୁବିଧା ହୁଏ ।''

''ହଁ, ମୁଁ କୁକୁର ଜାଗାରେ ଗୋଟିଏ ବାଘ ପୋଷିବାକୁ ଭାବୁଛି । ଚୋର ଆସିଲେ ସେ ଭୁକିବ ନାହିଁ, ହେଣ୍ଟାଳିବ ।''

ପ୍ରିନ୍ସିପାଲ୍ ତାଙ୍କ ସ୍କୁଟରରେ ତିନ୍ତିକରି ଚାଲିଗଲେ । କିଛି ଛାତ୍ର ତିନ୍ତିକରି ସାଇକେଲରେ, କିଛି ଚାଲି ଚାଲି ଗଲେ । ଛାତ୍ରମାନେ ସାଇକେଲ ଉପରେ ଡବଲ ରାଇଡ଼ିଂ କରି ମଧ ଗଲେ । ଯେଉଁ ଶିକ୍ଷକମାନେ ସାଇକେଲରେ ଆସନ୍ତି ସେମାନେ ବର୍ଷା ବନ୍ଦ ହେବାଯାକେ ଅପେକ୍ଷା ନ କରି ସାଇକେଲ ଧରି ଚାଲିଗଲେ । ବିଭାଗାଧକ୍ଷ ଯିବାବେଳେ ରଘୁବର ପ୍ରସାଦଙ୍କୁ ପଚାରିଲେ, ''ତିନ୍ତିକରି ଯିବ କି ?'' ''ନା, ସାର୍ ! ମୋତେ ଛତା ମିଳିଗଲାଣି, ଚାଲିକରି ଯାଉଛି । ବାଟରେ ଟେମ୍ପୋ ମିଳିଯିବ ।''

''ବାଟରେ ହାତୀକୁ ଭେଟିଲେ ଛତା ଲଗାଇ ହାତୀ ଉପରେ ବସିବ ନାହିଁ ରଘୁବର ପ୍ରସାଦ ।''

''କାହିଁକି ସାର୍ ?''

''ଗୋଟିଏ ହାତରେ ତ ଛତା ଧରିଥିବ, ସମ୍ଭାଳି କରି ବସି ପାରିବ ନାହିଁ, ହୁଏତ ରାସ୍ତା ଉପରର ପବନ ଅପେକ୍ଷା ହାତୀ ଉପରର ପବନ ଆହୁରି ଜୋର୍‌ରେ ହେବ । ଛତା ଓଲଟିଯିବ । ଛତାକୁ ସମ୍ଭାଳିବାକୁ ଯାଇ ନିଜେ ପଡ଼ିଯିବ ନାହିଁ ତ ? ଛତାକୁ ବରଂ ପଡ଼ିଯିବାକୁ ଦେବ ।''

''ଛତାଟି ମୋର ନୁହେଁ ।''

''ଯାହାର ଛତା ହୋଇଥାଉ ।''– ବିଭାଗାଧକ୍ଷ ବିରକ୍ତି ପ୍ରକାଶ କଲେ ।

''ହଉ ସାର୍ !''

ରଘୁବର ପ୍ରସାଦ ଚାଲି ଚାଲି ବାହାରି ପଡ଼ିଥିଲେ । ବର୍ଷା ଟିକେ କମ୍ ହୋଇଛି । ତଥାପି ବେଶ୍ ଜୋର୍‌ରେ ହେଉଛି । ସହରଆଡ଼ୁ ଗାଁର ଯାତ୍ରୀଙ୍କୁ ନେଇ ଲଦାଲଦି କରିଥିବା ଟେମ୍ପୋ ଆସିକରି ଚାଲିଗଲା । ଏହି ଟେମ୍ପୋ ଫେରିଲେ ତେବେ ଅବା ଜାଗା ମିଳିଯିବ । ଟେମ୍ପୋ ନୂଆଗାଁ ଯାକେ ଯାଏ । କଲେଜ ଜୋରାଗାଁକୁ ଲାଗିକରି ଅଛି । ଏ ଗାଁରେ ବଳଦେବଙ୍କର ଗୋଟିଏ ଲମ୍ବାଚଉଡ଼ା ପଡ଼ିଆ ଥିଲା ଯାହାକି କଲେଜକୁ ଦାନ କରି ଦିଆଯାଇଥିଲା । କଲେଜର ବାରଣ୍ଡାରେ ବଡ଼ ବଡ଼ ଖିଲାଣ ହୋଇଥିଲା । ଘର ଭିତରେ ବି କାନ୍ଥରେ ଖିଲାଣ ଥିଲା । ବାରଣ୍ଡାରେ ଛପରକୁ ଟେକି ରଖିବାକୁ ଲାଇନ୍ କରି ପଥର ଉପରେ କାଠର ଖମ୍ବ ଥିଲେ । କାଠର ଖୁଣ୍ଟ, ବଲ୍ଲା, ଦରଜା ଓ ଝରକାର କବାଟକୁ ପୋଲାଙ୍ଗ ତେଲ ଦେଇ କଳା ଓ ଚିକ୍କଣ କରାଯାଇଥିଲା । କେତେ ଦିନରୁ ଏସବୁରେ ପୋଲାଙ୍ଗ ତେଲ ଲଗାଇ ପାଲିସ୍ କରାଯାଉଥିଲା । ତେଲ ଯୋଗୁରୁ ତହିଁରେ ଧୂଳିର ପରସ୍ତ ଜମିଯାଏ । ଏହି ପରସ୍ତ ପୁଣି ଏତେ କଡ଼ା ହୋଇଯାଏ ଯେ କାଠର ରଙ୍ଗ ପରି ହିଁ ଲାଗୁଥାଏ । ଧୂଳି ଜମିଥିବା ପରସ୍ତ ପ୍ରାକୃତିକ ସୂକ୍ଷ୍ମ ଚାରୁକଳା ପରି ଲାଗୁଥାଏ । ଦରଜାରେ ପିତ୍ତଳ ଓ ଲୁହାର ଫୁଲ ଡିଜାଇନ୍‌ର ମୋଟା ମୋଟା କଣ୍ଟା ଲଗାଯାଇଛି । ଏକାଠି ଥିବାରୁ ପିତ୍ତଳର ଫୁଲ ଡିଜାଇନ୍‌ର କଣ୍ଟା ବି ଲୁହା କଣ୍ଟା ଭଳି କଳା ପଡ଼ିଯାଇଛି । ସବୁଯାକ କବାଟ ନଅବେଢ଼ିଆ ଥିଲା । ଭାରି ବି, ମଜବୁତ୍ ବି । ବାରଣ୍ଡାରେ କାନ୍ଥ ତଳଆଡ଼କୁ ଗେରୁମାଟିରେ ଡିଜାଇନ୍ ଥିବା ପଟି ଦିଆ ହୋଇଛି । ପ୍ରିନ୍ସିପାଲଙ୍କ ଦରଜା ପାଖର କାନ୍ଥରେ ନେଳିଆ ରଙ୍ଗର ମୟୂର ଅଙ୍କା ହୋଇଥିଲା । ତହିଁରେ ଠାଏ

ଠାଏ ନାଲି ରଙ୍ଗର ଛିଟା ବି ଥିଲା । ଅଫିସ୍ ଘରର ଦରଜା ପାଖରେ ଗଣେଶ ଠାକୁର ଅଙ୍କା ହୋଇଥିଲା । ଗଣିତ ବିଭାଗର କକ୍ଷ ଭିତରେ ଗୋଟିଏ ପକ୍ଷୀ ଅଙ୍କା ହୋଇଥିଲା । ଆଶ୍ଚର୍ଯ୍ୟ କଥା, ହାତୀ କେଉଁଠି ହେଲେ ଅଙ୍କା ହୋଇନାହିଁ । ଶ୍ରେଣୀ ଲାଗି ଅନେକଗୁଡ଼ିଏ ଘର ଖାଲି ଥିଲା । ଗୋଟିଏ ଖାଲି ଘରର କାନ୍ଥରେ ଅଠରଟି ହାତର ଛାପ ରହିଛି । ଝିଡ଼ିକିଯାକ ଛୋଟ ଛୋଟ । ସେଠି ଲୁହା ଛଡ଼ ଜାଗାରେ ବାଉଁଶ ପିଟା ହୋଇଥିଲା । କଲେଜର ଚଟାଣ ଗୋବରରେ ଲିପା ପୋଛା ହୋଇଛି । ତିନିଟି ଶ୍ରେଣୀରେ ବେଞ୍ଚ ଥୁଆ ହୋଇଛି ଆଉ ଗୋଟିଏ ଲେଖାଏଁ ଟେବୁଲ । ଚଉକି ନାହିଁ । ଚଉକି ନିଅଣ୍ଟ ଥିଲା । ଏଗାରଟି ବଖରା ଅଛି । ତିନିଟି ବଖରାରେ ପାଠପଢ଼ା ହେଉଛି । ଗୋଟିଏ ଘରେ ପ୍ରିନ୍ସିପାଲ ବସନ୍ତି । କଲେଜର ସାମ୍ନାରେ ଗୋଟିଏ ବଡ଼ ପଡ଼ିଆ ଅଛି, ସେଠି ପତାକା ଉତ୍ତୋଳନ ଲାଗି ଗୋଟିଏ ମୋଟା ବଲ୍ଲିକାଠ ପୋତା ହୋଇଥାଏ । ତହିଁରେ ଗୋଟିଏ ଉଚ୍ଚ ବାଉଁଶ ବନ୍ଧା ହୋଇଛି । ବାଉଁଶରେ ପତାକା ଉତ୍ତୋଳନ କରି ବଲ୍ଲିରେ ବନ୍ଧାହୁଏ । କଲେଜକୁ ଲାଗିକରି ଗୋଟିଏ ଝୁମ୍ପୁଡ଼ି ପ୍ରାଥମିକ ବିଦ୍ୟାଳୟ ଅଛି । ମାଧ୍ୟମିକ ସ୍କୁଲ ଗାଁରେ ନଥିଲା । ଏହି ଗାଁ ଓ ତା'ର ପାଖ ସହର ଲାଗି ଏଇଠି ଗୋଟିଏ ଅଧିକା କଲେଜ ଥିଲା । ସହର ଭିତରେ ବି ଏକ କଲେଜ ଅଛି । ସେଠି ଶହେ ପଚିଶ ପୁଅପିଲାଙ୍କର ଭିଡ଼ ଥିଲା ।

ପ୍ରାଥମିକ ସ୍କୁଲର ଶିକ୍ଷକ କଲେଜର ଶିକ୍ଷକଙ୍କୁ ଖୁବ୍ ସମ୍ମାନ କରୁଥିଲେ । ଗାଁ ବାଲାଙ୍କର କହିବାର କଥା ହେଲା ଯଦି କଲେଜ ଅଛି ତାହାରି ଭିତରେ ପ୍ରାଥମିକ ସ୍କୁଲଟି ରହିଗଲେ ଭଲ ହୋଇଥାନ୍ତା । ପ୍ରିନ୍ସିପାଲ୍ ଓ କମିଟିର ଲୋକଙ୍କର ଆପତ୍ତି ନଥିଲା ହେଲେ ଗୋଟିଏ ଅସୁବିଧା ଥିଲା । ସ୍କୁଲ ପିଲାଙ୍କର ଗଣ୍ଡଗୋଳ ବହୁତ ହେଉଥିଲା । ସ୍କୁଲର ମାଷ୍ଟ୍ରମାନେ କହୁଥିଲେ ଯେ ସେମାନେ ବିନା ଗଣ୍ଡଗୋଳରେ ପଢ଼ାଇବେ ଆଉ ପଢ଼ାଇବା ବେଳେ ଝରକା କବାଟ ବନ୍ଦ କରିଦେବେ ।

ସ୍କୁଲ ପିଲାଏ ଯେତେବେଳେ ଏକଥା ଜାଣିଲେ ଯେ କଲେଜର ରୁମ୍ ତାଙ୍କର ଗଣ୍ଡଗୋଳ ହେତୁ ମିଳିବ ନାହିଁ ସେତେବେଳେ ସାନ ସାନ ପିଲାମାନେ ହୋ ହଲ୍ଲା, ଚିତ୍କାର ପ୍ରାୟ ବନ୍ଦ କରିଦେଇଥିଲେ । ନିଜ ନିଜ ଭିତରେ ଝଗଡ଼ା ବି କଲେ, ଚୁପ୍ ଚୁପ୍ କରୁଥିଲେ । ଖାଲି ମାଷ୍ଟରଙ୍କର ପଢ଼ାଇବା ବେଳର ଗଣ୍ଡଗୋଳଟି ହେଉଥିଲା । ପିଲାଏ ନିଜ ନିଜ ଭିତରେ ଫୁସ୍‌ଫାସ୍ କରି କଥା କହୁଥିଲେ । ସାନ ସାନ ପିଲାଙ୍କ ଓଠ ଉପରେ ଚୁପ୍ ରହିବାର ଇଙ୍ଗିତ ହୋଇ ଗୋଟିଏ ଆଙ୍ଗୁଠି ଅଭ୍ୟାସ ବଶତଃ ରହିଯାଉଥିଲା । ମାଷ୍ଟର ନଥିଲେ ମନେ ହେଉଥିଲା ଯେ ଶ୍ରେଣୀ ଭିତରେ କେହି ନାହିଁ– ଏହିପରି ଶାନ୍ତ ବାତାବରଣ ଥିଲା । କିନ୍ତୁ ଯାଇକରି ଦେଖିଲେ ଜଣାଯାଉଥିଲା ଯେ ଚାଳିଶିଟି ପୁଅଝିଅଙ୍କ ଭିତରୁ ଅଧାରୁ ବେଶୀ ଓଠରେ ଆଙ୍ଗୁଠି ଥୋଇକରି ଚୁପ୍ ହୋଇ ବସିଛନ୍ତି ଓ ବାକି ଅଧକ ଆଙ୍ଗୁଠି ନ ଦେଇ ଚୁପ୍ ଅଛନ୍ତି । ପିଲାଏ ମୁହଁରେ ଆଙ୍ଗୁଠି ଦେଇ ଯିବା ଆସିବା କରୁଥିବାର ଦେଖାଯାଏ ।

କଲେଜ ସାମନାରେ ଗୋଟିଏ ହ୍ୟାଣ୍ଡପମ୍ପ୍ ଥିଲା । ମଝିରେ ପାଣି ପିଇବାର ଛୁଟି ବେଳେ ପିଲାଏ ଓ ଟୋକାମାନେ ନିଶ୍ଚୟ ପାଣି ପିଉଥିଲେ । ପିଲାଙ୍କରେ ପାଣି ପିଇବାଲାଗି ସ୍କୁଲ ଓ କଲେଜ ଦୁଇ ଜାଗାରେ ମାଠିଆ ଆଉ ହାଣ୍ଡଲ୍‌ବାଲା ଲୋଟା ଥୁଆ ହୋଇଥାଏ । ମାଠିଆରୁ କାଢ଼ିକରି ଗିଲାସରେ ପାଣି ପିଇବା ପ୍ରିନ୍ସିପାଲ ଓ ମାଷ୍ଟରଙ୍କ ଠାରୁ ଆରମ୍ଭ କରି ସ୍କୁଲ ପିଲାଙ୍କ ପର୍ଯ୍ୟନ୍ତ କାହାକୁ ହେଲେ ଭଲ

ଲାଗେନାହିଁ । କଲେଜର ପ୍ରିନ୍ସିପାଲ ପାଣି ପିଇବାକୁ ହ୍ୟାଣ୍ଡପମ୍ପ ପାଖକୁ ଯାଉଥିଲେ । ବେଳେ ବେଳେ ତାଙ୍କ ସାଙ୍ଗରେ ଶିକ୍ଷକ ଥାନ୍ତି, କ୍ଲର୍କ ଥାନ୍ତି ବା ଚପରାସି ଥାନ୍ତି ସେହିମାନେ ହାଣ୍ଡପମ୍ପ ଚଲାନ୍ତି ।

କ୍ଲାସରୁମ୍ ପଛପଟେ ପୋଖରୀ ଅଛି । ପୋଖରୀ କୂଳରେ ପରିସ୍ରା କରିବାକୁ ଠାଏ ଘେର ଦିଆଯାଇଛି । ଆଠ ଜଣ ପିଲା ଏକାଠି ପରିସ୍ରା କରିପାରନ୍ତି, ତଥାପି ସେଠାକାର ଲୋକସଂଖ୍ୟା ଏତେ ବେଶୀ ହୋଇନାହିଁ ଯେ ପରିସ୍ରା କରିବା ପାଇଁ ଗୋଟିଏ ପୋଖରୀ ଖୋଳା ହେବ । ଯେତେବେଳେ କଲେଜର ପ୍ରିନ୍ସିପାଲ ବାହାରକୁ ଯାଉଥିଲେ, ସମସ୍ତେ ବୁଝିଯାଉଥିଲେ ଯେ ସେ ପାଣି ପିଇବାକୁ ନୁହେଁ ପରିସ୍ରା କରିବାକୁ ଯାଉଛନ୍ତି । ପ୍ରିନ୍ସିପାଲ ଯେବେ ଉଠି ଠିଆ ହୋଇ କହିବେ, ''ବାହାରକୁ ଯିବା ।'' ତେବେ ସେଠାରେ ବସିଥିବା ମାଷ୍ଟ୍ରମାନେ ଉଠିପଡ଼ନ୍ତି ଏକଥା ଭାବିକରି ଯେ ସେ ପାଣି ପିଇବାକୁ ଯାଉଛନ୍ତି । ଯେବେ ପରିସ୍ରା କରିବାର ଥାଏ ତେବେ ପ୍ରିନ୍ସିପାଲ କହିଦିଅନ୍ତି । ''ପାଣି ପିଇବାକୁ ନୁହେଁ ।'' ସେତେବେଳେ ସେ ଏକୁଟିଆ ଯାଆନ୍ତି ।

ପୋଖରୀକୁ ଦେଖି ଅନୁମାନ କରାଯାଇପାରେନା ଯେ ଆଗ ପୋଖରୀ ଥିଲା ନା ବଳରାମଙ୍କ ବାଡ଼ି । ଗୋଟିଏ ଘାଟ ନଥିବା ପୋଖରୀର ପ୍ରାଚୀନତାକୁ ଜାଣିବା ପାଇଁ କିଛି ଉପାୟ ନାହିଁ । ପୋଖରୀ କୂଳରେ କୌଣସି ମନ୍ଦିର ନାହିଁ । ଥିଲେ ଅବା ମନ୍ଦିରର ପ୍ରାଚୀନତା ଦ୍ୱାରା ପୋଖରୀର ପ୍ରାଚୀନତାର ଅନୁମାନ ହୋଇପାରିଥାନ୍ତା । କିନ୍ତୁ, ପୋଖରୀ କିଛି ନୂଆ ନୁହେଁ, ଉଦ୍ଧାର କାର୍ଯ୍ୟ ପରେ ସେ ଗଭୀର ଓ ବେଢଙ୍ଗ ହୋଇଛି । ପୋଖରୀର ପାଣି ଖୁବ୍ ସହଜରେ ଦିଶେନାହିଁ । ଉଚା ମାଟି ବନ୍ଧ ତଳେ ପାଣି ଅଛି । ସେଇମିତି ପୋଖରୀ ଦେଖିବାକୁ ସୁନ୍ଦର ଯାହାର ସ୍ତର ମାଟିର ସ୍ତର ସଙ୍ଗେ ସମାନ ହୋଇଥାଏ । ମାଟିର ସମତଳ ପରେ ଯାଇ ପୋଖରୀର ସମତଳ, ଜମିର ସମତଳ ସଙ୍ଗେ ସମାନ ଭାବେ ପାଣିର ସମତଳ । ଯେତେ ପୁରୁଣା ମାଟି ଓ ପାଣି ଥିବ ପୋଖରୀ ସେତିକି ପୁରୁଣା ଲାଗିବ । ଏହା ଏତେ ପ୍ରାକୃତିକ ଓ ପ୍ରାଚୀନ ମନେହୁଏ ଯେପରି ଏଠାରେ ଜମି ହେଉ ହେଉ ପାଣି ହୋଇଗଲା । ତାର କୂଳରେ ଘାସ ଓ କଇଁପତ୍ର । ଅର୍ଥାତ୍ ଯେତେ ପୁରୁଣା ଘାସ ଓ ବନସ୍ପତି ଓ କଇଁ ଥିବ ସେତିକି ପୁରୁଣା ହୋଇଥିବ ପୋଖରୀ । ଏ ପୋଖରୀରେ କଇଁଫୁଲ ନାହିଁ । ଯେଉଁଠି ସଡ଼କ ଉପରେ ମାଟି ପକେଇବାକୁ କଡ଼ରେ ଯେଉଁ ଗାତ ଖୋଳାହୁଏ, ସେସବୁ ପହିଲି ବର୍ଷା ପାଇଲେ ହିଁ ପାଣିରେ ଉବୁଟୁବୁ ହୁଅନ୍ତି । ବର୍ଷେ ଦି ବର୍ଷେ ପରେ ତହିଁରେ କଇଁର ଗୋଟିଏ ଛୋଟିଆ ଗୋଲପତ୍ର ଦେଖାଯାଇଥାଏ । ଆଉ ଗୋଟାଏ ଦିଟା ବର୍ଷା ପାଇଗଲେ ଛୋଟିଆ ଧଳା କଇଁ ଫୁଟିଉଠେ ।

ରଘୁବର ପ୍ରସାଦଙ୍କର ଗୋଟିଏ ବଖରାର ଘର । ସେହି ଘର ପାଇଁ ସେ ମାସିକ ତିରିଶଟଙ୍କା କରି ଭଡ଼ା ଦିଅନ୍ତି । ବିଜୁଳିର ମିଟର ଅଲଗା ଅଛି । ତାଙ୍କ ବଖରାଟି ମଝିଆମଝି, ପାଖଆଖରେ ଗୋଟିଏ ଲେଖା ବଖରା ଆହୁରି ଅଛି । ସେଗୁଡ଼ିକ ମଧ୍ୟ ଭଡ଼ା ଦିଆହୋଇଥିଲା । ସେ ଦୁଇ ବଖରାରେ ପରିବାର ରହନ୍ତି । ରଘୁବର ପ୍ରସାଦଙ୍କର ମା' ବାପା ଆଉ ଗୋଟିଏ ସାନଭାଇ ପଚାଶ କିଲୋମିଟର ଦୂର ଧରମପୁରାରେ ଥାଆନ୍ତି । ବସ୍‌ରେ ଗଲେ ଅନ୍ତତଃ ଦେଢ଼ଘଣ୍ଟାର ବାଟ । ରଘୁବର ପ୍ରସାଦ ସ୍ତ୍ରୀ ଓ ଘର ସଂସାରକୁ ମନରେ ରଖି ଜିନିଷପତ୍ର ଏକାଠି କରନ୍ତି । ଗୋଟିଏ ଖଟିଆ ଅଛି । ସେ ଖଟିଆଟି ତ ଚଉଡ଼ା ଅଛି, ତଥାପି ସେ ବୁଝିପାରନ୍ତି ନାହିଁ ଆଉ ଗୋଟିଏ ଖଟିଆ ଆଣି ରଖିବା ଉଚିତ

କି ନାହିଁ । ସ୍ୱାମୀ ସ୍ତ୍ରୀ ଗୋଟିଏ ମାତ୍ର ଖଟିଆରେ ରାତି ସାରା ଶୁଅନ୍ତି ଏ କଥାଟା ତାଙ୍କୁ ଏତେ ଅବଧାରିତ ସତ୍ୟ ବୋଲି ମନେ ହୁଏନା । ସାରା ରାତିର ଅବଧାରିତ ସତ୍ୟ ନ ହେଲେ ବି କିଛି ବେଳ ପାଇଁ ତ ସତ୍ୟ ନିଶ୍ଚୟ । ତଥାପି ଏହି ସତ୍ୟକୁ ଉହାଡ଼ କରିବା ଲାଗି ତାଙ୍କ ପାଖରେ ଆଉ ଅନ୍ୟ ବଖରା ବି ନାହିଁ । ଯଦି ଦୁଇଟି ଖଟିଆ ଥାଆନ୍ତା, ତେବେ ଏ ସତ୍ୟ ଦ୍ୱିତୀୟ ଖଟିଆର ଆଢୁଆଳରେ ରହନ୍ତା ।

ରଘୁବର ପ୍ରସାଦଙ୍କର ବଡ଼ ଭଉଣୀ ଏହି ସହରରେ ଥାଏ । ଭିଣୋଇ ଏକ ଟ୍ରାନ୍ସପୋର୍ଟ ଅଫିସ୍‌ରେ କିରାଣୀ । ବଡ଼ ଭଉଣୀ ତାଙ୍କୁ ଚିନି, ଚାହା ପତ୍ର, ଜିରା, ସୋରିଷ ଇତ୍ୟାଦି ରୋଷେଇଘରର ଜିନିଷ ରଖିବା ପାଇଁ ଟିଣ ଓ ପ୍ଲାଷ୍ଟିକ୍‌ର ପୁରୁଣା ଡିବା ହେରିକା ଦେଇଛନ୍ତି । ଅଟା ରଖିବାକୁ ଟିଣର ଗୋଟିଏ ସୁନ୍ଦର ନୂଆ ଡବା ଅଛି । ସେଇଠି ହସ୍‌ପିଟାଲର ପ୍ଲାଷ୍ଟରର ଖାଲି ଡିବା । କେଜାଣି ବଡ଼ ଭଉଣୀକୁ କେଉଁଠାରୁ ମିଳିଛି । ଭିଣୋଇଙ୍କ ଘରେ କାହାରି ହାତଗୋଡ଼ ଭାଙ୍ଗିନାହିଁ । ହୁଏତ ଭିଣୋଇଙ୍କର କୌଣସି କମ୍ପାଉଣ୍ଡର୍ ସାଙ୍ଗ ଦେଇଛି । ତେଲ ଗୋଟିଏ ବୋତଲରେ ଅଛି । ଚାଉଳ ଓ ଡାଲିର ଡିବା ବି ଅଛି । ଆଗ ସେ ଚାଉଳ ଡାଲି ଓ ଅଟାକୁ ମୁଣିରେ ରଖିବାକୁ ଭାବିଥିଲେ । ମୂଷା ସକାଶେ ନିଜର ସିଦ୍ଧାନ୍ତ ବଦଳାଇବାକୁ ହେଲା । ସେହି ବଖରା ସାମନାରେ ତାଙ୍କ ଅଂଶର ଯେଉଁ ଥାକ ଅଛି ତହିଁରେ ବ୍ୟାଟେରୀର ଖାଲି ଖୋଳ ଭିତରେ ତିନିଟି ଫୁଲକୁଣ୍ଡ ଥୁଆ ହୋଇଛି । ଗୋଟିଏରେ ତୁଳସୀ ଗଛ ଲାଗିଛି । ଦୁଇଟି ଫୁଲକୁଣ୍ଡରେ ଶୋଭା ଲାଗି ଗଛ ଲାଗିଛି । ବ୍ୟାଟେରୀର ଖୋଳ ମଧ୍ୟ ବଡ଼ ଭଉଣୀ ଦେଇଛି । ବଖରାର ଡାହାଣ କୋଣରେ ରୋଷେଇ ପାଇଁ ଜାଗା ତିଆରି ହୋଇଛି । ସେହିଆଡ଼େ ଅନ୍ୟ କୋଣରେ ଗୋଟିଏ କୁଣ୍ଡ ଓ ମାଠିଆ ଅଛି । ସେଇଠି କାନ୍ଥରେ ବାହାରରେ ନଳା ଲାଗି ଗୋଟିଏ ମୁହାଣ ହୋଇଛି, କାନ୍ଥରେ ଦୁଇଟି ଆଲମାରୀ ହୋଇଛି । ତହିଁରେ କବାଟ ନାହିଁ । କାଠର ପଟା ଦେଇ ଆଲମାରୀରେ ଥାକ ହୋଇଛି । କେଜାଣି କେଉଁକାଠର, ପଟାଗୁଡ଼ିକ ସବୁ ବଙ୍କା । ତହିଁରେ ଖବର କାଗଜ ବିଛାଇ ଦେଇ ସେ ବହିସବୁ ରଖିଛନ୍ତି । ଚଟାଣଟି କଳା ପଥରର ତିଆରି । ତାକୁ 'ଚଟାଣର ପଥର' କୁହାଯାଏ । ବେଲସୋଣ୍ଡା ବୋଲି ଗୋଟିଏ ଗାଁ ପାଖରେ ଅଛି ଯେ, ସେଠାରେ ଏହି ପଥରର ଖଣି ଅଛି । ଶଗଡ଼ ଓ ଟ୍ରକରେ ଲଦା ହୋଇ ସେହି ଖଣିରୁ ପଥର ବିଭିନ୍ନ ଜାଗାକୁ ଯାଏ । ପାଇଖାନା ଘରଠାରୁ କିଛି ଦୂରରେ ପଛଆଡ଼େ ତିଆରି ହୋଇଛି । ତିନିଟି ବଖରାର ପରିବାର ଲାଗି ତିନିଟି ପାଇଖାନା ଲାଇନ୍ କରି ତିଆରି ହୋଇଛି । ଚାହାଘର ପରେ ମାସିକ ଆଠଟଙ୍କା ଭଡ଼ାରେ ରଘୁବର ପ୍ରସାଦ ଗୋଟିଏ ପାଇଖାନାକୁ ତାଲା ଦେଇ ରଖିବା ଆରମ୍ଭ କରିଛନ୍ତି । ପାଇଖାନାର ତାଲା ଏକବାରକେ ନୂଆ । ପାଇଖାନାରେ ବିଜୁଳି ନାହିଁ । ରାତିରେ ଟର୍ଚ୍ଚ ବା ଡିବିରି ନେଇକରି ଯିବାକୁ ପଡ଼େ । ପାଇଖାନାର ଦରଜା ଚଟାଣଠାରୁ ଛଅ ସାତ ଇଞ୍ଚ ଉଚ୍ଚ ଅଛି । ବାହାରେ ଡିବିରି ରଖିଲେ ମଧ୍ୟ ଭିତରକୁ ଆଲୁଅ ଯାଇପାରେ ସେଇ କବାଟ ତଳ ଦେଇକରି । ତିରିଶି ଟଙ୍କାର ବଖରାଏ ଘରକୁ ପାଇଖାନା ଲାଗି ଆଠଟଙ୍କାର ଅନୁପାତଟା ଠିକ୍ ହେଲାନାହିଁ । ପାଇଖାନାର ଭଡ଼ା ଆହୁରି କମ୍ ହେବା ଉଚିତ । ଘର ସଂସାରରେ ପାଇଖାନାର ବନ୍ଦୋବସ୍ତରେ ତାଙ୍କୁ ଠକାଇ ଦିଆଯାଇଛି । କିନ୍ତୁ ଏତ ନିହାତି ଦରକାରୀ ଜିନିଷ ।

କିଛି ବାଟ ଚାଲିକରି ଗଲେ ବି ରଘୁବର ପ୍ରସାଦଙ୍କୁ ଟେମ୍ପୋ ମିଳିଲା ନାହିଁ । ଟେମ୍ପୋଯାକ ଭର୍ତ୍ତି ହୋଇ କରି ଆସୁଥିଲେ । ଭିତରକୁ ପଶିବାର ଜାଗା ନାହିଁ ବୋଲି ସେମାନେ ଅଟକାଇଲେ ବି ଅଟକୁ ନ ଥିଲା । ଟେମ୍ପୋର ଶବ୍ଦ ଶୁଣିଲେ ହିଁ ସେ ପଛଆଡ଼କୁ ବୁଲିପଡ଼ି ଚାହୁଁଥିଲେ । ଅଟକି ଯାଇ ସେ ଦେଖିଲେ, ଗୋଟିଏ ଟେମ୍ପୋ ଆସୁଛି । ଟେମ୍ପୋ ପଛରେ ହାତୀ ଆସୁଥିବାର ବି ଦେଖିପାରିଲେ । ବର୍ଷା ବୁନ୍ଦା ବୁନ୍ଦା ହୋଇ ଟୋପା ଝାଡୁଥିଲା । ସେ ଠିକ୍ କଲେ ଏ ଟେମ୍ପୋରେ ଯେବେ ଜାଗା ନ ମିଳେ ତେବେ ସେ ହାତୀ ଉପରେ ବସିଯିବେ । ଟେମ୍ପୋକୁ ସେ ଅଟକାଇଲେ । ଟେମ୍ପୋ ଅଟକିଲା ନାହିଁ । ତାଙ୍କୁ ଲାଗିଲା ସେ ଟେମ୍ପୋରେ ଜାଗା ଥିଲା, କିନ୍ତୁ ଟେମ୍ପୋବାଲା ତାଙ୍କୁ ଦେଖିପାରିଲା ନାହିଁ । ହାତୀ ଆସୁ ଆସୁ ଏଇଲେ ଡେରି ଅଛି । ସେହି ସମୟରେ ଚାରି ଚାରିଟା ଟେମ୍ପୋ ବାହାରି ଯାଇପାରନ୍ତି । କୌଣସି ନା କୌଣସିଟିରେ ଜାଗା ମିଳିଯିବ । ଟେମ୍ପୋ ଆସିଲା ନାହିଁ ଏବଂ ହାତୀ ପାହୁଲେ ପାହୁଲେ ପାଖକୁ ଆସିଗଲା ।

''ବାବୁ ଯିବେ କି ?'' ଯୁବକ ସାଧୁ ପଚାରିଲା । ଛତା ତଳୁ ସେ ''ହଁ'' କହିଲେ । ଉପର ପଟୁ ସାଧୁକୁ ଛତା ତଳେ ତାଙ୍କର ମୁଣ୍ଡ ଟୁଙ୍ଗାରିବା ଦେଖାଯାଇ ନଥିବ । କିନ୍ତୁ 'ହଁ' କହିବା ଶୁଣାଯାଇଥିବ । ସାଧୁ ହାତୀକୁ ପାଟିକରି କିଛି କହିବା ପରେ ସ୍ନେହରେ ଡାକରା ମାରି କିଛି କହିବାରୁ ହାତୀ ଆସ୍ତେ କରି ତଳେ ବସିପଡ଼ିଲା । ସାଧୁ କୌଣସି କୁହୁକ କି ମନ୍ତ୍ରବଳରେ ହାତୀକୁ ବସାଇଥିବ । ସେତେବେଳେ ରଘୁବର ପ୍ରସାଦ ମଧ୍ୟ ମନ୍ତ୍ରମୁଗ୍ଧ ହୋଇ ତାଙ୍କ ନିଜର ଉଠିବାର ରାସ୍ତାକୁ ସେଇଠି ଠିଆ ହୋଇ କରି ଦେଖିବାକୁ ଲାଗିଲେ । ତାଙ୍କୁ ବୋଧହୁଏ ଲାଗିଲା ଯେ ସେ ଠିଆ ଠିଆ ନିଜକୁ ହାତୀ ପିଠିରେ ବସିଥିବାର ଦେଖିନେବେ । ତଳକୁ ହାତ ବଢ଼ାଇ ସାଧୁ ରଘୁବର ପ୍ରସାଦଙ୍କୁ ଉପରକୁ ଚଢ଼ିବାକୁ କହିଲା । ଛତା ସେ ବନ୍ଦ କରିସାରିଥିଲା । ଦଉଡ଼ିକୁ ଧରି କୌଣସି ପ୍ରକାରେ ସେ ଉପରକୁ ଚଢ଼ିଗଲେ । ହାତୀର ଦେହ ବଡ଼ ଖଦଖଦଡ଼ିଆ । ''ହୁସିଆର ହୋଇ ବସ'' ବୋଲି କହି ସେ ହାତୀକୁ କିଛି କହିଦେଲା ଯେ ହାତୀ ଠିଆ ହୋଇଗଲା । ହାତୀ ଯେ ଏତେ ଉଞ୍ଚ ହେବ, ତାଙ୍କର ଧାରଣା ନଥିଲା । ବର୍ଷାର ଟୋପା ପଡୁଥିଲା । ଛତା ବନ୍ଦ ହୋଇ ହାତରେ ଅଛି । ଯେଉଁ ହାତରେ ଛତା ଧରିଛନ୍ତି, ସେହି ହାତ ଦେଇ କୌଣସିମତେ ଦଉଡ଼ିଟାକୁ ଧରିଛନ୍ତି । କିଛି ଡର, କିଛିଟା ହୁସିଆର୍ ହୋଇ ବସିବା ସକାଶେ ସେ ନଇଁ କରି ବସିଥିଲେ ।

''ଘାବରେଇ ଯିବେନାହିଁ । ପଡ଼ିବେନି । ହାତୀ ଆପଣଙ୍କୁ ପଡ଼ିବାକୁ ଦେବନାହିଁ, ସେ ଭାରି ବୁଦ୍ଧିଆ ।''

ହାତୀର ପଞ୍ଜରା ହାଡ଼ ତାଙ୍କ ଦିହରେ ବାଜୁଥିଲା । ସେଇଟା ପଞ୍ଜରା ହାଡ଼, ନା ଦଉଡ଼ି ସେକଥା ଠିକ୍ କରି ଜାଣିବାକୁ ହେଲେ କିଛିଟା ଘୁଞ୍ଚି ବସିବାକୁ ହେବ । ଆରମ୍ଭରେ ସେ ବହୁତ ନଇଁକରି ବସିଥିଲେ, କିଛି ବେଳ ପରେ ସିଧାସଳଖ ହୋଇ ବସିଗଲେ । ହାତୀ ଉପରେ ବସିବାର ବାଲାନ୍ସଟି ତାଙ୍କୁ ମିଳିଯାଇଛି । ସେ ଜୋତା ପିନ୍ଧି କରି ହାତୀ ଉପରେ ଚଢ଼ିଥିଲେ । ଜୋତାମାଡ଼ି ହାତୀ ଉପରେ ଚଢ଼ିବା ଉଚିତ କି ନାହିଁ ତାଙ୍କୁ ଜଣାନାହିଁ । ସାଧୁ ବି ତ ତାଙ୍କୁ କିଛି ରୋକି ନାହିଁ ।

''ଘରଟା କେଉଁଠି ?'' ଅଟୋବାଲା ଜାଗାରେ ଆସି ସାଧୁ ପଚାରିଲା ।

''ଏଇଠି ।'' ସେ କହିଲେ ।

ଘର ତାଙ୍କୁ ଦିଶୁଥିଲା । ତାଙ୍କୁ ଲାଗିଲା ଘର ଆଗରେ କିଛି ଚଳପ୍ରଚଳ ଦିଶୁଛି । ମାଇପେ ଦିଶୁଥିଲେ । ପାଖ ପଡ଼ିଶାରୁ ଯିବାଆସିବା କରୁଛନ୍ତି । ଛୋଟ ଛୋଟ ପିଲାମାନେ ଖେଳୁଥିଲେ । ଢୋଲକ ଓ କୁବୁଜି ସାଙ୍ଗରେ ବରଣଗୀତ ଶୁଣାଯାଉଛି । ବୋଧହୁଏ ତାଙ୍କରି ଘରୁ । ତାଙ୍କର ଛାତି ଧଡ଼ ଧଡ଼ ହେଲା । ଯେତେଟା ଛାତି ଧଡ଼କୁଥିଲା ହାତୀ ଉପରେ – ତଳେ ହେବା ହେତୁରୁ ତାହା ନୁହେଁ ।

କିଛି ବେଳ ଆଗରୁ ବର୍ଷା ଛାଡ଼ିଯାଇଛି ଓ ଅଳ୍ପ ଖରା ପଡ଼ିଛି । ସେ ହାତୀ ଉପରେ ବସିକରି ଦେଖିପାରୁଥିଲେ ଯେ ତାଙ୍କ ବଖରାରୁ ଜଣେ ମାଇପି ଲୋକ ଖଟିଆ କାଢ଼ିକରି ସାମନାର ଗଛମୂଳରେ ଥୋଇଦେଲା । ଆଉ ଜଣେ ମାଇପି ତହିଁରେ ଦରି ଆଣି ପକାଇଦେଲା । ବୋଧହୁଏ ବାପା ହୋଇଥିବେ । ପାଖ ପଡ଼ିଶାର ବଖରାରୁ ବାହାରକରି ଖଟିଆ ଉପରେ ବସିଗଲେ ଓ ପରେ ଶୋଇଗଲେ । ଉଠିବସି ସେ ଖଟିଆକୁ ଗଛମୂଳରୁ ଘୁଞ୍ଚାଇଲେ, ତା'ପରେ ପୁଣି ଶୋଇଗଲେ । ପବନ ହେଲେ ପତ୍ରମାନଙ୍କରୁ ପାଣି ପଡୁଥିବ ।

ପିଲାମାନଙ୍କୁ ଦୂରରୁ ହାତୀ ଦିଶିଗଲା । ସେମାନେ ପାଟି କରିବାକୁ ଲାଗିଲେ । ବାପା ଉଠି ବସିଗଲେ । ତାଙ୍କୁ କ'ଣ ବୋଧ ହେଉଥିଲା ଯେ ହାତୀ ଉପରେ ତାଙ୍କରି ରଘୁବର ପ୍ରସାଦ ବସିଛି । ଆଗରେ ମାଇପେ ଓ ପିଲାମାନେ ଜମା ହେଉଥିଲେ ।

''ସେଇଠି ମୋ ଘର'', ତାଙ୍କ ମୁହଁରୁ ବାହାରିଗଲା ।

''କିଛି ଉତ୍ସବ ହେଉଛି କି ?''

''ନାଁ, ଗାଁରୁ ବାପା ଆସିଛନ୍ତି ।'' ତାଙ୍କୁ ଘର ଦେଖାଇବା ଉଚିତ୍ ହୋଇନି । ଆଗରୁ ଓହ୍ଲାଇପଡ଼ିଲେ ଭଲ ହୋଇଥାନ୍ତା । ଏଠି ତ ଗୋଟାଏ ତାମସା ଲାଗିଯିବ । ତାଙ୍କୁ ଲାଜ ମାଡୁଥାଏ, ପୁଣି ହାତୀରୁ ଓହ୍ଲାଇବା ବି ତାଙ୍କ ଦେଇ ହେବନାହିଁ । ଓହ୍ଲାଉ ଓହ୍ଲାଉ ପଡ଼ିଯିବେ ଯଦି ?''

ହାତୀ ଯାଇ ଠିକ୍ ବାପାଙ୍କ ଖଟିଆ ପାଖରେ ଠିଆ ହୋଇଗଲା । ବାପା ସେ ଯାକେ ବି ଚିହ୍ନି ପାରି ନାହାନ୍ତି । ବାପା ଖଟିଆରୁ ଉଠି ହାତୀଠାରୁ କିଛି ଦୂରକୁ ଯାଇ ଠିଆ ହୋଇପଡ଼ିଛନ୍ତି । ଖଟିଆକୁ ବି ସେ ଘୁଞ୍ଚାଇ ନେଇଛନ୍ତି । ସେତିକିବେଳେ ଯାଇ ସେ ଚିହ୍ନିଲେ ଯେ ହାତୀ ଉପରେ ତାଙ୍କର ପୁଅ ଅଛି । ପଡ଼ିଶାର ମାଇପେ ଓ ଛୁଆଯାକ ବି ଚିହ୍ନିପାରିଲେ । ଜଣେ ମାଇପି ପାଟି କରି କହିଲା, ''ଆରେ ! ରଘୁବର ପ୍ରସାଦ ହାତୀ ଚଢ଼ିକରି ଆସିଛି ।'' ପିଲାଯାକ ହୋ ହୋ କରି ପାଟିକଲେ । ଭିତରେ ସ୍ତ୍ରୀ ଥିଲେ ସେ ବି ଶୁଣି ପାରିଥିବ । ହୁଏତ ସେ ମାଇପିଟି ସ୍ତ୍ରୀକୁ ଶୁଣାଇବାକୁ ହିଁ ଏପରି ପାଟି କରିଥିବ । ସ୍ତ୍ରୀ ଶୁଣିବା ମାତ୍ରେ ତାର ଛାତି ଧକ୍ ଧକ୍ କରିଥିବ । କ୍ଷଣକ ଲାଗି ହେଲେ ତା'ର ମନଟା ରଘୁବର ପ୍ରସାଦଙ୍କୁ ହାତୀରେ ଆସିବାର ଦେଖି ନେବାକୁ ଚଞ୍ଚଳ ହୋଇଥିବ । ହାତୀରେ ଚଢ଼ି ଆସିବାଟା ବେଶ୍ ଖୁସିର କଥା ତ ନିଶ୍ଚୟ ହୋଇଥିବ । ଅଳ୍ପେ ବହୁତେ ଗୌରବମୟ ବି ହୋଇପାରେ । ସାଧୁ ରଘୁବର ପ୍ରସାଦଙ୍କର ଓହ୍ଲାଇବା ଲାଗି ହାତୀକୁ ତଳେ ବସାଇଲା । ରଘୁବର ପ୍ରସାଦ ହାତୀରୁ ହୁସିଆର ହୋଇ ଓହ୍ଲାଇଲେ । ସେ ଟଙ୍କାଟାକର ମୁଦ୍ରା ବାହାର କଲା । ସେତେବେଳକୁ ହାତୀ ଠିଆ

ହୋଇ ଯାଇଛି । ମୁଦ୍ରାଟି ଦେଖି ମୁରୁକି ହସି କହିଲା, ''ହାତୀକୁ ଦେଇ ଦିଅନ୍ତୁ ।'' ହାତୀକୁ ସେହି ଟଙ୍କାଟି କିପରି ଦେବେ ସେକଥା ସେ ହାତକୁ ଖୋଲିକରି ଭାବୁଛନ୍ତି ଏତିକିବେଳେ ହାତୀ ତାଙ୍କ ହାତରୁ ସେ ଟଙ୍କାକୁ ଶୁଣ୍ଢରେ ଧରି ସାଧୁକୁ ଦେଇଦେଲା ।

''ଆଚ୍ଛା କାଲି ଭେଟ ହେବ ।'' ସାଙ୍ଗ ପରି ସ୍ୱରରେ ହାତୀରେ ଆରୋହୀ କହିଲେ ।

''ଆଚ୍ଛା ।'' ଧୀର ଭାବେ ରଘୁବର ପ୍ରସାଦ କହିଲେ ।

ହାତୀ ଚାଲିଯିବା ପରେ ଗୋଟିଏ ବଡ଼ ଜାଗା ବାହାରି ପଡ଼ିଥିଲା । ଏ କଥାଟା ଏହିଭଳି ହେଲା ଯେ ହାତୀ ଆଗେଇ ଆଗେଇ ଚାଲୁଥାଏ ତ ହାତୀର ଖାଲି ଜାଗା ଛାଡ଼ି ଛାଡ଼ି ଯାଉଥାଏ । ଚାଲି ଯାଉଥିବା ହାତୀକୁ ଥରେ ଆଙ୍ଗୁଠିରେ ଛୁଇଁ ଦେବାକୁ ରଘୁବର ପ୍ରସାଦଙ୍କର ମନ ହୋଇଥିଲା । ହାତୀ ଅପସରି ଗଲା ପରେ ଦରଜା ପାଖରେ ଠିଆ ହୋଇଥିବା ମାଇପିମାନଙ୍କ ଗହଣରେ ସ୍ତ୍ରୀର ମୁହଁ ଝଲକାଏ ଦେଖିବାକୁ ଖୋଜିଲେ ଓ ବାପାଙ୍କର ପାଦ ଛୁଇଁଲେ । ସ୍ତ୍ରୀ ତାଙ୍କୁ ଦିଶିଲା ନାହିଁ । ପଡ଼ିଶା ଘରର ମାଇପିମାନେ ସେହି ବଖରାରେ ଥିବାରୁ ବିଶ୍ୱାସ ହେଲା ଯେ ସେହି ଘରେ ସେ ନିଶ୍ଚୟ ଥିବ । ହୁଏତ ମା' ଅଛି, ସ୍ତ୍ରୀ ଆସିନାହିଁ । ମା ସଙ୍ଗେ ଦେଖା କରିବାକୁ ମାଇପି ଲୋକେ ଆସିଥିବେ । କିନ୍ତୁ ବନ୍ଦାଣ ଗୀତ କାହିଁକି ହେବ । ସ୍ତ୍ରୀ କ'ଣ ଆସି ନ ଥିବ । ତାଙ୍କର ମନ ସ୍ଥିର ନୁହେଁ । ସେ ହାତୀରୁ ଓହ୍ଲାଇ ଯାଇଥିଲେ । କିନ୍ତୁ ମନଟା ଅଚାନକ ଘୋଡ଼ାଦୌଡ଼ କରି ଯାଉଥାଏ ଯେ ସ୍ତ୍ରୀ ଆସିବା କି ନଆସିବା ଆଡ଼କୁ ଦଉଡ଼ି ଯାଉଥାଏ । କୋଉଠି ହେଲେ ଅଟକୁ ନଥାଏ । ଆସିବା ଉପରେ ଅଟକୁ ନଥାଏ କି ନ ଆସିବା ଉପରେ ଅଟକୁ ନ ଥାଏ ।

ବାପା ରଘୁବର ପ୍ରସାଦଙ୍କୁ ଅନ୍ତର ଦେଇ ଆଶୀର୍ବାଦ କଲେ ।

''ହାତୀବାଲାକୁ ଚାହା ପିଆଇ ଦେଲନି କାହିଁକି ?''

''ମନେ ପଡ଼ିଲା ନାହିଁ ।''

''କାଲି ପିଆଇ ଦେବ ।'' ବାପା ଭାବିଥିବେ ଯେ କଲେଜକୁ ଯିବା ଆସିବା ସେ ହାତୀରେ ବସି କରୁଥିବ ।

''କେତେ ସମୟ ହେଲାଣି ଆସିବାର ?'' ରଘୁବର ପ୍ରସାଦ ପଚାରିଲା ।

''ଘଣ୍ଟେ ଦି ଘଣ୍ଟା ହୋଇଥିବ । ପଡ଼ିଶାରେ ଜାଣିବାରୁ ଢ଼ୋଲକ ନେଇ ବନ୍ଦାଣ ଗାଇଲେ । ବୋହୂ ଭିତରେ ଅଛି । ବୋହୂକୁ ପହଞ୍ଚାଇବାକୁ ଆସିଥିଲି । ତମକୁ ତ ଛୁଟି ମିଳୁନାହିଁ । ତୁମ ମା ମୋତେ ଲଗାଇଥିଲା । ବୋହୂକୁ ପହଞ୍ଚାଇ ଆସ, ବୋହୂର ମନ ଲାଗୁନାହିଁ । ଉଦାସିଆ ରହୁଛି ।

''ତା' ମା ବାପାଙ୍କ କଥା ମନେ ପଡୁଥିବ ।'' ଆସ୍ତେ କରି, ସଙ୍କୁଚିତ ହୋଇ ସେ କହିଲେ । ଏକଥା ବାପା ଶୁଣିଲେ ନାହିଁ ।

''ଘରକୁ ଟିକେ ବେଶୀ କରି ଟଙ୍କା ପଠାଇବ । ଛୋଟୁର ବେମାରୀରେ ଏଥର ଟଙ୍କା ଖର୍ଚ୍ଚ ହୋଇଗଲା । କୋଡ଼ିଏ ଦିନ ଜରରେ ପଡ଼ିଥିଲା । ଘରକୁ ଆସି ବୋହୂ ବହୁତ ସେବା କଲା । ସେତେବେଳକୁ ତ ସେ ଭଲ ହୋଇଯାଇଥିଲା । ବର୍ତ୍ତମାନ ପୂରା ଠିକ୍ ହୋଇଗଲାଣି । ତମକୁ ଚିଠିରେ ଲେଖିଥିଲି ତ ।''

"ଚିଠି ମିଳିନାହିଁ ।" ଆଶ୍ଚର୍ଯ୍ୟ ହୋଇ ରଘୁବର ପ୍ରସାଦ କହିଲେ । ସ୍ତ୍ରୀ ବି ଲେଖିଥିବ ଆଉ ତାଙ୍କୁ ମିଳି ନ ଥିବ ଅବା । ସ୍ତ୍ରୀ କାହିଁକି ଲେଖିବ, ଯେଉଁଠି ସେ ବି ଲେଖି ପାରିନାହାନ୍ତି ।

"କେତେ ଦିନ ତଳେ ଲେଖିଥିଲ ।"

"କିଛିଦିନ ହେବ !"

"କଲେଜ ଠିକଣାରେ ତ ପଠାଇ ନାହାନ୍ତି ?"

"ଘର ଠିକଣାରେ ପଠାଇଥିଲି ।"

"ପୋଷ୍ଟମ୍ୟାନ୍‌କୁ ପଚାରିବି । ପଚାରୁଥିଲେ ସେ ଚିଠି ଦେବାକୁ ଭୁଲିବ ନାହିଁ ।"

"ଆଚ୍ଛା ମୁହଁ ହାତ ଧୋଇଆ । ଚାହା ପି' । ଥକି ଯିବୁଣି ।" ବାପା କହିଲେ ।

"ମା' ଆସିନାହିଁ ?"

"କେମିତି ଆସିବ ? ସେଠି କିଏ ଦେଖିବ ସବୁ ?"

"ଆପଣ ଚାହା ପିଇଛନ୍ତି ?"

"ହଁ ପିଇଛି । ଦେଖୁନୁ ଖଟିଆ ତଳେ କପ୍ ଥୁଆ ହୋଇଛି । କପ୍ ନେଇଯିବୁ । ଏଇଆକୁ ଧୋଇ ଏଥିରେ ପିଇବୁ । ବେକାର କପ୍ ପ୍ଲେଟ ବାହାର କରିବୁ ନାହିଁ । ଭାଙ୍ଗି ଯାଏ ତ ।"

"ହଉ !" ବେଶୀ କପ୍ ପ୍ଲେଟ ତ ନାହିଁ । ଏଇ ଗୋଟିକ କପ୍ ପ୍ଲେଟ ମାତ୍ର ଅଛି । ତାକୁ ହିଁ ରଘୁବର ପ୍ରସାଦ ଉଠାଇଥିଲେ । କପ୍ ଉଠାଇଲା ବେଳେ ରଘୁବର ପ୍ରସାଦ ଘର ଆଡ଼କୁ ଚାହିଁଥିଲେ । ବଖରା ଭିତରେ ଏରୁଣ୍ଡି ପାଖରେ ସେ କପ୍ ଥୋଇଦେଲେ । ଷ୍ଟୋଭ୍ ଜଳିବାର ବାସ୍ନା ଲାଗୁଛି । ସେ କପ୍ ଥୋଇବା ମାତ୍ରେ ଝିଅଟିଏ କପ୍‌ଟି ଉଠାଇନେଲା ଓ ତାକୁ ଧୋଇବା ପାଇଁ ଯେଉଁ କୋଣରେ ପାଣିକୁଣ୍ଡ ଅଛି ସେଠାକୁ ଚାଲିଗଲା । ରଘୁବର ପ୍ରସାଦ ଜୋତା ଖୋଲିବାକୁ ପାହାଚ ପାଖରେ ଏପରି ଭାବରେ ବସିପଡ଼ିଲେ ଯେ ଜାଗାଟି ଭିତର ପଟରୁ ଦେଖାଯାଉଥିବ ଯେମିତି । ଷ୍ଟୋଭ୍ ସ୍ତ୍ରୀ ଆଗରେ ରଖାଥିବ । କୋଣର କୌଣସି ସ୍ତ୍ରୀ ଲୋକ ଷ୍ଟୋଭ୍‌କୁ ନେଇ କହିଥିବ "ଏଇଲା ରଘୁବର ପ୍ରସାଦଙ୍କ ପାଇଁ ଚାହା କର ।" ଝିଅଟିଏ ଚାହା ଲାଗି କୁଣ୍ଡରୁ ପାଣି ଆଣି ଦେଇଥିବ । କେହି ଚା'ଛଣା ଦେଇଥିବ । କେହି ଚିନି, ଚାହା ପତ୍ର ସ୍ତ୍ରୀ ଆଗକୁ ବଢ଼ାଇଦେଇଥିବ । ରଘୁବର ପ୍ରସାଦ ଜୋତା ଖୋଲିକରି ବାପାଙ୍କ ପାଖରେ ବସିପଡ଼ିଲେ ।

"ମା' ଭଲ ଅଛି ?"

"ଭଲ ଅଛି ଯେ କିନ୍ତୁ ଖାଇବା ବେଳେ ଥରଟିଏ ନିଶ୍ଚୟ ଅଟକିଯାଏ । କାଶି କାଶି ବେଦମ୍ ହୋଇଯାଏ ।"

"ଡାକ୍ତରଙ୍କୁ କହିଥିଲେ ?"

"ହୋମ୍ୟୋପାଥିବାଲାକୁ ଦେଖାଇଯାଏ । ହୋମ୍ୟୋପାଥିର ଔଷଧ ବି ମହଙ୍ଗା ହୋଇଗଲାଣି । ଗୋଟିଏ ଛୋଟିଆ ଶିଶିକୁ ପାଞ୍ଚ ଟଙ୍କା । ସପ୍ତାହ କାଳ ଔଷଧ ଚାଲିଥାଏ ।"

ଗୋଟିଏ ଛୋଟିଆ ଝିଅ ବହୁତ ଥିରି ଥିରି ପାଦ ଚଳାଇ କାଳେ ଚାହା ଉଚ୍ଛୁଳିପଡ଼ିବ ଏହି ଭୟରେ, ସତେ ଯେମିତି କୋଉ ଦଉଡ଼ି ଉପରେ ଚାଲିଆସୁଛି ଏହିପରି, ରଘୁବର ପ୍ରସାଦଙ୍କୁ

ଦେଖାଗଲା । ତାଙ୍କରି ଲାଗି ଚାହା ଆଣୁଥିବ । ସେ ଚାଲିଯାଇ ଝିଅ ହାତରୁ କପ୍ ନେଇଗଲେ । ଯାହା ଲାଗି ନେଇ ଯାଉଥିଲା, ଦେବା ଆଗରୁ ସେହି ଛଡ଼ାଇ ନେଇଗଲେ ଏହି ଭାବନେଇ ଝିଅଟି ରଘୁବର ପ୍ରସାଦଙ୍କୁ ଚାହିଁଲା ଓ ଦୁଃଖିତ ଭାବେ ଫେରିଗଲା ।

"ଆଉ ଚାହା ପିଇବେ ?"

"ନା ।"

"ଯେତେବେଳେ ଆସିଥିବେ ଘରେ ତାଲା ପଡ଼ିଥିବ ।" ରଘୁବର ପ୍ରସାଦଙ୍କର ଚାହା ପିଉ ପିଉ ମନେ ପଡ଼ିଗଲା ଯେ ତାଲା ବନ୍ଦ ଥିଲା । ତାଲା କିପରି ଖୋଲା ହୋଇଥିବ ।

"ତୁ ଗୋଟିଏ ଚାବି ଦେଇଯାଇଥିଲୁ ନା ?"

"ଭଲ ହେଲା ସେଇ ତାଲା ଲଗାଇଥିଲି । ଆର ତାଲାଟା ଦେଇଥିଲେ ହଇରାଣ ହୋଇଥାନ୍ତେ ।"

"କ'ଣ ହଇରାଣ ହୋଇଥାନ୍ତୁ ? ପଡ଼ିଶା ଘର ଭଲ । ତୁ ଆସିବା ଯାକେ ସେଇଠି ରହିଥାନ୍ତୁ । ତୋ ପାଖରେ ତ ଗୋଟିଏ ତାଲା ଥିଲା ?

"ଆଉ ଗୋଟିଏ ନୂଆ ତାଲା ଦେଇଥିଲି ।"

"କ'ଣ ପାଇଁ ?"

"ପାଇଖାନା ପାଇଁ ।"

"ପାଇଖାନା ପାଇଁ କାହିଁକି ? ସେଠି କ'ଣଟା ଚୋରି ହେବାକୁ ଡର ଥିବ ?

"ଚୋରି ପାଇଁ ନୁହେଁ । ପାଇଖାନାରେ ଭିଡ଼ ହୋଇଥାଏ । ଠିକ୍‌ବେଳେ ଖାଲି ମିଳେନା ।"

"ଆରେ ଏତେ ବଡ଼ ପଡ଼ିଆ ତ ଅଛି । ବିଲ ଅଛି ।"

"ହଁ ।"

ପାଇଖାନାର ତାଲା ତୁ ଖୋଲି ରଖିଦେବୁ । ଗୋଟିଏ ତାଲା ମୁଁ ନେଇଯିବି । ପିଡ଼ିଆ ଘରେ ଲଗାଇବି । ପିଡ଼ିଆ ଚୋରି ହୋଇଯାଉଛି । ବହୁତ କଷ୍ଟରେ ଗୋଟିଏ ଗାଈର ଖୋରାକ ଜୁଟୁଛି ।

"ପାଇଖାନା ଭଡ଼ାରେ ନେଇଛି ।"

"ପାଇଖାନା ଭଡ଼ାରେ ନେଇଛୁ ? ପାଇଖାନା ତ ଏଇମିତି ଥିଲା, କେହି ମନା ତ କରୁ ନଥିଲା । କାଲି ଗୋଟାଏ ଗାଧୁଆ ଘର ଭଡ଼ାରେ ନେବୁ, ଗୋଟିଏ ରୋଷେଇଘର ଭଡ଼ାରେ ନେବୁ, ସବୁ ଚଳେଇ ନେବାକୁ ହୁଏ । ତୋର ଦରମା ତ ସବୁ ଭଡ଼ାରେ ଚାଲିଯିବ, ଘରକୁ କ'ଣ ପଠାଇବୁ ?" ରଘୁବର ପ୍ରସାଦ ଭାବିଲେ ବାପା ପଚାରିବେ ପାଇଖାନାର ଭଡ଼ା କେତେ ବୋଲି, ସେଥିପାଇଁ ଶୀଘ୍ର କହିଦେଲେ :

"ବସ୍‌ରେ କିଛି ଅସୁବିଧା ହୋଇନାହିଁ ତ ?"

"ନା ।"

ରଘୁବର ପ୍ରସାଦଙ୍କୁ ବାପା ବଡ଼ ଦୁର୍ବଳ ଦିଶୁଥିଲେ । ଯଦି ବାପାଙ୍କର ଦିହ ପା' କଥା ପଚାରିଦେବେ ତେବେ ବାପା ତାଙ୍କର ସବୁତକ ରୋଗ ବଇରାଗ ବଖାଣି ବସିବେ । ସେସବୁ ଶୁଣିଲେ ରଘୁବର ପ୍ରସାଦଙ୍କୁ ବହୁତ ଦୁଶ୍ଚିନ୍ତା ହେବ । ତାଙ୍କର ଦରମା ଭଲ ହୋଇଥିଲେ ସେ ଦେଖାଇ ଦେଇଥାନ୍ତେ

ଜଣେ ପୁଅ ତା' ବାପାଙ୍କ ପାଇଁ କ'ଣ କରିପାରେ । ବାପାଙ୍କର ଛୋଟ ଛୋଟ ଆଶା ଆଗରେ ସେ ଅସହାୟ ହୋଇଯାନ୍ତି ଯେ ତାଙ୍କୁ ସୁପୁତ୍ର ବୋଲି ଧରାଯାଉନାହିଁ । ନିଜର ଅସହାୟତାରେ ଏଯାବତ୍ ବାପା ସାହାଯ୍ୟ କରିଛନ୍ତି । ବାପାଙ୍କର ଅସହାୟତା ବେଳକୁ ସେ କିପରି ଭାବରେ ତାଙ୍କର ସହାୟକ ହୋଇପାରିବେ । ଏଇ କଥାନା ଯେ ଯେବେ ବାପାଙ୍କର ଦୁଇ ଶହ ଟଙ୍କା ଦରକାର ହେବ ସେ ପୁଅକୁ ସାହାଯ୍ୟ କରିବାକୁ ଯାଇ ଯେମିତି ହେଲେ ତାକୁ ଦେଢ଼ଶହ ଟଙ୍କାଯାକେ ସୀମିତ କରି ଆଣୁଥିବେ । କଲେଜ ପାଖରେ ଘର ମିଳୁଥିଲେ ଗୋଟିଏ ବଡ଼ ଘର ନିଅନ୍ତେ । ଯିବା ଆସିବାର ଖର୍ଚ୍ଚ ରହିଯିବ ।

ଏତେ ବେଳକୁ ମାଇପେ ଚାଲିଗଲେଣି ।

''ସବୁ ମାଇପେ ଚାଲିଗଲେ ?''

''ହଁ !''

''ମୁଁ କହିବାକୁ ଭୁଲିଗଲି । ଗୁଡ଼ିଆ ଦୋକାନରୁ କିଛି ବାତାସା କିଣିଆଣି ବାଣ୍ଟି ଦେଇଥାନ୍ତୁ । କାଲି ପଠେଇ ଦେବି ।''

''କେମିତି ପଠାଇଦେବୁ ? ଛାଡ଼ ସେକଥା । ଏହି ସମୟରେ ବଡ଼ ବଡ଼ ବାତାସା ମଗାଇନେବୁ । ଦୁଇ ଦୁଇଟି କରି ବାତାସା ବଣ୍ଟାଇ ଦେବୁ । ପର୍ବ ପର୍ବାଣୀ ବେଳେ ଏ ପଡ଼ାକୁ ଭଣ୍ଡାରୁଣୀ ଆସୁଥିବ । ଦରକାର ହେଲେ ଠିକଣା ପଚାରି ବାତାସା ପଠାଇଦେବୁ ।''

''ହଉ !''

''ଏଇଲେ ଥାଉ । ପରେ କଥାଟା ମନେ ରଖିବୁ ।''

''ହଉ ।''

''ଭିତରେ ବସିବେ ନାହିଁ ?'' ସେ ବାପାଙ୍କୁ ପଚାରିଲେ । ତାଙ୍କର ବି ଭିତରକୁ ଯିବାକୁ ମନ ହେଉଥାଏ ।

''ଏଠି ପବନରେ ଭଲ ଲାଗୁଛି । ଦୀପ ଜାଳିବାର ବେଳ ହୋଇଗଲାଣି । ବୋହୂକୁ କହିଦେ ଆଲୁଅ ଜଳାଇବାକୁ । ସଞ୍ଜ ପହରରେ ଅନ୍ଧାର ହେବା ଠିକ୍ ନୁହେଁ ।''

''ଆଛା ହଉ ।''

ରଘୁବର ପ୍ରସାଦ ଭିତରକୁ ଗଲେ । ତାଙ୍କ ସ୍ତ୍ରୀ ଗୋଟିଏ କୋଣରେ ବସିଛି । ଗୁଡ଼ିଆ ବି ସେଠି ବସିଛି । ରଘୁବର ପ୍ରସାଦଙ୍କ ସ୍ତ୍ରୀ ତାକୁ ପାଖରେ ରଖିବ ବୋଲି ଅଟକାଇ ଦେଇଛି । ଗୁଡ଼ିଆକୁ ଦେଖି ରଘୁବର ପ୍ରସାଦଙ୍କର ମନ ହେଲା ତାକୁ କହିବେ ଗ'ରେ ହ୍ରସ୍ୱ ଉ ଫଳା ଗୁ, କିନ୍ତୁ କହିଲେ ନାହିଁ, ବାପା କ'ଣ ଭାବିବେ ବୋଲି । ରଘୁବର ପ୍ରସାଦ ଆସିବା ମାତ୍ରକେ ତାଙ୍କ ସ୍ତ୍ରୀ ଗୁଡ଼ିଆର କାନରେ ଫୁସ୍‌ଫୁସ୍ କରି ଯିବାକୁ କହିଥିବ, ସେ ଦଉଡ଼ି କରି ବାହାରିଗଲା । ଦିନର ଯିବାବେଳ ହେଲାରୁ ବାହାର ତୁଳନାରେ ଘର ଭିତରେ ଟିକେ ବେଶୀ ଅନ୍ଧାର ହୋଇଯାଇଛି । ରଘୁବର ପ୍ରସାଦ ବିଚାରିଲେ ଏଇଲେ ଆଲୁଅ ନ ଜଳାଇଲେ ଭଲ । ମିନିଟିଏ ଯାଉ ତା'ପରେ ଜଳାଇବି । ସେ ସ୍ତ୍ରୀ ଆଡ଼କୁ ଆଗେଇଲେ । ବାପା ଦେଖାଯାଉ ନାହାନ୍ତି । ପଡ଼ିଶାଘରର ପିଲାଏ ପଦାରେ ଖେଳୁଛନ୍ତି ।

ସ୍ତ୍ରୀ ପାଖକୁ ଯାଇ ସେ ଆସ୍ତେ କରି କହିଲେ, ''ଚାହା ପିଇଛ ?'' ସ୍ତ୍ରୀ କିଛି କହିଲା ନାହିଁ । ସେ ପୁଣି ପଚାରିଲେ, ''ଚାହା ପିଁଇଛ କି ?'' ସେତିକିବେଳେ ବାପାଙ୍କର କାନ୍ଦିବାର ଶବ୍ଦ ଶୁଣାଗଲା । ସେ ସାଙ୍ଗେ ସାଙ୍ଗେ ସୁଇଚ୍ ଦବାଇ ବତୀ ଜଳାଇଦେଲେ । ସ୍ତ୍ରୀର ନାଇଲନ୍‌ର ଗୋଲାପୀ ଶାଢ଼ିର ପ୍ଲାଷ୍ଟିକ୍ ଜରିର ଚକଚକିଆ କାମଯାକ ବିଜୁଳି ଆଲୁଅରେ 'ଫକ୍' କରି ଜାଣ ଚେଇଁ ଉଠିଥିଲା । ଆଲୁଅ ହେବା କ୍ଷଣି ସ୍ତ୍ରୀର ଚୁଡ଼ିର ଶବ୍ଦ ଶୁଣାଯାଇଛି । ସେ କାନ୍ଥ ପଟକୁ ଆସ୍ତେ କରି ବୁଲିବସିଛି । ଲାଖ ଆଉ  କାଚର ଢେର ଗୁଡ଼ାଏ ଚୁଡ଼ି ପିନ୍ଧିଛି । ଅଳତା ଲଗା ଗୋଡ଼କୁ ଆଲୁଅ ହେବା ମାତ୍ରେ ଶାଢ଼ିରେ ଲୁଚାଇ ରଖିଥିଲା । ସେଇଠୁ ସ୍ତ୍ରୀ ତାଙ୍କ ଆଡ଼କୁ ଚାହିଁଲା ଏଇଥିପାଇଁ ଯେ ସେ ବି କ'ଣ ତା' ଆଡ଼କୁ ଚାହିଁଛନ୍ତି । ସ୍ତ୍ରୀ ଚାହିଁଛି ଦେଖି ସେ ମୁରୁକି ହସିଦେଲେ ଯେ ସେ ରହିଲେ । ବାପା ଉଠିକରି ଭିତରକୁ ଆସିଲେ । ଘର ଭିତରେ ଗୋଟିଏ ବସ୍ତାର ଅଖା ବିଛା ଯାଇଥିଲା । ବାପା କିଛି ସମୟ ସେହି ଅଖା ଉପରେ ବସି ରହିଲେ, ପୁଣି ସେହି ବସ୍ତା ଉପରେ ଶୋଇଗଲେ । ଏହା ଦେଖି ରଘୁବର ପ୍ରସାଦ ବାହାରୁ ଖଟିଆ ଭିତରକୁ ନେଇ ଆସିଲେ ।

''ଖଟିଆରେ ଶୋଇଥାନ୍ତେ ।''

''ନାହିଁ ଏଇମିତି ଭଲ ଲାଗୁଛି ।''

ବାପା ଥକା ହୋଇଥିବେ ଜାଣି ସେ କହିଲେ, ''ଆଜି ରାତିକ ରହି ଯାଇଥାନ୍ତେ । କାଲି ଯିବେ ।''

''ଚାଲିଯିବି । ଘରୁ ପୁରି ଆଣିଥିଲି ତାକୁ ହିଁ ଖାଇ ଚାଲିଯିବି ।''

''ବାସି ପୁରି କ'ଣ ଦେହ ଖରାପ କରିଦବ । ରୁଟି ଖାଇନେବ ।''

''ବାସି ପୁରି ଡାଲି ସାଙ୍ଗରେ ଭଲ ଲାଗେ । ବୋହୂକୁ କହ ଜଲ୍‌ଦି ଡାଲି ତରକାରୀ ରାନ୍ଧି ଦେଉ । ଅଳ୍ପ ଭାତ ବି ଖାଇବି ।''

ସ୍ତ୍ରୀ ରୋଷେଇ କରିବାକୁ ପ୍ରସ୍ତୁତ ହେଉଥିବାର ଦେଖାଗଲା । ଉଠିକରି ରୋଷେଇର ଡିବାଗୁଡ଼ିକୁ ଖୋଲିକରି ଡାଲି ଚାଉଳ ଖୋଜୁଥିଲା ।

''ଯା, ଯାଇ କହିଦେ ଡାଲି ଚାଉଳ କୋଉଠି ଅଛି ।'' ବାପା କହିଲେ ।

ରଘୁବର ପ୍ରସାଦ ଚାଉଳ, ଡାଲି, ଅଟାର ଡିବାମାନ ଦେଖାଇଦେଲେ ।

ପରିବା ଚାଙ୍ଗୁଡ଼ିଟି ଦେଉ ଦେଉ ସ୍ତ୍ରୀ ପାଖରେ ଥୋଇଦେଲେ । ଚାଙ୍ଗୁଡ଼ିରେ ଆଳୁ ଅଛି । ପୁରି ବହୁତ ଅଛି ବୋଲି ସ୍ତ୍ରୀ ଅଟା ଦଳିଲା ନାହିଁ । ରନ୍ଧାରନ୍ଧି ସରିବା ଯାକେ ବାପା ଆଖି ବୁଜିକରି ଶୋଇରହିଲେ । ପୁଅର ସଂସାରର ଖଟ୍ ଖାଟ୍ ଶବ୍ଦ ସବୁ ଆଖି ବୁଜିକରି ଶୁଣିବାକୁ ତାଙ୍କୁ ସୁଖ ଲାଗୁଛି । ତାଙ୍କୁ ନିଶ୍ଚୟ ଲାଗୁଥିବ ଯାହାହେଉ । ପୁଅର ଘର ସଂସାର ହୋଇଗଲା ।

ରଘୁବର ପ୍ରସାଦ କାଲି ପାଇଁ ପ୍ରସ୍ତୁତ ହେବାକୁ ବହିଖୋଲି ବସିଗଲେ । ସ୍ତ୍ରୀ ରୋଷେଇ କରୁ କରୁ ସ୍ୱାମୀଙ୍କୁ ଚାହିଁ ଦେଉଥାଏ । ପ୍ରତିଥର ଦେଖିଲେ ତାକୁ କିଛି ଛାଡ଼ି ଦେଇଥିବା ଭଳି ନୂଆ ଦେଖାଯାଏ । କ'ଣ ଦେଖିସାରିଛି ସେକଥା ଜଣାଯାଉନାହିଁ । କ'ଣ ଯେ ଦେଖିବାକୁ ଅଛି ତାହା ମଧ୍ୟ ଜଣାନାହିଁ । ଦେଖିଲେ ଖାଲି ଏତିକି ଜଣା ଯାଉଥିବ ଯେ ଏଇଟି ଦେଖି ନ ଥିଲା ।

ବାପା ଖୁବ୍ କମ୍ କରି ଖାଇଲେ । ସାତଟା ବାଜିଗଲା । ରାସ୍ତାର ଆଲୁଅ ଜଳିଗଲା ।

"ଆପଣଙ୍କର ଦେହ ଭଲ ଅଛି ତ ?" ସେ ପଚାରିଦେଲେ ।

"ହଁ, ଭଲ ଅଛି । ଦୃଷ୍ଟି କମିଯାଇଛି । ବାଁ ଆଖିକୁ ତ ଖୁବ୍ କମ୍ ଦୃଶ୍ୟ ହେଉଛି । ପରଳ ପଡ଼ୁଛି । ଆଣ୍ଠୁରେ ଖୁବ୍ କଷ୍ଟ ହେଉଛି । କାମ କଲେ କ୍ଳାନ୍ତି ଆସୁଛି । ଉଠି ଠିଆ ହେଲେ ମୁଣ୍ଡ ବୁଲାଏ ।"

"ଦୁର୍ବଳତା । ଇଯେ ଡାକ୍ତରଙ୍କୁ ଦେଖାଇ ଦେଇଥାନ୍ତେ ।"

"ହୋମ୍ୟୋପାଥିବାଲାଙ୍କୁ ?"

"ନା, ଇଂରାଜୀ ଔଷଧର ଡାକ୍ତରଙ୍କୁ ।"

"ହଉ ଦେଖାଇଦେବି ।"

ରଘୁବର ପ୍ରସାଦ ଉଠିଲେ । ଟିଣର ବାକ୍ସ ଖୋଲିକରି ସେ ପ୍ରଥମେ ଗୋଟିଏ ପଚାଶ ଟଙ୍କିଆ ନୋଟ୍ ନେଲେ, ତା'ପରେ ପଚାଶ ଆହୁରି ବାହାର କଲେ । ବାକ୍ସରେ ଆଉ ପ୍ରାୟ ଦୁଇଶହ ଟଙ୍କା ପଡ଼ିଥିବ । ପୁରା ମାସକ ବାକି ଅଛି । ପରିଚାଳନା କମିଟି ମାତ୍ର ଆଠଶହ ଟଙ୍କା ମାସିକ ସ୍ୱୀକୃତ କରିଛି । ବିଭାଗାଧ୍ୟକ୍ଷଙ୍କୁ ପନ୍ଦରଶହ ଟଙ୍କା ମିଳେ । ଏହା ପୂର୍ବରୁ ଡାଗା କଲେଜ, ଧମତରୀରେ ତାଙ୍କୁ ବାରଶହ ଟଙ୍କା ମିଳୁଥିଲା ।

"ଏ ଟଙ୍କାଟା ଖର୍ଚ୍ଚ ପାଇଁ ରଖିଥାନ୍ତୁ ।"

"କେତେ ଅଛି ?"

"ଶହେ ଟଙ୍କା ଅଛି ।"

"ଜାଣିବୁ ବସ୍‌ରେ ଯିବା ଆସିବାରେ ପଚାଶ ଟଙ୍କା ଖର୍ଚ୍ଚ ହୋଇଗଲା ।"

"କୋଡ଼ିଏ ଟଙ୍କା ଆହୁରି ରଖନ୍ତୁ ।"

"ନା, ତୋର ବି ତ ଖର୍ଚ୍ଚ ଅଛି । ଆଗରୁ ବି ଟଙ୍କା ଦେଇଛୁ ।"

ନିଅନ୍ତୁ, ମୋ ପାଖରେ ଆହୁରି ଅଛି ।

ରଘୁବର ପ୍ରସାଦ ରିକ୍ସା ଡାକି ଆଣିଥିଲେ । ବୋହୂ ପାଦ ଛୁଇଁଲାରୁ ବାପା ଆଶୀର୍ବାଦ ଦେଲେ । ଆଖପାଖର ବଖରାମାନଙ୍କର ଛୁଆ ମାଇପେ ଡୁଙ୍ଗୁଥିଲେ ।

ବାପା ରିକ୍ସାରେ ବସିଲା ପରେ ତାଙ୍କର ମୁଣିଟି ଧରି ରଘୁବର ପ୍ରସାଦ ମଧ୍ୟ ରିକ୍ସାରେ ବସିପଡ଼ିଲେ ।

"ବୋହୂକୁ କହ ଭିତରୁ କବାଟ କିଳିଦେବାକୁ । ତୋ ଘରଟା ଏକବାର ବସ୍ତିରୁ ଦୂରରେ ଆଉ ଶୁନ୍‌ଶାନ୍ ହୋଇଯିବା ଉପରେ ।"

"ହଉ," କହି ସେ ରିକ୍ସାରୁ ପୁଣି ଓହ୍ଲାଇଲେ । ଘର ଭିତରକୁ ଯାଇ ସେ ସ୍ତ୍ରୀକୁ କହିଲେ, "କବାଟ ବନ୍ଦ କରିଦବ, ମୁଁ ବାପାଙ୍କୁ ଛାଡ଼ିଦେଇ ଜଲଦି ଆସିବି– ଏତକ ସେ ନିଜ ମନରୁ କହିଥିଲେ । ବାପା ଯେତିକି କହିବାକୁ କହିଥିଲେ ଏ ପଦକ ତା'ଠାରୁ ବେଶୀ ଥିଲା । ଦରଜାର କବାଟ ଆଡୁଆଳରେ ସ୍ତ୍ରୀ ଠିଆ ହୋଇଥିଲା । ମଥାରେ ଓଢ଼ଣା । ମୁଣ୍ଡ ନୁଆଇଁ ସ୍ତ୍ରୀ ତାଙ୍କ କଥା

ଶୁଣିଲା ଓ ଆସ୍ତେ କରି ହଁ କହିଲା । ରଘୁବର ପ୍ରସାଦଙ୍କୁ ସ୍ତ୍ରୀର ହଁ ଶବ୍ଦ ଶୁଣିବାକୁ ବହୁତ ଭଲ ଲାଗିଲା ।

ବାପାଙ୍କୁ ଛାଡ଼ିବାକୁ ଗଲେ ଯେ ତାଙ୍କୁ ଚାଲିକରି ଫେରିବାକୁ ପ୍ରାୟ ରାତି ସାଢ଼େ ନଅଟା ବାଜିଗଲା । ରାସ୍ତାର ବତୀମାନଙ୍କର ଆଲୁଅ ଘର ଆଗରେ ପଡ଼ିଛି । ସେ ଦରଜାର ଶିକୁଳିକୁ ବହୁତ ଆସ୍ତେ କରି ଖଡ଼ ଖଡ଼ କଲେ ଯାହାକି ଖାଲି ତାଙ୍କ ସ୍ତ୍ରୀ ଶୁଣିପାରିବ ଓ ପାଖପଡ଼ିଶା ଶୁଣି ନ ପାରିବେ । ସ୍ତ୍ରୀ କବାଟ ପାଖକୁ ଆସୁଥିବାର ଶବ୍ଦ ଶୁଣାଗଲା । ଚୁଡ଼ିର ଝଣଝଣ ଶୁଣାଯିବାରୁ ଲାଗିଲା ସେ ଦରଜା ଖୋଲୁଛି । ଦରଜା ନ ଖୋଲିବାରୁ ସେ ଶିକୁଳିକୁ ପୁଣି ଖଡ଼ଖଡ଼ କଲେ । ଡାହାଣ ପଟର ପଡ଼ିଶା ଘରର କବାଟ ଖୋଲିବାର ଶବ୍ଦ ହେଲା । ପଡ଼ିଶାଘରର ମାଇପିଟି ପଦାକୁ ବାହାରିଲା । ରଘୁବର ପ୍ରସାଦ ଠିଆ ହୋଇଥିବାର ଦେଖି ସେ କହିଲା, ''ନୂଆ ବୋହୂଟି ଶୋଇପଡ଼ିବଣି । ଜୋରରେ ଖଡ଼ ଖଡ଼ କର ।''

''ହଉ ।'' ରଘୁବର ପ୍ରସାଦ କହିଲେ । ସେ ଭାବିଲେ ପଡ଼ିଶାର ମାଇପିଟି ନିଜର ଦରଜା ବନ୍ଦ କରିସାରିଲେ ସେ ପୁଣି ଖଡ଼ ଖଡ଼ କରିବେ । ପଡ଼ୋଶିନୀ ଭିତରକୁ ଯାଉନଥାଏ । ସେ ପୁଣିଥରେ କହିଲା, ''ଖଡ଼ ଖଡ଼ କର ।'' ଶିକୁଳି ଖଡ଼ ଖଡ଼ କରିବା ଆଗରୁ ସେ ଆସ୍ତେ କରି ଠେଲିବା ଯୋଗୁରୁ ଦରଜା ଖୋଲିଗଲା । ସ୍ତ୍ରୀ ଏହାରି ଭିତରେ ଆସ୍ତେ କରି ଛିଟିକିଣୀ ଖୋଲି ଦେଇଥିବ ଓ ତାଙ୍କୁ ଜଣାଯାଇନଥିବ । ଦରଜା ଖୋଲିଯିବା ପରେ ତାଙ୍କର ଦୃଷ୍ଟି ପୁଣିଥରେ ପଡ଼ୋଶିନୀ ଉପରକୁ ଚାଲିଗଲା, ''ଯାଅ'' ବୋଲି ପଡ଼ୋଶିନୀ କହିଲା । କିନ୍ତୁ ସେ ଭିତରକୁ ଏପରି ଅପ୍ରତ୍ୟାଶିତ ଭାବେ ଚାଲିଗଲେ ସତେ ଯେମିତି ସେ ନିଜେ ନିଜେ ଯାଇଛନ୍ତି । ଯେଉଁ କ୍ଷଣରେ ଯିବାର କଥା ଠିକ୍ ସେହି କ୍ଷଣରେ ଗଲେନାହିଁ । ପ୍ରତିକ୍ରିୟାରେ ତାଙ୍କର ଡେରି ହେଉଥିଲା, ଆଉ ତାଙ୍କୁ ଲାଗୁଥିଲା ଯେ ସେ ତତ୍‌କ୍ଷଣାତ୍ କାମଟି କରିଛନ୍ତି । ସେ ଦରଜା ବନ୍ଦ କଲେ । ପଡ଼ିଶାଘରୁ ଦରଜା ବନ୍ଦ ହେବାର ଶବ୍ଦ ଶୁଣାଯାଉନାହିଁ । ସେ ଦରଜା ଠାରୁ ଦୂରରେ ଖଟିଆ ଉପରେ ବସିପଡ଼ିଲେ । ସ୍ତ୍ରୀ ଗୋଟିଏ କୋଣରେ ଠିଆ ହୋଇଥିଲା ।

''ଶୋଇ ଯାଇଥିଲ ?''

''ନା ।'' ସ୍ତ୍ରୀ ଖାଲି ମୁଣ୍ଡ ହଲାଇଲା । କିଛି ସମୟ ଚୁପ୍ ରହିବା ପରେ ସେ କହିଲେ– ''ଛୁଇଁ ଦେଖ ତ ମୋତେ ଜର ହେଇଛି କି ? ସ୍ତ୍ରୀକୁ ପାଖକୁ ଡାକିବାକୁ ଆଉ କୌଣସି ଉପାୟ ତାଙ୍କ ମନକୁ ଆସି ନଥିଲା । ସ୍ତ୍ରୀ ତାଙ୍କ ପାଖକୁ ଆସି ଠିଆ ହୋଇଗଲା ।''

''ଦିହ ଗରମ ଥିଲେ ବାଆଁ ପଟର ଗରମ ହାତରେ ଡାହାଣର ଗରମ ହାତକୁ ଛୁଇଁଲେ ଜଣା ପଡ଼େନା ଯେ ଜର ଅଛି ।'' ସେ ବାଁ ହାତରେ ନିଜର ଡାହାଣ ହାତକୁ ଛୁଉଁ ଛୁଉଁ କହିଲେ । ତାଙ୍କର ମନେ ହେଲା ଯେ ସ୍ତ୍ରୀ ତାଙ୍କର ମଥା, ହାତକୁ ଛୁଇଁବ, କିନ୍ତୁ ଛୁଇଁଲା ନାହିଁ । ପାଖକୁ ଆସି କରି ଠିଆ ହୋଇରହିଲା । ସେ ନିଜର ହାତକୁ ବଢ଼ାଇ ଦେଲେ, ତଥାପି ସ୍ତ୍ରୀ ଛୁଇଁଲା ନାହିଁ । ସେ ହାତ ବଢ଼ାଇ କହୁଣୀ ପାଖରେ ସ୍ତ୍ରୀକୁ ଧରିଲେ । ଚୁଡ଼ି ଏତେ ବେଶୀ ଥିଲା ଯେ ହାତ ଧରିବାକୁ ଆଉ ଜାଗା ନଥିଲା ।

''ତୁମ ହାତ ତ ମୋ ହାତଠାରୁ ବେଶୀ ଗରମ ।'' ଆଉ ସେ ସ୍ତ୍ରୀର ହାତକୁ ଛାଡ଼ିଦେଲେ । ସ୍ତ୍ରୀର ହାତଟା ସତରେ ଗରମ ଥିଲା ।

''ନା, ଗରମ ନାହିଁ ।'' ସ୍ତ୍ରୀ ଏପରି ଭାବରେ କହିଲା ଯେ ତାର ହାତକୁ ପୁଣିଥରେ ଧରି ନିଅନ୍ତୁ ଓ ନ ଛାଡ଼ନ୍ତୁ ।

''ଗରମ ଅଛି । ସତରେ ଅଛି ।''

''ଖାଇଛ ?'' ସେ ପୁଣି ସ୍ତ୍ରୀକୁ ପଚାରିଲେ । ସ୍ତ୍ରୀ କିଛି କହିଲା ନାହିଁ ।

ସେ ବାପାଙ୍କ ସାଙ୍ଗରେ ପେଟ ପୁରାଇ ଖାଇ ନେଇଛନ୍ତି । ବାପା ଖାଲି ଦିପଟ ପୁରି ଖାଇଛନ୍ତି ଓ ଅଳ୍ପ ଭାତ । ପୁରି ବେଶୀ ଥିଲା । ମା ଏଇକଥା ଭାବି ପଠାଇଥିବ ଯେ ବୋହୂକୁ ଆଉ ଅଟା ଦଳିବା ଯେପରି ଦରକାର ନହୁଏ । ରଘୁବର ପ୍ରସାଦ ବହୁତ ଖାଇ ନେଇଛନ୍ତି । ଥାଳିରେ ବେଶୀ ଛାଡ଼ିବା ପସନ୍ଦ ନ ଥିବାରୁ ସେ ବେଶୀ ଖାଇନେଉଥାନ୍ତି । ସ୍ତ୍ରୀ ତାଙ୍କ ଥାଳିରେ ଚୁପ୍ ଚାପ୍ ପକାଇ ଦେଉଥାଏ । ପଚାରୁ ନ ଥାଏ ତେଣୁ ସେ ମନା କରି ପାରୁନଥିଲେ । ଶେଷକୁ ଖାଉ ଖାଉ ସେ ପାଣି ଗିଲାସ ଓ ଥାଳି ନେଇ ଠିଆ ହୋଇପଡ଼ିଲେ । ପାଣି ସେ ଠିଆ ଠିଆ ପିଇଲେ । ''ପାଣି ବସି କରି ପି ।'' ସେତେବେଳେ ବାପା କହିଥିଲେ ।

''ଖାଇଛ କି ନାହିଁ ?'' ସ୍ତ୍ରୀକୁ ସେଇ ଏକା ଜାଗାରେ ଅଚଳ ହୋଇ ଠିଆ ହୋଇଥିବାର ଦେଖି ରଘୁବର ପ୍ରସାଦ ପୁଣି ପଚାରିଲେ ସ୍ତ୍ରୀ କିଛି କହିଲା ନାହିଁ ।

''କଥା କ'ଣ ଭଲ ଲାଗୁନାହିଁ ?'' ରଘୁବର ପ୍ରସାଦ ଆସ୍ତେ ପଚାରିଲେ । ଏତେବେଳକୁ ରଘୁବର ପ୍ରସାଦଙ୍କର ଛାତି ଧଡ଼ ଧଡ଼ ହେଉଥିଲା ।

''ଜର ନାହିଁ ।'' ସ୍ତ୍ରୀ କହିଲା ।

''ହାତ ତ ପୋଡ଼ିଯାଉଛି ।'' ଅଟକି ଅଟକି ସେ କହିଲେ ।

''ନାଡ଼ି ଦେଖିନିଅ ।'' ସ୍ତ୍ରୀ କହିଲା । ରଘୁବର ପ୍ରସାଦ ନାଡ଼ି ଦେଖିବା ଜାଣନ୍ତି ନାହିଁ । ସେ ସ୍ତ୍ରୀର ହାତ ଧରିଲେ ।

''ଚୁଡ଼ି ଏତେ ଅଛି ଯେ ନାଡ଼ି ମିଳିବ ନାହିଁ ।''

''ଏଥିରେ କମ୍ ଅଛି । ସ୍ତ୍ରୀ ତାର ଡାହାଣ ହାତ ବଢ଼ାଇଲା ।''

''ସେତିକି ଲାଗୁଛି ।''

''ଗୋଟିଏ ବସ୍‌ରେ ଭାଙ୍ଗିଯାଇଥିଲା । ଆଉ ଗୋଟେ ଏଠି କାମ କରୁ କରୁ ଭାଙ୍ଗିଗଲା ।''

''ଖାଲି ଦି ପଟ କମ୍ ଅଛି ।''

''ହଁ ।''

''ବସିଯାଅ ।'' ସ୍ତ୍ରୀ ବସିପଡ଼ିଲା ।

''ଡାହାଣ ହାତର ଚୁଡ଼ି ଭାଙ୍ଗିଯାଏ । ବାଁ ହାତର କମ୍ ଭାଙ୍ଗେ ।'' ସ୍ତ୍ରୀ କହୁଥିଲା । ଆଉ ରଘୁବର ପ୍ରସାଦ ନାଡ଼ିକୁ ଅଣ୍ଡାଳି ଦେଖୁଥିଲା । ନାଡ଼ି ଖାଲି ସେଇଠି ନଥାଏ । ସେଠି ନ ପାଇଲେ ତାକୁ କୋଉଠି ଖୋଜିବା ? ଛାତିର ଧକ ଧକକୁ ଅଣ୍ଡାଳି ହୋଇପାରେ । ରଘୁବର ପ୍ରସାଦଙ୍କର

ମନେ ହେଉଥିଲା ଯେ ହାତୀ ଉପରେ ତାଙ୍କ ସ୍ତ୍ରୀ କୋଳରେ ବସିଛି । ରାତିର କଳା ହାତୀ ଯେ ତା'ର ଶୁଣ୍ଢଟା ପୃଥିବୀ ଯାକ ଝୁଲିରହିଛି । ରାତିଟି ହାତୀର ଚାଲି ପରି ଉପରୁ ତଳକୁ ଝୁଲି ଝୁଲି ଚାଲିଛି । ସେ ସ୍ତ୍ରୀକୁ ସମ୍ଭାଳିକରି ଧରିଛନ୍ତି । ଅନ୍ଧାରରେ ଶିଉଳି ଭଳିଆ ଖସଡ଼ା ହୋଇଥାଏ । ସେହିଭଳି ରଘୁବର ପ୍ରସାଦଙ୍କୁ ଲାଗିଲା । ସ୍ତ୍ରୀ ଖସି ଯାଉଥିଲା ।

ଏହା ପରେ ଅନ୍ଧାରରେ ସ୍ତ୍ରୀ ପଚାରିଲା, ''ବସ୍‌ଷ୍ଟାଣ୍ଡରୁ ରିକ୍ସାରେ ଆସିଥିଲ ?''

''ନା, ଚାଲି ଚାଲି ଆସିଥିଲି ।'' ସ୍ତ୍ରୀ ଶୁଣିଲା ଯେ ରଘୁବର ପ୍ରସାଦ ଘୋଡ଼ା ଚଢ଼ି ଆସିଥିଲେ ।

''ହାତୀ ମିଳିଲା ନାହିଁ ?'' ସ୍ତ୍ରୀ ପଚାରିଲା । ରଘୁବର ପ୍ରସାଦ ଶୁଣିଲେ ଯେ ସ୍ତ୍ରୀ ପଚାରୁଛି – ରିକ୍ସା ମିଳିଲାନି କି ?

ମିଳିଥିଲା ହେଲେ ଚାଲିକରି ଆସିଲି । ଚାଲିକରି ଆସିଲେ ପଇସା ଖର୍ଚ୍ଚ ହେବନାହିଁ । ବସ୍‌ଷ୍ଟାଣ୍ଡ ତ ପାଖରେ ଅଛି ।

ସ୍ତ୍ରୀ ଶୁଣିଲା, ଘୋଡ଼ା ଲାଗି ପଇସା ଦେବାକୁ ପଡ଼ିନାହିଁ । ବସ୍‌ଷ୍ଟାଣ୍ଡ ପାଖରେ ଅଛି ।

''ଘୋଡ଼ା ଚଢ଼ି ଆସିବାକୁ କେତେବେଳ ଲାଗିଲା ?'' ସ୍ତ୍ରୀ ପଚାରିଲା ।

''ଜଲଦି ଆସିଥାନ୍ତି ହେଲେ ବାଟରେ ଜଣେ ସାଙ୍ଗ ସାଙ୍ଗରେ ଦେଖା ହୋଇଗଲା ।'' ରଘୁବର ପ୍ରସାଦ କହିଲେ ।

ସ୍ତ୍ରୀ ଶୁଣିଲା– ବାଟରେ ଆଉ ଜଣେ ଅଶ୍ୱାରୋହୀ ସାଙ୍ଗରେ ଭେଟ ହେଲା ।

''ତା'ପରେ ଏକଡ଼ ସେକଡ଼ ବୁଲିଲୁ ।''

ଏକଡ଼ ସେକଡ଼ ଘୋଡ଼ା ଦଉଡ଼ାଇ ବୁଲିଲେ– ସ୍ତ୍ରୀ ଶୁଣିଲା ।

''ଥକିଯିବାରୁ ଗୋଟାଏ ଉଠା ଚାହା ଦୋକାନରେ ଚାହା ପିଇଲୁ ।''

''ଥକିଯିବାରୁ ଗୋଟିଏ ପୁରୁଣା ଭଙ୍ଗା ଦୁର୍ଗ ଭଳି ପୁରୁଣା ପାନ୍ଥଶାଳାରେ କେସର ପକା ଦୁଧ ପିଇଲୁ ।'' ସ୍ତ୍ରୀ ଶୁଣିଲା ।

''ଭଲ ଗରମ ଚାହା ହୋଇଥିଲା ।''

ଘନ ଗରମ ଦୁଧ ଥିଲା । ସ୍ତ୍ରୀ ଶୁଣିଲା ।

''ମୁଁ ବି ତମ ସାଙ୍ଗରେ ବୁଲିବାକୁ ଯିବି ।'' ସ୍ତ୍ରୀ କହିଲା ।

ମୁଁ ବି ତମ ସାଙ୍ଗରେ ଘୋଡ଼ା ଚଢ଼ିଯିବି । – ଏଥରକ ରଘୁବୀର ପ୍ରସାଦ ଶୁଣିଲେ ।

''ଘୋଡ଼ା ଚଢ଼ି କାହିଁକି, ଖଟିଆରେ ଶୋଇ ଶୋଇ ଉଡ଼ିଯିବା ।'' ରଘୁବର ପ୍ରସାଦ କହିଲେ ।

ଚଢ଼େଇ ହୋଇକରି ଉଡ଼ିଯିବା । –ସ୍ତ୍ରୀ ଶୁଣିଲା ।

''ହଁ ।'' ସ୍ତ୍ରୀ କହିଲା ।

''ଉଡ଼ିକରି ସବା ଆଗ କେଉଁଠାକୁ ଯିବା ?''

''ଯେଉଁଠି ଛଅମାସର ରାତି ଥିବ ।'' ରଘୁବର ପ୍ରସାଦ କହିଲା । ସ୍ତ୍ରୀ ମଧ୍ୟ ତାହା ହିଁ ଶୁଣିଲା ।

''ଛଅ ମାସର ରାତିସାରା ଏଇ ଖଟିଆ ଉପରେ ଶୋଇରହିବା ।'' ସ୍ତ୍ରୀ କହିଲା । ରଘୁବର ପ୍ରସାଦ ବି ସେଇକଥା ଶୁଣିଲେ ।

"ଛଅ ମାସର ରାତି ଶେଷ ନ ହେଉଣୁ ପୁଣି ଏଠି ବାରଘଣ୍ଟାର ରାତି ପାଖକୁ ଆସିଯିବା । ଆସିକରି ଶୋଇପଡ଼ିବା"– ସ୍ତ୍ରୀ ମଧ୍ୟ ଏଇକଥା ଶୁଣିଲା ।

"ଆମର ଉଠିବାର ବାଟକୁ ସକାଳ ଅନିସା କରିଥିବ ।" ରଘୁବର ପ୍ରସାଦ କହିଲେ ।

"ସକାଳ କେମିତିକା ବାଟକୁ ଅନିସା କରିଥିବ ?"

"ଯେମିତି ଆମର ନିଦ ଭାଙ୍ଗିବ, ସକାଳ ହୋଇଯିବ ।"

"ବେଶୀ ବେଳଯାକେ ଶୋଇଗଲେ ବେଶୀ ଡେରିରେ ସକାଳ ହେବ ।"

ରଘୁବର ପ୍ରସାଦ ଶୁଣିଲେ– ବେଶୀ ଡେରିଯାକେ ଶୋଇଗଲେ ବେଶୀ ଡେରି ଯାକେ ରାତି ରହିବ ।

ଚଢ଼େଇ ଅନିସା କରିଥିବ ଯେ ଆମେ ଉଠିଲେ ସକାଳ ହୋଇଯିବ ଓ ସେମାନେ କିଚିରି ମିଚିରି ଆରମ୍ଭ କରିଦେବେ ।

"ସକାଳୁ ସବା ଆଗ ଛୋଟ ଛୋଟ ଚଢ଼େଇଙ୍କର ରାବ ହେବ । ତା'ପରେ କୋଇଲିର ଡାକ ଶୁଣାଯିବ ।"

ଦୃଷ୍ଟିର ଜଳରେ ଲିଭିକରି ସୂର୍ଯ୍ୟ ଚନ୍ଦ୍ରମା ହୋଇଯାଇଥିଲା ।
ଆଉ ମୁରୁଜରେ ଲେଖା କଇଁଫୁଲ ପାଣିରେ ଭାସୁଥିଲା ।

କିଛି ମନେ ପଡ଼ିଯିବାରୁ ହଠାତ୍ ରଘୁବର ପ୍ରସାଦ ଉଠିଗଲେ । ତାଙ୍କ କାନରେ ଚଢ଼େଇଙ୍କର କିଚିରି ମିଚିରି ଓ କୋଇଲିର କୁହୁତାନର ଶବ୍ଦ ପରେ ପରେ ଗ'ରେ ହ୍ରସ୍ୱ ଉ ଫଳା ଗୁଡ଼ିଆ ବି ଶୁଣିବାକୁ ମିଳିଥିଲା । ସେ ଉଠି ଠିଆ ହୋଇ ପଡ଼ିଲେ । ସ୍ତ୍ରୀର ଆଣ୍ଠୁ ଉପରକୁ ଟାଣି ହୋଇଥିବା ଶାଢ଼ି ଉପରେ ସେ ନଜର ପକାଇ ଦେଇଥିଲେ ।

"ଉଠ ।" ସେ ସ୍ତ୍ରୀକୁ ଏପରି ପ୍ରେମରେ ଉଠାଇଲେ ଯେପରି ତାହା ବର୍ଷ ବର୍ଷର ସକାଳର ରୀତି । ରଘୁବର ପ୍ରସାଦ ଝରକା ତଳକୁ ଡୁଙ୍ଗିକରି ଦେଖିଲେ ଯେ ଗୁଡ଼ିଆ ସ୍ଲେଟ ଓ ପଟି ନେଇ ଝରକା ତଳେ ବସି ପଢୁଛି । ସେ ଶୋଇଥିବା ବେଳେ ଗୁଡ଼ିଆ ଇଟା ଉପରେ ଠିଆ ହୋଇ ଉଙ୍କି ମାରି ଦେଖିଥିବ । ସେ ଝରକାରେ ରଡ୍ ନାହିଁ । କେହି ଡେଇଁକରି ବଖରା ଭିତରକୁ ଆସିବାକୁ ରୋକିବା ଲାଗି ଖାଲି ଝରକାର କବାଟକୁ ବନ୍ଦ କରି ହେବ । କବାଟ ବନ୍ଦ କରି ଦେଲେ କେହି ନ ଆସିଲେ ବି ପବନ, ଆଲୁଅ, ବାହାରର ଦୃଶ୍ୟ ମଧ୍ୟ ଆସେ ନାହିଁ । ଝରକାର ଦରଜା ଖୋଲା ଥିଲେ ତାଙ୍କର ଉଠିବା ଆଗରୁ ବଖରା ଭିତରେ ସକାଳ ହୋଇଯାଏ । ରାତିରେ ସେ ଭାବିଥିଲେ ଯେ ସ୍ତ୍ରୀକୁ କହିବେ ଡିବିରି ନେଇ ଝରକାରେ ଠିଆ ହୋଇଯାଉ ଯାହା ଫଳରେ ସେ ଇଟାକୁ ସେ ଜାଗାରୁ ହଟାଇ ଦେବେ । ତା'ପରେ ସେ ଭାବିଥିଲେ ଇଟା ହଟାଇବା ଅପେକ୍ଷା ଝରକାର କବାଟ ବନ୍ଦ କରି ଦେବେ, କିନ୍ତୁ ସେ ଭୁଲିଗଲେ ।

ସେ ପାଇଖାନାର କୋଲପର ଚାବି ଖୋଜୁଥିଲେ । ତାଙ୍କୁ ମିଳିଲା ନାହିଁ । ଯୋଉଠି ରୋଷେଇ ଜିନିଷ ଥାଏ ସେଇଠି ଗୋଟିଏ ଖୁର୍ପିରେ ସେ ଚାବିକୁ ରଖି ଦେଇଥିଲେ । ଖୁର୍ପି ସେ ଜାଗାରେ

ଦିଶୁନାହିଁ । ସ୍ତ୍ରୀ ଖଡ଼ଖାଡ଼ ଶବ୍ଦରେ ତାର ସ୍ୱପ୍ନ ରାଇଜରୁ ନିଦ ଭାଙ୍ଗି ଚାହିଁଲା । ପାଇଖାନାର ଚାବିଟା ପାଉନାହିଁ । ସେ ସ୍ତ୍ରୀକୁ ପଚାରିଲେ । ସ୍ତ୍ରୀ ସବୁଠାରୁ ଭିନ୍ନ କରି ଗୋଟିଏ ଇଟା ଉପରେ ସେହି ଖୁର୍ପିଟିକୁ ଦେଖାଇଦେଲା । ସେ ଭାବିଥିବ ଯେ ରୋଷେଇର ଜିନିଷ ସାଙ୍ଗରେ ପାଇଖାନାର ଚାବି ରହିବା ଉଚିତ ନୁହେଁ । ଆପେ ଆପେ ସେ ନିଜର ଘର ସଂସାରକୁ ସଜାଡ଼ିବାର କାମ ଭାବେ ଏଇଟି କରିଥିଲା । ଯେତେବେଳେ ରଘୁବର ପ୍ରସାଦ ବସ୍‌ଷ୍ଟାଣ୍ଡକୁ ଯାଇଥିଲେ ସେହି ସମୟରେ ପଡ଼ୋଶିନୀମାନଙ୍କ ଠାରୁ ତାକୁ କିଛି ଘର ସଂସାର କଥାର ସୂଚନା ମିଳିଯାଇଛି । ଖୁର୍ପିର ଚାବି ଯେ ପାଇଖାନାର ଚାବି, ଏକଥା ସେ ନିଜେ ଅନୁମାନ କରିଥିଲା । ଅଳ୍ପ ସମୟ ଭିତରେ ଘରର ଜିନିଷମାନ ନିଜ ନିଜ ସ୍ଥାନ ତ୍ୟାଗ କରି ସ୍ତ୍ରୀର ଇଚ୍ଛାମତେ ଅନ୍ୟ ସ୍ଥାନକୁ ଚାଲି ଯିବାକୁ ଆରମ୍ଭ କଲା । ଜିନିଷପତ୍ରର ସ୍ଥାନ ଅଦଳବଦଳ ହେବାର ସମ୍ମୋହନ ମଧ୍ୟରେ ରଘୁବର ପ୍ରସାଦଙ୍କୁ ଲାଗୁଥିଲା ଯେ ତାଙ୍କର ନିଦ ପୂର୍ଣ୍ଣ ହୋଇନାହିଁ । ଛୋଟ ଛୋଟ ପିଲାଏ ଝରକାର ଇଟା ଉପରେ ଠିଆ ହେବାକୁ ଧକ୍କାଧକ୍କି ଲଗାଇଥିଲେ ।

ସେ ଦୁହେଁ ପିଲାଙ୍କ ଠାରୁ ନିର୍ଲିପ୍ତ ହୋଇ ନିଜର କାମ କରୁଥିଲେ ଓ ପିଲାଏ ବାୟୋସ୍କୋପ୍ ଭଳି ଝରକାରୁ ଦେଖୁଥିଲେ । ଖାଇ ପିଇ କରି ରଘୁବର ପ୍ରସାଦ ବହିପତ୍ର ଘେନି ଖଟିଆ ଉପରେ ବସିପଡ଼ିଲେ । କିଛି ସମୟ ପରେ ଝରକା ପଛପଟୁ ପିଲାମାନଙ୍କର ଖୁସିର ଚିତ୍କାର ସେ ଶୁଣିଲେ । ରଘୁବର ପ୍ରସାଦ ଆଉ ରହି ପାରିଲେ ନାହିଁ । ସେ ବହି ଧରି ଝରକା ପାଖକୁ ଆସିଗଲେ । ଗୋଟିଏ ପିଲା ଠିଆ ହୋଇଥିଲା । ବାକି ସମସ୍ତେ ଦଉଡ଼ି ପଳାଇ ଯାଇଥିଲେ । ''କ'ଣ ହେଲା ?'' ସେ ସେହି ପିଲାକୁ ପଚାରିଲେ ।

'''ଛେଳିର ଛୁଆ ।'' ସେ କହିଲା । ପବନ ବଡ଼ ଭଲଭାବେ ବହୁଥିଲା ।

''କି ରଙ୍ଗର ?'' ସେ ପଚାରିଲେ ।

''କଳା ରଙ୍ଗର'' ପିଲାଟି କହିଲା । ରଘୁବର ପ୍ରସାଦ ମୁରୁକି ହସିଲେ ।

''ଛେଳି ଛୁଆକୁ ଦେଖିବାକୁ ଯିବ ?'' ରଘୁବର ପ୍ରସାଦ ସ୍ତ୍ରୀକୁ ପଚାରିଲେ ।

''ଚାଲ'', ସ୍ତ୍ରୀ ସାଙ୍ଗେ ସାଙ୍ଗେ ପ୍ରସ୍ତୁତ ହୋଇଗଲା ।

''ଏକଡ଼େ ବାରିପଟେ ଝରକା ଦେଇଯିବା ।'' ସେ କହିଲେ ।

ଏପ୍ରିଲ୍‌ର ପ୍ରଥମ ସପ୍ତାହ । ସକାଳର ପବନରେ ଏଠି ଟିକିଏ ଥଣ୍ଡା ଭାବ ଥିଲା । ପବନ ଜୋରରେ ବହୁଛି । ଝରକା ଦୁଆର ପଦାକୁ ଗୋଡ଼କୁ ଝୁଲାଇ ରଘୁବର ପ୍ରସାଦ ଡେଇଁ ପଡ଼ିଲେ । ତା'ପରେ ସେ ସ୍ତ୍ରୀକୁ ସାହାଯ୍ୟ କଲେ ।

ସେଠାରେ ଗୋଟିଏ ବଡ଼ ଓସ୍ତଗଛ ଥିଲା । ଗଛ ମୂଳରେ ଗୋଟିଏ ଲମ୍ବା ଦଉଡ଼ିରେ ଛେଳିର ଗୋଟିଏ କଳା ଛୁଆ ବନ୍ଧା ହୋଇଥିଲା । ପବନ ବେଗରେ ଓସ୍ତଗଛର ପତ୍ର ଏଣେ ତେଣେ ଝଡ଼ି ପଡ଼ିଲେ ଛେଳି ଛୁଆ ଦଉଡ଼ି କରି ପତ୍ର ଆଡ଼କୁ ଝାମ୍ପୁଥାଏ । ଗୋଟିଏ ପତ୍ର ଆଡ଼କୁ ଯାଉ ଯାଉ ପୁଣି ଆଉ ଗୋଟିଏ ପତ୍ର ଖଡ଼ଖାଡ଼ କରି ଝଡ଼ିପଡ଼େ । ସ୍ତ୍ରୀର ଶାଢ଼ିର ମୁହଁଟା ପବନରେ ଉଡୁଥାଏ । ତଳେ ଗୁଡ଼ାଏ ପତ୍ର ଏକାଠି ହୋଇଗଲେ । ପିଲାମାନେ ଝଡ଼ା ପତ୍ରଗୁଡ଼ିକୁ ଗୋଡ଼ରେ ଚାପିରଖିବା

ଲାଗି ଦଉଡ଼ନ୍ତି । ସ୍ତ୍ରୀ ପାଖରେ କରି ଗୋଟିଏ ପତ୍ର ଝଡ଼ିପଡ଼ିଲା । ସେ ଗୋଡ଼ରେ ଚାପିବାକୁ ଗଲା କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ହୋଇଗଲା । ରଘୁବର ପ୍ରସାଦ, ସ୍ତ୍ରୀ ଓ ପିଲାମାନେ ଝଡୁଥିବା ପତ୍ରମାନଙ୍କୁ ଧରିବାକୁ, ଗୋଡ଼ରେ ଚାପିବାକୁ ଏଣେ ତେଣେ ଦଉଡୁଥାନ୍ତି । ସେମାନଙ୍କର ଏହି ଖେଳ ଦେଖି ମନେ ହେଉଥିଲା ଯେ ପତ୍ରଯାକ ଜାଣି ଜାଣି ଖେଳିଖେଳି ଝଡୁଛନ୍ତି । ଗଛ ତାର ପତ୍ର ଝଡ଼ାଇବା ଲାଗି ଖେଳିବାକୁ ଠିଆ ହୋଇଛି । ସ୍ତ୍ରୀର ବାଳ ଭିତରେ ଗୋଟିଏ ପତ୍ର ଆସି ଅଟକିଗଲା । ରଘୁବର ପ୍ରସାଦ କହିଲେ, ''ତମର ବାଳରେ ଗୋଟିଏ ପତ୍ର ଅଟକିଛି ।'' ସ୍ତ୍ରୀ ତା'ର ବାଳ ଭିତରେ ସେ ପତ୍ରକୁ ଆଙ୍ଗୁଠିରେ ଅଣ୍ଡାଳିବାରୁ ପତ୍ରଟି ତଳେ ପଡ଼ିଗଲା । ''ପଡ଼ିଗଲା ।'' ରଘୁବର ପ୍ରସାଦ କହିଲେ ।

ପଡ଼ୋଶିନୀ ତା'ର ଖୋଲା ଝରକାଠାରୁ ପାଟିକଲା, ''ହାତୀ ଆସିଲା ।'' ଛେଳିଛୁଆ ସାଙ୍ଗରେ ଖେଳ ଛାଡ଼ି ସବୁ ପିଲାଏ ହାତୀ ଆଡ଼କୁ ଦଉଡ଼ିଗଲେ । ରଘୁବର ପ୍ରସାଦଙ୍କର ମନେହେଲା ଯେ ହାତୀ କିଛିଟା ସହଜ ଆସିଯାଇଛି । ସେ ସ୍ତ୍ରୀର ହାତକୁ ଧରିକରି ଝରକା ପାଖକୁ ଆସିଲେ । ଆଗ ସେ ସ୍ତ୍ରୀକୁ ଚଢ଼ାଇ ସାରି ତା'ପରେ ନିଜେ ଘର ଭିତରକୁ ଡେଇଁ ପଡ଼ିଲେ । ହାତୀ ଆସିଲା ଶୁଣି ପ୍ରଫୁଲ୍ଲ ହୋଇ ସ୍ତ୍ରୀ ଦରଜାମାନ ଖୋଲିବାକୁ ଲାଗିଲା । ସ୍ତ୍ରୀ ଦରଜାକୁ ଏପରି ଭାବରେ ପୂରା ଖୋଲିଦେଲା ସତେ ଯେମିତି ହାତୀର ସେ ଘର ଭିତରକୁ ଆସିବାର ଅଛି । କବାଟ ଫାଙ୍କରେ ସେ ଦେଖିଲା ବେଶ୍ ମୋଟା ସୋଟା ହାତୀ । ତା'ପରେ ସେ ଭିତରକୁ ଆସିଗଲା । ରଘୁବର ପ୍ରସାଦ ପ୍ରସ୍ତୁତ ହେଉ ହେଉ ଦେଖୁଥାନ୍ତି ଯେ ହାତୀ ରାସ୍ତା କଡ଼ରେ ଲଙ୍ଗଳା ହୋଇ ପରିସ୍ରା କରୁଛି । ହାତୀ ଉପରେ ବସି ସାଧୁ ବିଡ଼ି ଟାଣୁଥାଏ । ହାତୀକୁ ଦେଖି ସ୍ତ୍ରୀ ଗୋଟିଏ ଛୋଟିଆ ଝିଅଟି ଭଳିଆ ଖୁସି ଥିଲା । ରଘୁବର ପ୍ରସାଦ ଆଜି ସାଧୁକୁ କହିବାକୁ ଚାହୁଁଥିବେ :

ହାତୀରେ ବସିଯିବାକୁ ଭଲ ଲାଗେ ନାହିଁ । ମୁଁ ଟେମ୍ପୋରେ ଚାଲିଯିବି । ଏହା ଶୁଣି ସାଧୁ କହିବ, ''ମୁଁ ଆପଣଙ୍କୁ ଟେମ୍ପୋ ଷ୍ଟାଣ୍ଡରେ ଖୋଜିଲି । ଆପଣ ନ ଆସିବାରୁ ଆପଣଙ୍କୁ ନେବା ପାଇଁ ଘରକୁ ଆସିଗଲି ।''

''ଆଜି ଡେରି ହୋଇଗଲା ।'' ରଘୁବର ପ୍ରସାଦ କହିବେ ।

''ଟେମ୍ପୋକୁ ଚାହିଁ ବସିଲେ ଆହୁରି ଡେରି ହେବ । ହାତୀରେ ଯିବା ଚାଲନ୍ତୁ । ହାତୀକୁ ବେଗେ ଚଲାଇ ନେବା ।''

''ଆଚ୍ଛା ।'' କହି ରଘୁବର ପ୍ରସାଦ ହାତୀରେ ବସିବାକୁ ପ୍ରସ୍ତୁତ ହେବେ ।

କାନ୍ଧରୁ ଝୁଲୁଥିବା ବ୍ୟାଗ୍‌ରେ ତିନିଟି ବହି ଥିଲା । ଯାଉ ଯାଉ ସେ ସ୍ତ୍ରୀକୁ କହିଲେ, ''ମୁଁ ଜଲଦି ଆସିଯିବି । ଯିବାକୁ ମନ ହେଉନାହିଁ ।'' ରଘୁବର ପ୍ରସାଦ ବାହାରକୁ ବାହାରିବା ମାତ୍ରକେ ସାଧୁ ହାତୀକୁ ମାଟି ଉପରେ ବସାଇଦେଲା । କାରର ଦରଜାଟି ସାହେବ ଆସିବା ମାତ୍ରେ ଡ୍ରାଇଭର ଖୋଲିଦିଏ । ସେହିଭଳି ରଘୁବର ପ୍ରସାଦଙ୍କୁ ଦେଖି କରି ସାଧୁ ହାତୀକୁ ବସିବାକୁ କହିଥିବ । ହାତୀର ବସିବାଟା କାରର ଦରଜା ଖୋଲିବା ପରି । ହାତୀ ରଘୁବର ପ୍ରସାଦଙ୍କୁ ଦେଖିକରି ବସି ନଥିବ । ବାରମ୍ବାର ଏପରି ହେଲେ ରଘୁବର ପ୍ରସାଦଙ୍କୁ ଦେଖିଲେ ହାତୀର ବସି ପଡ଼ିବାର ଅଭ୍ୟାସ ହୋଇଯାଇପାରେ । ସ୍ତ୍ରୀ ଭାବିଥିଲା ଯେ ହାତୀ ରଘୁବର ପ୍ରସାଦଙ୍କୁ ଦେଖି କରି ବସିଛି ।

ସେ ରଘୁବର ପ୍ରସାଦଙ୍କୁ ହାତୀ ଉପରେ ଚଢୁଥିବାର ଦେଖୁଥାଏ ଓ ଖୁସି ହେଉଥାଏ । ଯେବେ ଝୁଲାମୁଣିଟା ଲଟକାଇବା ପରି ହୋଇନଥାନ୍ତା ତେବେ କଷ୍ଟ ହୋଇଥାନ୍ତା । ଚପରାସୀର ଛତା ଫେରାଇବା କଥା ତାଙ୍କର ମନେ ନ ଥିଲା ।

''ଯିବା ?'' ସାଧୁ ପଚାରିଲା ।

''ଚାଲ ।'' ରଘୁବର ପ୍ରସାଦ କହିଲେ । ଏଥର ସେ ହାତୀରେ ବସି ସ୍ତ୍ରୀକୁ, ପଡ଼ିଶାଘରର ମାଇପି ଓ ପିଲାଙ୍କ ସାଙ୍ଗରେ ଠିଆ ହୋଇଥିବାର ଦେଖିଲେ । ରଘୁବର ପ୍ରସାଦ ଯାଉଥିବାର ଦୃଶ୍ୟକୁ ସ୍ତ୍ରୀ କିଛି ସମୟ ଚାହିଁ ରହିଲା । ତା'ପରେ ଘରର କାମ କରିବା ଲାଗି ଭିତରକୁ ଚାଲିଗଲା ।

ହାତୀ ଉପରେ ବସି ରଘୁବର ପ୍ରସାଦ ଦେଖିଲେ ଯେ ଗୋଟିଏ ସାଇକେଲ ହାତୀକୁ ଟପି ଚାଲିଗଲା । ଗୋଟିଏ ଅଳ୍ପ ଉଚ୍ଚତାର ମାଟିଆ ରଙ୍ଗର ଘୋଡ଼ା ଉପରେ ଗାଁର ଜଣେ ବୁଢ଼ା ବସି ସାମନାରେ ଚାଲିଯାଉଥିଲା । ଯେତେବେଳେ ହାତୀ ଚାଲି ଚାଲି ଘୋଡ଼ା ପାଖରେ ସମାନ ସ୍ଥାନରେ ହେଲା ସେତେବେଳେ ଘୋଡ଼ା ତରକି ଗଲା । ଘୋଡ଼ାର ବୁଢ଼ା ସବାରଟି ଲଗାମ ଛାଡ଼ି ଦେଇ ସେତେବେଳକୁ ଢୁଳେଇ ଢୁଳେଇ ବସିଥିଲା । କୌଣସି ପ୍ରକାରେ ଲଗାମ ଧରି ସେ ଘୋଡ଼ାକୁ କାବୁ କରିପାରିଲା । ସେଇଠୁ ବୁଢ଼ା ସବାର ହାତୀର ପଛରେ ପଡ଼ିଗଲା ଏବଂ ଠିକ୍ ଆଗରୁ ଯେଉଁଭଳି ଯାଉଥିଲା, ସେହି ପ୍ରକାରେ ଆଗଉଥିଲା । ତା'ର ଯିବାର ଲୟ ଠିକ୍ ପୂର୍ବଭଳି ହୋଇଗଲା । ସେହି ଲୟଟି ଥିଲା ଧୀରେ ଧୀରେ ସମୟ ବିତିବାର ଲୟ । ଗରମ ଦିପହର ଯେମିତି ଧୀରେ ଧୀରେ ବିତେ । ଦିପହର ଅବଶ୍ୟ ବର୍ତ୍ତମାନ ହୋଇନାହିଁ । କିନ୍ତୁ ଘୋଡ଼ାର ଚାଲି ଦେଖି ମନେ ହେଉଥିଲା ତାର ଗାଁ ଯେତେ ପାଖରେ ହୋଇଥାଉ ପଛେ ତାକୁ ବାଟରେ ଦିପହର ନିଶ୍ଚୟ ମିଳିଯିବ । ଆଗରେ କେଉଁଠି ଦିପହର ଘୋଡ଼ାର ଆସିବା ବାଟକୁ ଅନିସା କରି ଠିଆହୋଇଥିବ । ଘୋଡ଼ା ଯେମିତି ତା' ପାଖକୁ ପହଞ୍ଚିଯିବ, ଦିପହର ହୋଇଯାଇ ତା' ସଙ୍ଗେ ଚାଲିବାକୁ ଲାଗିବ । ଯାଉ ଯାଉ ସେ ବିତିଯିବ ଆଉ ଆଗକୁ ଗଲେ ରାତି ଆସିଯିବ ଓ ଏହି କ୍ରମଟି କେତେ ରାତି କେତେ ସକାଳ ଯାକେ ଚାଲୁଥିବ ।

କିଛି ସମୟ ପରେ ଦଳେ କେଳା ଏକାଠି ଆସୁଥିବାର ଦେଖାଗଲା । ମାଇପେ ତାଟି ବାଉଁଶ ଆଦି ମୁଣ୍ଡାଇଥିଲେ । ତିନୋଟି ଘୁଷୁରି ତିନିଟି ସାଇକେଲ କ୍ୟାରିଅର୍‌ରେ ବନ୍ଧା ହୋଇଥିଲେ । ଚତୁର୍ଥ ସାଇକେଲର କ୍ୟାରିଅରରେ ଗୋଟିଏ ଟୋକେଇରେ ଛୋଟ ଛେଳିଟିଏ ବନ୍ଧା ହୋଇଥିଲା । ଛେଳି ନେଇ ଯାଉଥିବା କେଳାଟି ଏହି ଦଳର ଲୋକ ଭଳି ଲାଗୁ ନ ଥିଲା । ସବୁଗୁଡ଼ିକ ସାଇକେଲକୁ ଠେଲି ଠେଲି ନିଆଯାଉଥିଲା । ଗୋଟିଏ ବୁଢ଼ା କେଳା ପଛରେ ଗୋଟିଏ ମଲାପରି କୁକୁର ଏକ ନିର୍ଦ୍ଦିଷ୍ଟ ଦୂରତ୍ୱ ରଖି ଚାଲୁଥିଲା । ଏହି କୁକୁର ବନ୍ଧା ହୋଇ ନ ଥିଲା କିନ୍ତୁ ଏକ ଅଦୃଶ୍ୟ ଦଉଡ଼ିରେ ବାନ୍ଧି ହୋଇ ଚାଲୁଥିଲା । ଅଦୃଶ୍ୟ ଦଉଡ଼ିଟି ପୋଷ୍ୟ ହେବାର ଭାଗ୍ୟ ଥିଲା । ଆଉ କୁକୁରଟି ଯେକି ସତ ସତିକା ଦଉଡ଼ିରେ ବନ୍ଧା ହୋଇଥିଲା ସେ ହାତୀ ପାଖକୁ ଆସିବା ମାତ୍ରକେ ଭୁକିବାକୁ ଆରମ୍ଭ କରିଦେଲା । ମଲାପରି କୁକୁରଟା ବି ଡରି ଡରି ଭୁକିବାକୁ ଲାଗିଲା । ଆଉ କିଛି ଦୂର ଗଲା ପରେ ଗୋଟିଏ ଠେଲାଗାଡ଼ିରେ ଯାଉଥିବା ଗୋଟିଏ ଡଙ୍ଗା ଦେଖାଗଲା । ଡଙ୍ଗା ଗୋଟିଏ ପୋଖରୀରୁ ଆଉ ଗୋଟିଏ ପୋଖରୀ ଆଡ଼କୁ ଯାଉଥିବ । ଡଙ୍ଗାରେ ଲାଗିଥିବା ଠେଲାଗାଡ଼ି ଉପରେ ଗୋଟିଏ ପିଲା

ଶୋଇଥିଲା । ଜଣେ ସ୍ତ୍ରୀ ଲୋକ ଓ ତା’ର ସ୍ୱାମୀ ଡଙ୍ଗାକୁ ଠେଲୁଥିଲେ । ତାଙ୍କରି ପିଲା ହୋଇଥିବ । ଡଙ୍ଗା ସିଧା ରଖାହୋଇଥିଲା । ତାକୁ ବାନ୍ଧି ଦିଆଯାଇଥିଲା କିନ୍ତୁ ତଥାପି ହାତୀ ଉପରୁ ମନେ ହେଉଥିଲା ଡଙ୍ଗାଟି ଭାସି ଭାସି ଚାଲିଯାଉଛି । ଆଉ ହାତୀ ମଧ୍ୟ ଉପରୁ ତଳକୁ ଯାଇ ହୁଙ୍କାର ମାରି ମାରି ଆଗେଇ ଯାଉଛି । ଡଙ୍ଗା ସାଙ୍ଗରେ ଚାଲିଲେ କିଛି ବେଳଯାକେ ଚାଲିବାଟା ଭାସିବା ପରି ଲାଗୁଥିବ । ସଡ଼କ ଉପରେ ଚାଲୁ ଚାଲୁ ବୁଡ଼ିଯିବାର ଭୟ ମୋଟେ ଲାଗିବ ନାହିଁ ଏକଥା ନିଶ୍ଚିତ । କିନ୍ତୁ ହାତୀରେ ବସିଥିବା ରଘୁବର ପ୍ରସାଦଙ୍କର ତଳେ ପଡ଼ିଯିବାର ଭୟ ଥିଲା ।

ସ୍କୁଟରର ହର୍ଣ୍ଣ ଶୁଣିକରି ରଘୁବର ପ୍ରସାଦ ଦେଖିଲେ ଯେ ବିଭାଗାଧ୍ୟକ୍ଷ ସାଇକେଲମାନଙ୍କ ଭିତରେ ପଶି କରି ହାତୀକୁ ଟପିଯିବାକୁ ଚାହାନ୍ତି । ଗୋଟିଏ ଘୁଷୁରି ବହୁତ ବିକଳ ରଡ଼ି ଛାଡ଼ିଲା । ବିଭାଗାଧ୍ୟକ୍ଷଙ୍କ ଦୃଷ୍ଟି ଘୁଷୁରି ରଡ଼ିରେ ବିକ୍ଷିପ୍ତ ହୋଇଗଲା । ନଚେତ୍ ସେ ରଘୁବର ପ୍ରସାଦଙ୍କର ନମସ୍କାରକୁ ଦେଖି ପାରିଥାନ୍ତେ ଯାହାକି ତାଙ୍କ ଉଦ୍ଦେଶ୍ୟରେ ଥିଲା । ଗୋଟିଏ ଟ୍ରକ୍ ଆସୁଥିଲା । ଟ୍ରକ୍‌ରେ ବାଲି ଭର୍ତ୍ତି ହୋଇଥିଲା । ନଈର ଚକ୍‌ଚକିଆ ବାଲି ଥିଲା । ବର୍ଷାଦିନେ ନଈ ଭର୍ତ୍ତି ହୋଇଯାଏ ତେଣୁ ତା’ ଭିତରୁ ବାଲି କାଢ଼ିବା କଷ୍ଟ ହୋଇଥାଏ । ସେତେବେଳେ ଖଣିରୁ ବାଲି କଢ଼ାଯାଏ । ଖଣିର ବାଲି ସଫାସୁତୁରା ନଥାଏ । ବର୍ଷା ବେଶୀ ହେଲେ ବାଲି ବହୁତ ମହଙ୍ଗା ହୋଇଯାଏ । ବର୍ଷା ଆସିବାକୁ ଆହୁରି ଦେଢ଼ମାସ ବାକି ଅଛି । ଟ୍ରକ୍‌କୁ ଆସିବାର ଦେଖି ସାଧୁ ହାତୀକୁ ଯେତେଟା ରାସ୍ତାକଡ଼କୁ ନେବାକୁ ଚାହୁଁଥିଲା ହାତୀ ତାହାଠାରୁ ବେଶୀ ବେଶୀ କଡ଼କୁ ଚାଲିଗଲା । ଶିଶୁ ଗଛର ଡାଳରୁ ରକ୍ଷା ପାଇବାକୁ ଦୁହିଁଙ୍କୁ ନଇଁବାକୁ ହେଲା । ଶିଶୁ ଗଛର ଗୋଟିଏ କଅଁଳ ଡାଳକୁ ରଘୁବର ପ୍ରସାଦ ନଇଁ ଯାଉ ଯାଉ ଭାଙ୍ଗି ନେଇଥିଲେ ।

କଲେଜଠାରୁ କିଛି ଦୂରରେ ରଘୁବର ପ୍ରସାଦ ଓହ୍ଲାଇବାକୁ ଚାହୁଁଥିଲେ । କିନ୍ତୁ ସାଧୁ ହାତୀକୁ ଆଣି ପତାକା ଲଗାଇବାର ଖମ୍ବ ପାଖରେ ଠିଆ କଲା । ହାତୀ ବସିବା ମାତ୍ରକେ ସେ ଏପରି ବାଗରେ ଓହ୍ଲାଇଗଲେ ଯେ ସେ ହାତୀରେ ଆସିନାହାନ୍ତି । ଆଗରୁ ହିଁ ସେଠି ଠିଆ ହୋଇଥିଲେ, ଏବଂ ହାତୀଟା ପାଖକୁ ଆସିଗଲା । ଶିଶୁଗଛର ଡାଳ ତାଙ୍କ ପାଖରେ ଥିଲା । ଡାଳରେ ଛୋଟ ଛୋଟ କଢ଼ି ହୋଇଥିଲା । ବିଭାଗାଧ୍ୟକ୍ଷ କିଛି ସମୟ ଆଗରୁ ଆସି ବସିଥିଲେ । ‘‘ଶିଶୁଗଛର ଡାଳ ?’’ ସେ ପଚାରିଲେ ।

‘‘ଆଜ୍ଞା ହଁ ।’’

‘‘ଶିଶୁଗଛରେ ଫୁଲ ଫୁଟିଲାଣି ।’’

‘‘ହଁ ଆମ୍ବ ବଉଳ ବି ବହୁତ ହୋଇଛି ।’’

‘‘ଆମ୍ବ ବଉଳ ଆଉ ମହୁଆ ଫୁଲର ବାସ୍ନା ମୋତେ ଏକାପରି ଲାଗେ ।’’

‘‘ହଁ ସାର୍ । ମୁଣ୍ଡ ବୁଲାଇଦିଏ ।’’

ଆପଣଙ୍କର ?

‘‘ନା, ମନର ।’’

ହଉ ମୁଁ ଦୃଷ୍ଟି ଦେବି ଯେ ବୁଲାଇବାଟା ମନର ନା ମୋର ।

''ବାଉଁଶ ପତର ଯାକ ହଳଦିଆ ପଡ଼ିଯାଇ ଝଡ଼ିବାକୁ ଲାଗିଲେଣି ।'' ରଘୁବର ପ୍ରସାଦ ହାତୀ କଥା କହିବାରୁ ନିଜକୁ ରକ୍ଷା କରୁଥିଲେ । ସେହି ଅବସ୍ଥା ବିଭାଗାଧ୍ୟକ୍ଷଙ୍କର ମଧ୍ୟ । ବିଭାଗାଧ୍ୟକ୍ଷ ରଘୁବର ପ୍ରସାଦଙ୍କୁ ହାତୀରେ ବସିଥିବାର ଦେଖିନେଇଛନ୍ତି ।

ଆମ୍ବଗଛର ଗଣ୍ଡିର ରଙ୍ଗ ଓ ନିମ୍ବଗଛର ଗଣ୍ଡିର ରଙ୍ଗ ଏକାପରି ଦେଖିବାକୁ ଲାଗେ । ରଘୁବର ପ୍ରସାଦ କ୍ଲାସ୍ ନେବାକୁ ଯିବା ଆଗରୁ ବିଭାଗାଧ୍ୟକ୍ଷଙ୍କୁ କହିଥିଲେ । ପଢ଼ାଇସାରି ସେ ଯେତେବେଳେ ଫେରିଲେ ସେତେବେଳେ ବିଭାଗାଧ୍ୟକ୍ଷ ତାଙ୍କୁ କହିଲେ, ''ଆପଣଙ୍କର ଦୁଇଟିଯାକ ହାତରେ ଚକ୍ ଲାଗି ରହିଥାଏ । କ୍ଲାସ୍‌ରୁ ଫେରିବାବେଳେ ହାତ ଛଡ଼ା ମୁହଁରେ ବି ଧଳା ଲାଗି ରହିଥାଏ ।''

''ଆପଣ ତ ଜାଣିଛନ୍ତି ସାର୍ ଯେ ମୁଁ ଦୁଇ ହାତରେ ଲେଖେ ।''

''ହଁ, କିନ୍ତୁ ମୁହଁ ଦେଇ ତ ଲେଖନ୍ତି ନାହିଁ ।''

''ଆଜ୍ଞା ହଁ ।''

ଚାଲିଲେ ଦୁଇଟିଯାକ ପାଦ ଏକାଠି ଚାଲନ୍ତି । ଅଟକି ଗଲେ ଦୁଇପାଦ ଏକାଠି ଅଟକି ଯା'ନ୍ତି । ଦୁଇପାଦ ଏକା ସଙ୍ଗେ ବିଶ୍ରାମ କରନ୍ତି । ରଘୁବର ପ୍ରସାଦ ଲଗାତାର ଲେଖିପାରନ୍ତି । ବାଁ ହାତ ଥକିଗଲେ ଡାହାଣ ହାତଦେଇ ଲେଖନ୍ତି । ସେତିକି ସମୟରେ ବାଁ ହାତଟି ଆରାମ କରିଥାଏ । ବାଁ ହାତ ଆରାମ କଲାପରେ ବାଁ ହାତରେ ଲେଖନ୍ତି ଓ ଡାହାଣ ହାତ ବିଶ୍ରାମ କରେ । ଯଦି ସେ ଏହିପରି କରି ଚାଲିବେ ତେବେ ଏପରି ଏକ ସମୟ ଖୁବ୍ ଶୀଘ୍ର ଆସିବାକୁ ଯାଉଛି ଯେତେବେଳେ କି ଲେଖିବାକୁ ତାଙ୍କଠାରେ କିଛି ହେଲେ ବଳିବ ନାହିଁ ଏବଂ ତାଙ୍କ ହାତ ବି ଥକି ନଥିବ ।

ସ୍ତ୍ରୀ ଯେତେବେଳେ ଜାଣିଲା ଯେ ରଘୁବର ପ୍ରସାଦ ଦୁଇଟିଯାକ ହାତରେ ଲେଖିପାରନ୍ତି, ସେ ଥରଟିଏ ସ୍ୱାମୀଙ୍କୁ ପଚାରିଲା, ''ତୁମ ହାତରେ କ'ଣ ଛଅଟା ଆଙ୍ଗୁଠି ଅଛି ?''

''ନାହିଁ । କିନ୍ତୁ ତୁମେ କେମିତି ଭାବିଲ ଯେ ମୋର ଛଅଟା ଆଙ୍ଗୁଠି ଅଛି ?''

''ତମେ ଦୁଇ ହାତରେ ଲେଖ ତ, ସେଇଥିଲାଗି ପଚାରିଲି ।''

''ଦୁଇ ହାତରେ ଲେଖିବା ଲୋକର କ'ଣ ଛଅ ଛଅଟା ଆଙ୍ଗୁଠି ଥିବା କଥା ?''

''ନାହିଁ, କିନ୍ତୁ ମୋର ସେଇମିତି ମନେହେଲା ।'' ସ୍ତ୍ରୀ ରଘୁବର ପ୍ରସାଦଙ୍କର ଦୁଇ ପାପୁଲିକୁ ନିଜ ଗାଲରେ ଲଗାଇ କହିଲା ।

''ମୋର ଗୋଡ଼ ଆଙ୍ଗୁଠିକୁ ଦେଖିଲ ।'' ସ୍ତ୍ରୀ କହିଲା ।

''ସେଥିରେ କ'ଣ ଛଅଟା ଆଙ୍ଗୁଠି ଅଛି ?''

''ଦେଖନା ।''

''ଠିକ୍ ତ ଅଛି ।'' ସ୍ତ୍ରୀର କୁନି କୁନି ସୁନ୍ଦର ପାଦ । ବୁଢ଼ା ଆଙ୍ଗୁଠି ପାଖରେ ଆଉ ଗୋଟିଏ ଆଙ୍ଗୁଠିର ଜାଗା ଅଛି ।

''ଏଠି କ'ଣ ଆଉ ଗୋଟିଏ ଆଙ୍ଗୁଠି ଥିଲା । ତାକୁ କଟାଇ ଦେଇଚ ?''

''ଜାଗା ତ ଅଛି କିନ୍ତୁ ଆଙ୍ଗୁଠି ବାହାରିନାହିଁ ।''

''ପାଞ୍ଚଟା ତ ଠିକ୍ ଅଛି । ମୋର ପାଞ୍ଚଟା ଆଙ୍ଗୁଠି ପରେ କେତେ ଜାଗା ଅଛି । କିନ୍ତୁ ଷଷ୍ଠ ଆଙ୍ଗୁଠି ତ ବାହାରି ନାହିଁ ।'' ଏହା କହି ରଘୁବର ପ୍ରସାଦ ତାଙ୍କ ହାତର ଗୋଟିଏ ଆଙ୍ଗୁଠିକୁ ବୁଢ଼ା ଆଙ୍ଗୁଠିର ଖାଲି ଜାଗାରେ ନେଇ ରଖିଲେ ।

ସ୍ତ୍ରୀ ତା'ର ଗୋଡ଼ ଆଙ୍ଗୁଠି ଦେଇ ରଘୁବର ପ୍ରସାଦଙ୍କ ହାତର ଆଙ୍ଗୁଠିକୁ ଜୋରରେ ଧରିଲା ।

''ଆଚ୍ଛା ଛାଡ଼ିଦିଅ ।'' ରଘୁବର ପ୍ରସାଦ କହିଲେ । ସ୍ତ୍ରୀ ଛାଡ଼ିଲା । ''ଆରେ'' କହି ସ୍ତ୍ରୀ ରଘୁବର ପ୍ରସାଦଙ୍କ ଗୋଡ଼ ଛୁଇଁଲା । ''କ'ଣ ହେଲା ?'' ସେ ପଚାରିଲେ । ''ଡମଠି ଗୋଡ଼ ବାଜିଗଲା ।'' ରଘୁବର ପ୍ରସାଦ ମୁରୁକି ହସିଲେ । ''ଏମିତି ତ କେତେ ଥର ତୁମ ଗୋଡ଼ ମୋଠି ବାଜୁଥିବ ସେତେବେଳେ କୋଉଠି ଗୋଡ଼ ଛୁଉଁଛ ?''

''ଅନେକ ଦିନ ପରେ ଥରଟିଏ ଗୋଡ଼ ଛୁଇଁନେଲେ ଆଗର ହିସାବ ନିକାଶ ହୋଇଯାଏ ।'' ଲାଜେଇ କରି ସ୍ତ୍ରୀ କହିଲା ।

''ଜାଣିଛ, ଜାମୁ ଗଛରେ ବି ଫୁଲ ଫୁଟେ ?'' ରଘୁବର ପ୍ରସାଦ ପଚାରିଲେ ।

''ହଁ, ଜାଣିଛି ।''

''ମୁଁ ଜାଣି ନ ଥିଲି । ଭାବୁଥିଲି ଜାମୁ ଗଛରେ ସିଧାସଳଖ ଫଳ ହୁଏ ।''

''ତୁମେ କ'ଣ ଏ ବର୍ଷ ଜାମୁର ଫୁଲ ଦେଖିଛ ?''

''ହଁ, ତୁମ ଆସିବାର ଦୁଇ ତିନିଦିନ ଆଗରୁ । ଏଇଲେ ଛୋଟ ଛୋଟ ଫଳ ହୋଇଗଲାଣି ।''

''ମୁଁ ଦେଖିନାହିଁ ।''

''ଖୋଜିକରି କେଉଁ ଗଛ ଦେଖିବା, ଯହିଁରେ ଏବେ ବି ଫୁଲ ଫଳ ହୋଇନଥିବ । ଜାମୁଗଛରେ ଦୃଷ୍ଟିଟା ସିଧା ଫଳ ଉପରେ ପଡ଼େ, ଫୁଲ ଉପରେ ନୁହେଁ ।''

ପରୀକ୍ଷାରେ ସ୍ୟାହୀ କି ପେନ୍ ବଦଳାଇବା ବେଳେ ନିରୀକ୍ଷକଙ୍କର ଅନୁମତି ନେବାକୁ ପଡ଼େ । ଏଇଟି କଡ଼ା ନିୟମ । ସେତେବେଳେ ନିରୀକ୍ଷକଙ୍କୁ ଲେଖିବାକୁ ପଡ଼େ ଯେ ସ୍ୟାହୀ କି ପେନ୍ ବଦଳାଇବାର ଅନୁମତି ଦିଆଯାଇଛି । ପରୀକ୍ଷାର୍ଥୀ ବାଁ ହାତରେ ଲେଖୁ କି ଡାହାଣ ହାତରେ ଲେଖୁ ସେ ବିଷୟରେ ତାର ସ୍ୱାଧୀନତା ଅଛି । ରଘୁବର ପ୍ରସାଦଙ୍କର ବାଁ ହାତର ଅକ୍ଷର ଓ ଡାହାଣ ହାତର ଅକ୍ଷର ମଧ୍ୟରେ ଫରକ୍ ନଥିଲା । ଖୁବ୍ ନିଠେଇକରି ଚାହିଁଲେ ଟିକିଏ ଫରକ ଜଣାପଡୁଥିଲା । ଏହି ଫରକ୍‌ଟା ଠିକ୍ ସେମିତି ଯେପରି ଗଣେଶଙ୍କ ଫଟୋକୁ ବାଁ ପଟରୁ ଚାହଁ କି ଡାହାଣ ପଟରୁ ଯାଇକରି ଦେଖ, ଅଥବା କୋଉଠି ରଖାଯାଇଥିବା ଚଉକୀକୁ ବାଁ ପଟରୁ ଦେଖ କି ଡାହାଣ ପଟରୁ ଦେଖ କିଛି ଫରକ ନଥାଏ । ରଘୁବର ପ୍ରସାଦ ପଢୁଥିବା ବେଳେ ତାଙ୍କର ପରୀକ୍ଷା ବେଳେ ହାତ ବଦଳାଇବାର ଅନୁମତି ନେବାକୁ ପଡୁଥିଲା । ସେତେବେଳେ ସେ ଠିଆ ହୋଇପଡୁଥିବେ ।

''କୁହନ୍ତୁ ।''

''ସାର୍ ମୁଁ ଏଇଲେ ଡାହାଣ ହାତରେ ଲେଖିବାକୁ ଚାହେଁ ।''

''ଆଗରୁ କ'ଣ ବାଁ ହାତରେ ଲେଖୁଥିଲ ?''

''ହଁ, ସାର୍ ।''

"ବାଁ ହାତ କ'ଣ ଭାଙ୍ଗିଗଲା ?"

"ନାହିଁ ସାର୍ । ହାତ ଭଲ ଅଛି । କିନ୍ତୁ ଥକି ଗଲାଣି ? ନିରୀକ୍ଷକ ତ କିଛି ବେଳ ଆସି ନଥିବ ।

ଆପଣ ଡାହାଣ ହାତ ଦେଇ ବି ଲେଖି ପାରନ୍ତି ।"

"ଆଜ୍ଞା ସାର୍ ।" ବେଶୀ ସମୟ କଥା ହେଲେ ପରୀକ୍ଷାର ସମୟ ଯାଉଥିବ ବୋଲି ତାଙ୍କ ସଙ୍ଗେ ଅଧିକ ତର୍କ କରିନଥିଲେ ।

"ବର୍ତ୍ତମାନ ଆପଣ କିଛି ସମୟ ବାଁ ହାତ ଦେଇ ଲେଖୁଥାନ୍ତୁ । ମୁଁ ମୁଖ୍ୟ ନିରୀକ୍ଷକଙ୍କୁ ପଚାରି କରି ଆସେ ।" ଏହା କହି ସେ ସହ ନିରୀକ୍ଷକଙ୍କର ଅନୁମତି ନେଇ ମୁଖ୍ୟ ନିରୀକ୍ଷକଙ୍କ ପାଖକୁ ଯିବେ ।

"ଜଣେ ପରୀକ୍ଷାର୍ଥୀ ବାଁ ହାତରେ ଲେଖୁଲେଖୁ ଏଇ ଲାଗେ ଡାହାଣ ହାତରେ ଲେଖିବାକୁ ଅନୁମତି ମାଗୁଛି ।"

"ବାଁ ହାତରେ ଲେଖୁଲେଖୁ ଡାହାଣ ହାତରେ କାହିଁକି ଲେଖିବାକୁ ଚାହୁଁଛି ।"

"କହୁଛି ବାଁ ହାତ ଥକିଗଲାଣି । ତେଣୁ ଡାହାଣ ହାତରେ ଲେଖିବ ।"

"ଯିଏ ଡାହାଣ ହାତରେ ଲେଖନ୍ତି, ସେମାନେ ତ ଡାହାଣ ହାତରେ ଲେଖିଚାଲନ୍ତି । ହାତ ଥକି ଗଲେ ମଧ୍ୟ ଡାହାଣ ହାତରେ ଇ ଲେଖୁଥାନ୍ତି । ମୁଁ ତ ବର୍ଷ ବର୍ଷ ଧରି ଡାହାଣ ହାତରେ ଇ ଲେଖୁଛି ।"

"ମୁଁ ବି ଡାହାଣ ହାତରେ ଲେଖେ । ଡାହାଣ ହାତରେ ଆଘାତ ଲାଗିଗଲେ ବି ଡାହାଣ ହାତରେ ହିଁ ଲେଖିବାକୁ ହେବ, ନୋହିଲେ ପରୀକ୍ଷା ଦେଇ ପାରିବିନି । ବାଁ ହାତ ପରେ ପୁଣି ଡାହାଣ ହାତ ଦେଇ କେମିତି ଲେଖାଯାଇପାରେ ?"

"ଯାହାଙ୍କର ହାତ ନ ଥାଏ ସେମାନେ ଗୋଡ଼ ଦେଇ ମଧ୍ୟ ଲେଖି ନିଅନ୍ତି ।"

"ହାତରେ ଲେଖା ଆଉ ଗୋଡ଼ରେ ଲେଖା ଭିତରେ ଏତକ ଚିହ୍ନି ହୋଇପାରୁଥିବ ସାର ଯେ ଏଇଟା ହାତରେ ଲେଖା ହୋଇଛି ଆଉ ସେଇଟା ଗୋଡ଼ରେ ଲେଖା ହୋଇଛି । ଯେମିତି ହାତକୁ ଚିହ୍ନି ହୁଏ ଯେ ଏ ହାତ, ଆଉ ଗୋଡ଼କୁ ଚିହ୍ନି ହୁଏ ଯେ ସେଇଟା ଗୋଡ଼ ।"

"ମୁହଁରେ ବ୍ରଶ୍ ଧରିକରି ଚିତ୍ର ଅଙ୍କା ହେବା କଥା ମୁଁ ପଢ଼ିଛି ।"

"ମୁହଁରେ ଅଙ୍କା ହୋଇଥିବା କେଉଁ ଚାଳିଆ ହୋଇଥିଲେ, ତାକୁ ଦେଖିକରି କେମିତି ଜଣାଯିବ ଯେ ଏଇଟା ମୁହଁରେ ଅଙ୍କା ହୋଇଛି ଓ ସେଇଟା ହାତରେ ଅଙ୍କା ହୋଇଛି ।"

"ହୁଏତ ମୁହଁରେ ଭଲ କରି ଅଙ୍କା ହୋଇପାରୁ ନ ଥିବ ।"

"ହାତରେ ବି ତ ଖରାପ ଅଙ୍କା ହୋଇଥାଏ ।"

ସତସତିକା ଚାଳିଆ ମୁହଁରେ ଭଲ ଅଙ୍କା ହେବନାହିଁ । ଛାତ୍ର ତ ସମାନ, ଯେ ବାଁ ହାତରେ ଲେଖୁ କି ଡାହାଣ ହାତରେ ଲେଖୁ, କି ମୋଟେ ନ ଲେଖୁ । ତାକୁ ଅନୁମତି ଦେଇ ଦିଅନ୍ତି । ଏବଂ ରଘୁବର ପ୍ରସାଦଙ୍କୁ ପରୀକ୍ଷାମାନଙ୍କରେ ଦୁଇଟି ଯାକ ହାତରେ ଲେଖିବାର ଅନୁମତି ମିଳି ଯାଉଥିବ ।

ରଘୁବର ପ୍ରସାଦ ଅନ୍ୟ ପିଲାମାନଙ୍କ ଠାରୁ ବେଶୀ ଲେଖୁଥିବ । ସେ ପଢ଼ିବାରେ ଭଲ ଥିଲେ ଓ ଭଲ ନମ୍ବର ରଖି ପାଶ୍ କରିଥିବେ ।

ରଘୁବର ପ୍ରସାଦ ସାଧୁଙ୍କୁ କହିଲେ, "ମୋର ସାନଭାଇ ଆସିବାର ଅଛି, ତାକୁ ବି ଦିନଟାଏ ହାତୀରେ ବସାଇ ବୁଲାଇ ଆଣିବ ।"

ରଘୁବର ପ୍ରସାଦଙ୍କ ସ୍ତ୍ରୀର ମଧ୍ୟ ଇଚ୍ଛାଥିଲା ଯେ ସେ ହାତୀରେ ବସି ବୁଲିବ । ସେ ସ୍ତ୍ରୀର ନାଁ ନେଲେ ନାହିଁ ।

"ମୁଁ ହଠାତ୍ ଦିନେ ଚାଲିଯିବି ।" ସାଧୁ କହିବ ।

"ହାତୀରେ ବସି ଯିବ ନା ?"

ହାତୀ ହଠାତ୍ ଦିନେ ଯାଇ ନପାରେ । ସେ ଯେଉଁଦିନ ଯିବ, ସବୁ ଦିନ ପରି ଯିବ ।

ତା' ପୁଣି କେମିତି ହବ । ତୁମେ ହାତୀ ଉପରେ ଚଢ଼ିଥିବ । ସବୁଦିନ ପରି ହାତୀରେ ଚଢ଼ିଥିବା ଲୋକ ତୁମେ ହଠାତ୍ କେମିତି ଯିବ, ହାତୀ ସାଙ୍ଗରେ ତୁମେ ମଧ୍ୟ ସବୁଦିନ ପରି ଚାଲିଯିବ ।

"ହଁ ମୁଁ ହାତୀରେ ଚଢ଼ି ହଠାତ୍ ଯାଇ ପାରିବି ନାହିଁ ।"

"ଘୋଡ଼ା ଚଢ଼ି ହଠାତ୍ ଯାଇପାରିବ ?"

"ଘୋଡ଼ାରେ ଚଢ଼ି ଟିକେ ବେଶୀ କରି ହଠାତ୍ ଯାଇହେବ । ପୂରାପୂରି ହଠାତ୍ ନୁହେଁ । ରାତିର ଅନ୍ଧାର ଭିତରେ କି ଦିନର ଶୂନ୍‌ଶାନ୍ ରାସ୍ତାରେ କିଛି ହଠାତ୍ ହୋଇହେବ, କିନ୍ତୁ ଆଜିକାଲି ଅନ୍ଧାର ବି ପୂରା ଅନ୍ଧାର ନଥାଏ ଓ ଦିନର ଶୂନ୍‌ଶାନ୍ ରାସ୍ତା ଏକବାରକେ ଶୂନ୍ ଶାନ୍ ନଥାଏ । ମୁଁ ଘୋଡ଼ାରେ ବସି ଚାଲିଯିବାଟା ଦେଖାଯିବ । ଘୋଡ଼ାର ଟାପୁର ଟପ୍ ଟାପ୍ ଶବ୍ଦ ବହୁତ ଦୂରଯାକେ ଶୁଭିବ, ଯେତେ ଶୂନ୍‌ଶାନ୍ । ଦିନ ହୋଇଥିବ କି ରାତି ହୋଇଥିବ ସେତିକି ଦୂରଯାକେ ଶୁଭିବ । ତା'ପରେ ତ ଯିବାଟା ଦିଶିଯିବ ।"

"ହାତୀ ତ ପାଦ ଚିପି ଚାଲେ । ଦଉଡ଼ିଲେ ବି ପାଦ ଚିପି । ତା ବେକରେ ଘଣ୍ଟି ନାହିଁ । ତାର ଯିବାର ଶବ୍ଦ ନଥିବ ।"

"ଏଇଟା ଏତେ ବଡ଼ ଯେ ଲୁଚି ନପାରେ । ସେ ତ ଦେଖାଯିବ । ଘୋଡ଼ାକୁ କିଛିଟା ଲୁଚାଇ ରଖିହେବ । ହାତୀକୁ ମୋଟେ ନୁହେଁ । କିନ୍ତୁ ଘୋଡ଼ାର ଶବ୍ଦ ଆଢୁଆଳ ହେଲେ ବି ଲୁଚେ ନାହିଁ । ଆଢୁଆଳରେ ଠିଆ ହୋଇ ରହିଲେ କେତେ ବେଳ ରହିବା ଆଉ ଯିବା ବା କେମିତି ?"

"ବେଶ ବଦଳି କରି ଚୁପ୍‌ଚାପ୍ ଯାଇ ପାରିବ ନାହିଁ ? କେହି ଚିହ୍ନି ପାରିବେ ନାହିଁ ଓ ମନେହେବ ତୁମେ ହଠାତ୍ ଚାଲିଯାଇଛ ।"

"ମୁଁ ନିଜର ବେଶ ବଦଳେଇ ନେବି କିନ୍ତୁ ଘୋଡ଼ା କି ହାତୀଙ୍କର ବେଶ କେମିତି ବଦଳାଇବି ।"

"ହଁ, ଘୋଡ଼ାର ବେଶ ବଦଳାଇ ହୁଏନା, ହାତୀର ବି ନୁହେଁ । ମଣିଷ ଦାଢ଼ି ନିଶ ଖିଅର ହୋଇ ବଦଳିଯିବ । ଲୁଗାପଟା ବଦଳାଇ ଦେଲେ ବେଶ ବଦଳାଇ ନେବ । ଯୁବକ ବୁଢ଼ା ହୋଇଯାଇପାରିବ । ଛୋଟା, ବଧିର କି ଅନ୍ଧ ହୋଇଯାଇ ବେଶ ବଦଳାଇ ପାରିବ ।"

''ଖୁବ୍ ଭଲ ହୁଅନ୍ତା ଯେବେ ହାତୀକୁ ଓଟ କରିନେଇ କିଛି ବାଟ ଯାଆନ୍ତେ ତା'ପରେ ବଳଦ କରିଦେଇ ଶଗଡ଼ରେ କିଛିବାଟ ଯାଆନ୍ତେ । ହାତୀକୁ ବହୁତ ଛୋଟିଆ ହାତୀ କରି ନେଇ ମୁଣି ଭିତରେ ରଖି ରେଳଗାଡ଼ି କି ବସ୍‌ରେ ବସି ଚୁପ୍ ଚାପ୍ ଚାଲିଯାଇଥାନ୍ତ ।''

''ହଁ କିନ୍ତୁ ମୋତେ ଲୁଚି ଲୁଚି ବନାରସ ଯିବାକୁ ହେଲେ, ମୁଁ ଜଙ୍ଗଲରେ ହାତୀ ସମେତ ଲୁଚି ରହିବି । ଜଙ୍ଗଲ ଭିତରେ ହିଁ ବନାରସ ଆଡ଼କୁ ଚାଲୁଥିବି । ଜଙ୍ଗଲ ତ କିଛି ବାଟ ଯାକେ ରହିବା ପରି ହିଁ ବଡ଼ ହୋଇଥିବ, ବନାରସ ଯାକେ ଯିବା ଭଳିଆ ଏତେ ବଡ଼ ନୁହେଁ । ଜଙ୍ଗଲ ପରେ ଗାଁ, ସହର ବା ଖୋଲା ପଡ଼ିଆ ଆସିଲେ ସେତେବେଳେ ମୁଁ ଲୁଚି ନ-ପାରେ । ଜଙ୍ଗଲ ଭିତରେ ଲୁଚିକରି ବନାରସ ଯିବାର ଏକମାତ୍ର ଉପାୟ ହେଉଛି ଯେ ଜଙ୍ଗଲଟା ମଧ୍ୟ ସାଙ୍ଗେ ସାଙ୍ଗେ ଯାଉଥାଉ ଏବଂ ସେହି ଜଙ୍ଗଲ ଭିତରେ ହାତୀ ଚାଲୁଥାଉ ।''

ତୁମେ ବେଶ ବଦଳାଇ ଦେବ, ତା'ପରେ ହାତୀରେ ବସିକରି ଚାଲିଯିବ । ଲୋକେ ଭାବିବେ ଯେ ହାତୀ ଉପରେ ଚଢ଼ି ଆଉ କେହି ଚାଲିଯାଇଛି ।

ସ୍ତ୍ରୀ ରୋଷେଇ ଲାଗି ଯୋଗାଡ଼ରେ ବ୍ୟସ୍ତ ଥିଲା । ରଘୁବର ପ୍ରସାଦ ଦରଜା ଖୋଲିକରି ପଦାରେ ଠିଆ ହୋଇଥିଲେ । ବିଭାଗାଧ୍ୟକ୍ଷ ଧୋତି ଓ କୁରୁତା ପିନ୍ଧି ସ୍କୁଟରକୁ ହାତରେ ଠେଲି କରି ଆସୁଥିଲେ । ଏହା ଦେଖି ରଘୁବର ପ୍ରସାଦ ତାଙ୍କ ନିକଟକୁ ଗଲେ ।

''କଣ ହେଲା ସାର୍ ?''

''ଷ୍ଟାର୍ଟ କରି କରି ଥକିଗଲି, ଷ୍ଟାର୍ଟ ହେଲା ନାହିଁ । ଆଗରେ ମିସ୍ତ୍ରୀର ଦୋକାନ ମିଳିବ ?''

''ହଁ ଅଛି ତ, ଆସନ୍ତୁ ଆଗ ଚାହା ପିଇ ନିଅନ୍ତୁ ।''

''ଚାହା ଥାଉ । ପାଣି ପିଇବି ।''

''ହଉ, ଆସନ୍ତୁ ।''

ବିଭାଗାଧ୍ୟକ୍ଷ ସାମନା ବାରଣ୍ଡାରେ ଠିଆ ହୋଇ ରହିଲେ । ରଘୁବର ପ୍ରସାଦ ତାଙ୍କ ସ୍ତ୍ରୀଙ୍କୁ ଡାକିଲେ । ସ୍ତ୍ରୀ ସେ ବଖରାରେ ନଥିଲା । କୁଆଡ଼େ ଗଲା ? ବୋଧହୁଏ ଖିଡ଼ିକି ଦରଜା ଦେଇ ସେକଡ଼କୁ ଚାଲିଯାଇଛି ।

''ଆସନ୍ତୁ ସାର୍ – ସେଠିକି ଚାଲନ୍ତୁ ।''

''କୁଆଡ଼େ ?''

''ଝରକା ଦରଜା ସେକଡ଼କୁ । ଚପଲ୍ ଖୋଲି ଦିଅନ୍ତୁ ।''

ବିଭାଗାଧ୍ୟକ୍ଷ ଚପଲ ଖୋଲି ରଘୁବର ପ୍ରାସଦଙ୍କ ପଛେ ପଛେ ବଖରା ଭିତରକୁ ଆସିଲେ । ରଘୁବର ପ୍ରସାଦ ବେଶ୍ ଫୁର୍ତ୍ତି ସହକାରେ ଝରକା ବାଟରେ ଡେଇଁଲେ । ବିଭାଗାଧ୍ୟକ୍ଷ ଝରକା ପାଖକୁ ଆସିବା ମାତ୍ରେ ଶୀତଳ ପବନ ଅନୁଭବ କଲେ । କେଉଁ ବଣୁଆ ଫୁଲର ବାସନା ଆସୁଥାଏ । ବିଭାଗାଧ୍ୟକ୍ଷ ଠିକ୍ ତଳକୁ ଓହ୍ଲାଇବା ମାତ୍ରେ ପକ୍ଷୀଙ୍କ କଳକାକଳି ଶୁଣିବାକୁ ପାଇଲେ । ଆକାଶ ପରିଷ୍କାର । ସୂର୍ଯ୍ୟ ଥିଲେ ବି ଏତେ ଗରମ ନ ଥିଲା । ଦୁହେଁ ଖାଲି ପାଦରେ ଥିଲେ । ସେଠି ଏକପାଦିଆ ରାସ୍ତା ଥିଲା ଓ ରାସ୍ତା ଗୋବରରେ ଲିପା ହୋଇଥିଲା ।

"ଆସନ୍ତୁ ସାର୍ ।" କହି ସେ ଗୋବର ଲିପା ଏକପଦିଆ ରାସ୍ତା ଦେଇଚାଲିଲା । ବିଭାଗାଧ୍ୟକ୍ଷଙ୍କର ମନେହେଲା ସେ ଲମ୍ବାଲାଞ୍ଜିଆ ଶାହ ବୁଲ୍ ବୁଲ୍ ଚଢ଼େଇକୁ ଦେଖିପାରିଲେ ।"

"ବହୁତ ସୁନ୍ଦର ଥାନ ଇୟେ, ରଘୁବର ପ୍ରସାଦ ।" ବିଭାଗାଧ୍ୟକ୍ଷ ଖୁବ୍ ଖୁସୀ ।

"ଆଜ୍ଞା ସାର୍ ସେ କଡ଼େ କିଛି ବାଟ ଗଲେ ତହସିଲ୍ ଅଫିସ ପଡ଼ିବ । ଆଉ ଏକଡ଼େ ଏକବାର ପାଖରେ ବସ୍‌ଷ୍ଟାଣ୍ଡ ଅଛି ।" ରଘୁବର ପ୍ରସାଦ ହାତକୁ ଦେଖାଇ ତାଙ୍କୁ ବୁଝାଇଦେଲେ । ସାନ ସାନ ପୁଅଝିଅ ଲୁଚକାଳି ଖେଳୁଥାନ୍ତି । ଚିରା କମିଜ ପିନ୍ଧିଥିବା ଛୋଟ ପିଲାଟିଏ ଜାମୁ ଗଛ ଉହାଡ଼ରେ ଲୁଚିଥିଲା । ପିଲା ଚାରିଆଡ଼େ ଦିଶି ଯାଉଥିଲେ । ତିନିଟି ଗଛ ଉହାଡ଼ରେ ତିନିଟି ପିଲା ଥିଲେ । ଯାଉ ଯାଉ ଗୋଟିଏ ସରୁ ଛୋଟିଆ ନଈ ପଡ଼ିଲା । ସେଥିରେ ପାଣି ବହୁତ ଅଳ୍ପ ଥିଲା, କିନ୍ତୁ ସ୍ୱଚ୍ଛ ଓ ଥଣ୍ଡା । ସାନଠାରୁ ସାନ ପିଲା ବି ତହିଁରେ ବୁଡ଼ି ପାରିବେ ନାହିଁ । ପାଣି ଏତେ ସଫା ଥିଲା ଯେ ପାଣି ତଳେ ତଳେ ପାଣି ଖାଇ ଭସାଇ ଆଣିଥିବା ନାନା ରକମର ଗୋଲ ଗୋଲ ପଥର ଦେଖାଯାଉଥିଲା ।

"ଯେବେ ପାଣି ପିଇବାକୁ ମନ, ଏଠୁ ପିଇ ନେବେ, ସଫା ପାଣି ।" ନଈ ଭିତରେ ଗୋଟିଏ ଛୋଟିଆ ଝିଅପିଲା, ଖାଲି ଚଡ଼ି ପିନ୍ଧି ଠିଆ ହୋଇଥିଲା । ତା' ହାତରେ ଗୋଟିଏ ପଥର ଥିଲା । ବିଭାଗାଧ୍ୟକ୍ଷ ପାଣି ପିଇବାକୁ ତଳକୁ ଓହ୍ଲାଇଲେ । ଜୋରରେ ବହୁଥିବା ଥଣ୍ଡା ପାଣିର ସ୍ପର୍ଶ ତାଙ୍କ ଗୋଡ଼କୁ ଲାଗିଲା । ସେ ମୋହିତ ହୋଇଗଲେ । ନଇଁ କରି ଆଞ୍ଜୁଳାରେ ପାଣି ନେଇ ସେ ପେଟ ପୂରାଇ ପାଣି ପିଇଲା ।

ଗୋଟିଏ ଆମ୍ବଗଛ ଯହିଁରେ ଟିକେ ଆଗରୁ ବଉଳ ହୋଇଯାଇଥିଲା, ତାହାର ଡାଳର ଅଗରେ ଗୋଛା ଗୋଛା ଆମ୍ବ ଲଟକିଥିଲା । ସେହି ଗଛମୂଳେ ସ୍ତ୍ରୀ ଆମ୍ବ ଗୋଟାଉଥିଲା ଓ ନିଜର କାନିରେ ରଖୁଥିଲା ।

"କ'ଣ କରୁଛ ?"

"ଚଟଣୀ ଲାଗି ଆମ୍ବ ଗୋଟାଉଥିଲି ।"

ବିଭାଗାଧ୍ୟକ୍ଷ ଆସିଛନ୍ତି । ସେତେବେଳକୁ ବିଭାଗାଧ୍ୟକ୍ଷ ପାଣି ପିଇସାରି ତାଙ୍କ ନିକଟକୁ ଆସିଯାଇଥିଲେ । କାନିରେ ଥିବା ଆମ୍ବତକ ଅଣ୍ଟାରେ ଖୋସିଦେଇ ସେ ବିଭାଗାଧ୍ୟକ୍ଷଙ୍କୁ ନମସ୍କାର କଲା । ବିଭାଗାଧ୍ୟକ୍ଷ ମନରେ ଭାବିଲେ - ରଘୁବର ପ୍ରସାଦଙ୍କ ସ୍ତ୍ରୀ କେଡ଼େ ସୁନ୍ଦର ।

"ତୁମେ ଯାଇ ରୋଷେଇ କର । ଆମେ ଏଠି ବୁଢ଼ୀ ମାଆର ଦୋକାନରୁ ଚାହା ପିଇନେବୁ ।"

"ଆସନ୍ତୁ ସାର୍ " କହି ରଘୁବର ପ୍ରସାଦ ଆର ଏକପଦୀ ରାସ୍ତା ଆଡ଼କୁ ଆଗେଇଗଲେ । ସେ ରାସ୍ତାଟି ମଧ୍ୟ ଗୋବରଲିପା ହୋଇଥିଲା । ସେହି ଏକପଦୀ ରାସ୍ତାରେ ଗୋବରର ଶୁଖିଲା ପରସ୍ତ ଭିତର ଦେଇ କେଇଟି ଦୁବଘାସର ସବୁଜ ଗୋଛା ବାହାରିଛି । ଏହି ସବୁଜ ଗୋଛାଗୁଡ଼ିକ ପୂରା ଏକପଦୀ ରାସ୍ତା ଉପରେ ଗୋଡ଼ ଦେବା ପାଇଁ ସାଗୁଆ ମଖମଲ ଖଣ୍ଡପରି ଦିଶୁଥିଲା । ଏ କଡ଼େ ପବନ ଟିକେ ଓଦାଳିଆ ଥିଲା । ଏକପଦୀ ରାସ୍ତାର ବାଁ କଡ଼ରେ, ଏକପଦୀ ରାସ୍ତା କଡ଼େ କଡ଼େ ପଥରର ଟାଇଁ ଥିଲା । ସେହି ଟାଇଁ ମଧ୍ୟରୁ ହିଁ ଉପର ଆଡୁ କେଉଠୁଁ ପାଣିର ଝର ଫୁଟି କରି

ବାହାରୁଥିଲା । ସେଇଠୁ ଜୋର୍ ଶବ୍ଦ ଆସୁଥିଲା । ସାମ୍ନାରେ ଗୋଟିଏ ବରଗଛ ମୂଳର ଛାଇରେ ଚାରିଟି ଖୁଣ୍ଟ ପୋତି ବାଉଁଶର ତାଟି ଉପରେ ଅଖା ପକା ହୋଇଥିଲା । ବରଗଛରେ ଛୋଟ ଛୋଟ ନାଲିଫଳ ହୋଇଥିଲା । ମାଟି ଉପରେ ସେହି ଫଳଗୁଡ଼ାକ ବିଛାଇ ହୋଇ ପଡ଼ିଥିଲା । ଗୋଟିଏ ବଡ଼ କଳାମୁହାଁ ମାଙ୍କଡ଼ ଗଛ ଉପରେ ବସି ବାଛି ବାଛି ବରଗଛର ଫଳ ଖାଉଥିଲା । ଏମାନେ ଯେତେବେଳେ ଚାହା ଦୋକାନ ପାଖରେ ପହଞ୍ଚିଲେ ସେତେବେଳେ କେଉଁ କଣରେ ଲୁଚିଥିବା ଗୋଟିଏ ବଡ଼ ମାଙ୍କଡ଼ ବିଭାଗାଧ୍ୟକ୍ଷଙ୍କ ପାଖ ଦେଇ ନିଜର ଲମ୍ବ ଲାଞ୍ଜ ଟେକି ତରତର ହୋଇ ଦଉଡ଼ି ଯାଇ ବରଗଛ ଉପରେ ଚଢ଼ିଗଲା । ଛୋଟିଆ ଚାହା ଦୋକାନ୍ । ଚୁଲି ଉପରେ ଚାହା ହୁଏ । ବୁଢ଼ୀମା' ଚାଉଳ ପାଛୁଡୁଥିଲା । ''ବୁଢ଼ୀ ମାଆ ଦୁଇଟା ଚାହା ବନାଅ ।'' ସାମନାରେ ଦୁଇଟି ବଡ଼ ବଡ଼ ପଥର ଥୁଆ ହୋଇଥିଲା, ତାହାରି ଉପରେ ଦୁହେଁ ବସିଗଲେ । ବୁଢ଼ୀ ମାଆ ଚୁଲିରେ କାଠଢେଲି ପକାଇ ନିଆଁକୁ ତେଜିଦେଲା ଓ ଗୋଟିଏ ଆଲୁମିନିୟମ୍‌ର ଡେକ୍‌ଚିରେ ମାଠିଆରୁ ପାଣି ଭରି ଚୁଲିରେ ବସାଇଲା । ବୁଢ଼ୀ ମାଆ କାଳିଆ ରଙ୍ଗର, ବାଳ ତକ ପୂରା ଧଳା, ମୁହଁ ଗହୀରିଆ କୁଞ୍ଚ ଚମରେ ପୂର୍ଣ୍ଣ ଥିଲା । ସେ କୁଞ୍ଚଗୁଡ଼ିକ ରେଖାଭଳି । ଦୁଇଟି କପ୍ ପ୍ଲେଟ୍‌ରେ ବୁଢ଼ୀମାଆ ଚାହା ଦେଲା । ଗୋଟିଏ କପ୍‌ର ହ୍ୟାଣ୍ଡେଲ୍ ଭଙ୍ଗାଥିଲା । ଏହି ଭଙ୍ଗା କପ୍‌ଟିକୁ ରଘୁବର ପ୍ରସାଦ ନିଜ ଲାଗି ନେଲେ । ଚାହାରେ ଧୂଆଁଟିଆ ଗନ୍ଧ ଥିଲା । କିନ୍ତୁ ଚାହା ବେଶ୍ ଭଲ । ବିଭାଗାଧ୍ୟକ୍ଷଙ୍କୁ ଚାହା ଖୁବ୍ ଭଲ ଲାଗିଲା ।

ରଘୁବର ପ୍ରସାଦଙ୍କର ଝରକା ତଳେ ତିନିଟି ଏକପଦୀ ଆସି ମିଶିଛନ୍ତି । ଘରକା ବାଟେ ବଖରା ଭିତରକୁ ପହିଲେ ରଘୁବର ପ୍ରସାଦ ପଶିଲେ, ତାଙ୍କ ପରେ ପରେ ବିଭାଗାଧ୍ୟକ୍ଷ । ବିଭାଗାଧ୍ୟକ୍ଷ ବୁଲିପଡ଼ି ଝରକା ବାଟେ ମୁଣ୍ଡ ଗଳାଇ ଗଭୀର ନିଃଶ୍ୱାସ ନେଲେ ଓ ବଖରା ଭିତରକୁ ଆସିଗଲେ । ''ବଡ଼ ସୁନ୍ଦର ଥାନ ଇୟେ, ରଘୁବର ପ୍ରସାଦ । ଏ ଜାଗା କଥା ମୁଁ ଜାଣି ନ ଥିଲି ।''

ଆଜ୍ଞା ସାର୍, ମୁଁ ବି ଜାଣିନଥିଲି । ବାହାଘର ପରେ ଏଠିକି ଆସିବା ପରେ ଟିକିଏ ଜାଣିପାରିଲି । ସୋନସୀ ଆସିବା ପରେ ଭଲକରି ଜାଣିଲି ।

''ସୋନସୀ କିଏ ?'' ବିଭାଗାଧ୍ୟକ୍ଷ ପଚାରିଲେ । ଏହା ଶୁଣି ସୋନସୀ ମୁର୍କି ହସିଲା ।

''ମୋ ସ୍ତ୍ରୀ ସାର୍ ।'' ରଘୁବର ପ୍ରସାଦ କହିଲେ ।

''ମୁଁ ଯାଏଁ, ସ୍କୁଟର ମରାମତି କରିବାକୁ ହବ । ତୁମେ ତ ହାତୀରେ ଯିବ ।''

''ଆପଣ ବି ଚାଲନ୍ତୁ ନା । ଦି ଜଣ ମଣିଷ ତା' ଉପରେ ଖୁସିରେ ବସିପାରିବେ ।''

''ମୁଁ କାହିଁକି ଯିବି ?'' ବିଭାଗାଧ୍ୟକ୍ଷ ଜବାବ ଦେଲେ । ଏହା ଶୁଣି ସ୍ତ୍ରୀ ଭାବିଲା ଯେ ବିଭାଗାଧ୍ୟକ୍ଷଙ୍କ କଥାର ଅର୍ଥ ହେଉଛି, ଆପଣଙ୍କର ହାତୀ, ଆପଣ ଯାଆନ୍ତୁ । ମୋର ଯିବାଟା ଉଚିତ ହେବ ନାହିଁ ।

''ସ୍କୁଟର ଏଇଠି ଠିଆ ହୋଇ ରହୁ । ମୁଁ ମିସ୍ତ୍ରୀକୁ ଡାକି ଆଣୁଛି ।''

''ନା, ମୁଁ ଡାକି ଆଣୁଛି ।''

ବିଭାଗାଧ୍ୟକ୍ଷ ବାହାରକୁ ଆସି ଏକଡ଼ ସେକଡ଼ ଚାହିଁ ଦେଖିଲେ । ରାସ୍ତା ଉପରକୁ ଆସି ରଘୁବର ପ୍ରସାଦଙ୍କ ଘରର ପଛପଟକୁ ଅନୁମାନ କରିବାକୁ ଲାଗିଲେ । ଗହଳ ଗଛବୃକ୍ଷ ଦିଶୁଥିଲା । ସେ ସ୍କୁଟରକୁ ଷ୍ଟାର୍ଟ ଦେଲେ ଯେ ଷ୍ଟାର୍ଟ ହୋଇଗଲା । ମିସ୍ତ୍ରୀ ଡାକିବାକୁ ଦରକାର ହେଲାନାହିଁ । ସ୍କୁଟରରେ

ଯିବାବେଳେ ବି ସେ ରଘୁବର ପ୍ରସାଦଙ୍କ ଘରର ପଛପଟକୁ ଅନାଉଥାନ୍ତି କାଳେ ତାଙ୍କୁ ସେହି ଗଛବୃକ୍ଷ ମଧ୍ୟରୁ ବରଗଛ, ଅଶ୍ୱତ୍ଥ ଗଛ ଦେଖାଯିବ । ବରଗଛ ମୂଳେ ବୁଢ଼ୀ ମାଆର ଚାହା ଦୋକାନ ଦିଶିଯିବ, ବହିଯାଉଥିବା ସରୁ ସୁନ୍ଦର ନଈ ଦିଶିଯିବ । ଏମିତି କିଛି ଦିଶିଲା ନାହିଁ । ଏବଂ ଗୋଟିଏ ନର୍ଦ୍ଦମା ତାଙ୍କୁ ଦେଖାଗଲା, ଯାହାକି ସେ ପହିଲିଥର ଦେଖିବାକୁ ପାଇଲେ । ସେ ବିଚାରିଲେ ଆଜି ସନ୍ଧ୍ୟାରେ ସ୍ତ୍ରୀ ପିଲାଙ୍କୁ ନେଇ ଏ ଆଡ଼କୁ ଆସିବେ ।

ତାହା ପରଦିନ ଛୁଟି ଥିଲା । ସନ୍ଧ୍ୟାବେଳେ ବିଭାଗାଧ୍ୟକ୍ଷ ରଘୁବର ପ୍ରସାଦଙ୍କ ଦରଜା ଖଡ଼ ଖଡ଼ କରି ଚାଲିଲେ, କିନ୍ତୁ କେହି ଶୁଣିଲେ ନାହିଁ । ବିଭାଗାଧ୍ୟକ୍ଷ ତାଙ୍କର ସ୍ତ୍ରୀ ଓ ପିଲାଙ୍କୁ ଆଣିଥିଲେ । ଦୁଇ ଜଣଯାକ ପିଲା ସ୍କୁଲରେ ପଢୁଥିଲେ । ଝିଅ ଦଶ ଏଗାର ବର୍ଷର, ପୁଅ ଆଠ ବର୍ଷର । ତାଙ୍କ ସ୍ତ୍ରୀ ମୁଣ୍ଡରେ ଓଢ଼ଣା ଦେଇ ବିଭାଗାଧ୍ୟକ୍ଷଙ୍କ ପାଖରେ ଠିଆ ହୋଇଥାଏ । ଦରଜା ଖଡ଼ ଖଡ଼ କରିବାରୁ ଗୋଟିକ ପରେ ଗୋଟିଏ ପାଖ ପଡ଼ିଶାର ଦରଜା ଖୋଲିଲା । ଡାହାଣ ପଟର ପଡ଼ୋଶିନୀ ପଚାରିଲା, ''ଶୁଣୁନାହାନ୍ତି ପରା ?'' ''ହଁ'', ବିଭାଗାଧ୍ୟକ୍ଷ କହିଲେ । ବିଭାଗାଧ୍ୟକ୍ଷ ଏପରି ଥକା ଦିଶୁଥିଲେ ଯେପରି ବହୁତ ବେଳ ସେ ପାଦରେ ଚାଲୁଥିଲେ । ପୂରା ପରିବାର ଥକା ହେବା ପରି ଲାଗୁଥିଲା । ବିଭାଗାଧ୍ୟକ୍ଷଙ୍କ ସ୍ତ୍ରୀ ବହୁତ ରୋଗିଣା ଓ ପାତଳୀ ଦିଶୁଥିଲା, ବୋଧହୁଏ ସେ ବେଶୀ ଥକି ଯାଇଥିଲା । ସାନ ଝିଅଟିଏ ଗୋଟିଏ ଥାଳିରେ ଚାରି ଗିଲାସ ପାଣି ନେଇ ଆସିଲା । ଆର କଡ଼ର ପଡ଼ୋଶିନୀ ମଧ୍ୟ ହାତରେ ଦୁଇ ଗିଲାସ ପାଣି ଧରି ଆସି ଯାଇଥିଲା । ଝିଅଟିକୁ ପାଣି ଆଣୁଥିବାର ଦେଖି ସେ ହସି ପକେଇ ନିଜର ଦରଜା ପାଖରେ ଠିଆ ହୋଇଗଲା । ଚାରିଜଣଯାକ ଗିଲାସ ଖାଲି କରିଦେବା ପରେ ପିଲାଟି ପଚାରିଲା, ''ଆଉ ପାଣି ପିଇବେ ?''

''ନା ।'' ବୋଲି ପିଲା ଦି'ଜଣ କହିଲେ । ଗିଲାସ ନେଇ ସେ ମୁରକି ହସି ଚାଲିଗଲା । ଖାଲି ଗିଲାସ ସବୁକୁ ଥାଳିରେ ଏକାଠି କରୁ କରୁ ଝିଅଟି କହିଲା, ''ଖିଡ଼ିକି ପଛକୁ ଚାଲିଯାଇଥିବେ । ସେଇଥିପାଇଁ ଶୁଣି ପାରୁନାହାନ୍ତି ।''

ବିଭାଗାଧ୍ୟକ୍ଷ ନିଜ ସ୍ତ୍ରୀ ଆଡ଼କୁ ଏପରି ଚାହାଣିରେ ଅନାଇଲେ ଯେପରି ସେ ମିଛ କହୁନଥିଲେ । ତାଙ୍କ ସ୍ତ୍ରୀ ଝିଅଟି ଆଡ଼କୁ ଇଙ୍ଗିତ କରି କହିଲା, ''ତାଙ୍କ ଖିଡ଼ିକି ଦେଇ ପଛଆଡ଼କୁ ଯାଇପାରିବା କି, ଟିକେ ପଚାରି ବୁଝ ନା ।''

''ମୁଁ ପଚାରିବି ନାହିଁ ।'' ବିଭାଗାଧ୍ୟକ୍ଷ କହିଲେ । ତା'ପରେ ସେ ପିଲାମାନଙ୍କୁ କହିଲେ, ''ଚାଲ, କାଲି ଛୁଟି ଅଛି କାଲି ପୁଣି ଆସିବା ।'' ''ରହ'' କହି ବିଭାଗାଧ୍ୟକ୍ଷ ଡାହାଣ ଆଡ଼େ ଘର ପଛଆଡ଼କୁ ଗଲାରୁ ପାଖରେ ତିନିଟା ପାଇଖାନା ଥିବାର ଦେଖିବାକୁ ପାଇଲେ, ତେଣୁ ସେ ଆରପଟକୁ ଗଲେ । ସେଠାରୁ ପଛକୁ ଚାହିଁଲେ, ଗୋଟିଏ ଅଳିଆଗଦା ଦିଶିଲା ।

ବିଭାଗାଧ୍ୟକ୍ଷ ସ୍କୁଟର ଉପରେ ବସିଲାବେଳେ ନିଜ ସ୍ତ୍ରୀକୁ କହିଲେ, ''ନଈର ପାଣି ବେଶ୍ ମଧୁର ଆଉ ଥଣ୍ଡା ।''

''ଗିଲାସର ପାଣି ବି ତ ଥଣ୍ଡା ଥିଲା ।'' ଝିଅଟି କହିଲା ।

''ହଁ । ନଈପାଣି ହୋଇଥିବ ।'' ପୁଅ କହିଲା ।

ସ୍କୁଟର ଉପରେ ବିଭାଗାଧ୍ୟକ୍ଷ ବସୁଥିଲାବେଳେ ଝିଅ ବାପାଙ୍କୁ ପଚାରିଲା, ''କଳାମୁହାଁ ମାଙ୍କଡ଼ ଥିଲା ନା ନାଲି ମୁହାଁ ?''

''କଳାମୁହାଁ । ଏଆଡ଼େ ନାଲିମୁହାଁ ମାଙ୍କଡ଼ ନ ଥାନ୍ତି ।''

''ମାଙ୍କଡ଼ ନାଚ ବାଲାଏ ନାଲିମୁହାଁ ମାଙ୍କଡ଼ ନଚାନ୍ତି ।''

ନାଲିମୁହାଁ ମାଙ୍କଡ଼ ଛୋଟ ଓ ଚାଲାକ ବୋଲି ବୋଧେ ସେମାନେ ନାଲି ମୁହାଁ ମାଙ୍କଡ଼ ନଚାନ୍ତି ।

ବିଭାଗାଧ୍ୟକ୍ଷ ତହିଁ ଆରଦିନ ସକାଳୁ ଏକୁଟିଆ ଗୋବରଲିପା ଏକପଦୀ ରାସ୍ତା ଖୋଜି ବାହାରିଲେ । ସେ ତହସିଲ ଅଫିସ ଆଡ଼କୁ ଗଲେ । ସେଠାରେ ଯେଉଁଠି ବେଶୀ ଗଛବୃକ୍ଷ ଦିଶୁଥିଲା ସେଠାକୁ ଗଲେ । ତା'ପରେ ବସ୍‌ଷ୍ଟାଣ୍ଡକୁ ଗଲେ । ବସ୍‌ଷ୍ଟାଣ୍ଡର ପାଖ ଆଖରେ ଏତେ ମଇଳା ଥିଲା ଯେ ସେ ଜାଗାକୁ ଖୋଜିବାକୁ ଇଚ୍ଛା ହେଲାନାହିଁ । ଫେରିଆସି ସେ ରଘୁବର ପ୍ରସାଦଙ୍କ ଘରେ ପହଞ୍ଚିଲେ । ଦରଜା ଭିତରୁ ବନ୍ଦ ଥିଲା । ସେ ଦରଜା ଖଡ଼ ଖଡ଼ କରିଚାଲିଲେ । ପାଖ ଆଖରେ ବି କାହାକୁ ଦେଖିବାକୁ ମିଳିଲା ନାହିଁ । ଛୁଟି ଦିନ ତ, ହୁଏତ ସମସ୍ତେ ନିଜ ନିଜର ଝରକା କବାଟରୁ ଡେଇଁକରି ପଛଆଡ଼େ ଛୁଟି ବିତାଇବାକୁ ବାହାରିଯାଇଛନ୍ତି । ବାଁ କଡ଼ ବଖରାରୁ ଜଣେ ଲୋକ ବାହାରିଲା । ସେ ବିଭାଗାଧ୍ୟକ୍ଷଙ୍କୁ ବିରକ୍ତିରେ ଚାହିଁଲା ।

''କ'ଣ ହେଲା ?'' ସେ ପଚାରିଲା । ସେ ନିଜର ଝରକା କବାଟରୁ ଡେଇଁ କରି ପଛପଟକୁ ଠିକ୍ ଯିବାକୁ ବସିଥିବ । ସେତିକିବେଳେ ଝଞ୍ଜିରର ଆବାଜ ଶୁଣୁଥିବ ଓ ଫେରି ଆସିବାକୁ ହୋଇଥିବ ସେଇଥିପାଇଁ ଚିଡ଼ି ଯାଇଥିବ ।

''ରଘୁବର ପ୍ରସାଦ କାହାନ୍ତି ?''

''କେଜାଣି ।''

''ଦରଜା ଭିତରୁ କିଲା ହୋଇଛି ।''

''ଭିତରେ ଥିବେ ।''

''କେହି ଜବାବ ଦେଉନାହିଁ ।''

''ଗଭୀର ନିଦରେ ଶୋଇଥିବେ ।'' ସେ କହିଲା । ତା'ପରେ ସେ କବାଟ କିଳିଦେଲା । ଡାହାଣ କଡ଼ର ବଖରାରୁ ବି ସେଇ ଛୋଟ ଝିଅଟି ଆସିଲା ଯେ କି ଥାଳିରେ ପାଣି ଗିଲାସ ସବୁ ଆଣିଥିଲା । ବିଭାଗାଧ୍ୟକ୍ଷଙ୍କୁ ଦେଖିକରି ଝିଅଟି ଭିତରକୁ ଯିବାକୁ ଫେରିବାରୁ ବିଭାଗାଧ୍ୟକ୍ଷ ତାକୁ ଅଟକାଇଲେ, ''କୁଆଡ଼େ ଯାଉଛୁ ?''

''ପାଣି ଆଣିବାକୁ ।''

''ମୁଁ ପାଣି ପିଇବିନି । ତୁ ରଘୁବର ପ୍ରସାଦଙ୍କୁ ଡାକିଦେ ।''

ବିଭାଗାଧ୍ୟକ୍ଷ ଚାହୁଁଥିଲେ ଯେ ଝିଅଟି ତା' ନିଜ ଘରର ଝରକା ବାଟେ ବାହାରକୁ ଯାଇ ଯେବେ ରଘୁବର ପ୍ରସାଦ ଘର ଭିତରେ ଶୋଇଥିବେ ତେବେ ତାଙ୍କ ଝରକା ବାଟେ ଡାକି ଉଠାଇ ଦେଉ ।

''ସେ ତ ନାହାନ୍ତି ।'' ଝିଅଟି ଜବାବ ଦେଲା ।

''ଦରଜା ତ ଭିତରୁ କିଲା ହୋଇଛି । କୁଆଡ଼େ ଚାଲିଗଲେ ?''

"ଝରକା ଦରଜାବାଟେ ପଛଆଡ଼କୁ ଚାଲିଗଲେ ।"

"ହଉ, ତେବେ ପଛଆଡ଼କୁ ଯାଏଁ ।" ବିଭାଗାଧ୍ୟକ୍ଷ ବିଡ଼ିବିଡ଼ି କରି କହିଲେ ।

ସେ ସ୍କୁଟର ଆଡ଼କୁ ଯାଉଥିବାବେଳେ ତାଙ୍କର ମନେ ହେଲା ଝିଅକୁ କହିବେ ଯେ ତାଙ୍କର ପଛପଟେ ରଘୁବର ପ୍ରସାଦଙ୍କ ପାଖକୁ ଯିବାର ଅଛି । ଏତକ କହିବାକୁ ବୁଲି ପଡ଼ିଲା ବେଳକୁ ଦେଖିଲେ ଯେ କବାଟ ବନ୍ଦ ଅଛି । ତିନିଟା ଯାକ କବାଟ ବନ୍ଦ । କବାଟ ଖଡ଼ଖଡ଼ କରିବାକୁ ଆଉ ତାଙ୍କର ଇଚ୍ଛା ହେଲାନାହିଁ । ସେ ବହୁତ ନିରାଶ ହୋଇ ଫେରିଲେ । ପଛଆଡ଼ର ସୌନ୍ଦର୍ଯ୍ୟ ବିଷୟରେ ତାଙ୍କର ଏମିତି ସ୍ତ୍ରୀ ଓ ପିଲାଙ୍କ ଆଗରେ ବଖାଣିବା ଉଚିତ୍ ନଥିଲା । ସେ ଗଲା ମାତ୍ରେ ପିଲାଏ ପଚାରିବେ, "ବରଗଛଟା ମିଳିଲା ? ନଈ ମିଳିଲା ? ମାଙ୍କଡ଼ ମିଳିଲା ? ବୁଢ଼ୀମା'ର ଚାହା ପିଇଲ ? ଏକପଦୀଟା ଗୋବରରେ ଲିପା ହୋଇଥିଲା ? ପିଲାଏ ଗୁଲି ଖେଳୁଥିଲେ ?"

ସ୍ତ୍ରୀ ପଚାରିବ, "ଆମ୍ବ କଷି ଝଡ଼ିଥିବ, ଗୋଟେଇ ଆଣିଥିଲେ ଚଟଣୀ ହୋଇଥାନ୍ତା ?" ତା'ପରେ ସେ କହିବେ ଯେ ଖୁବ୍ ଖୋଜିଲେ, ହେଲେ ସେ ଜାଗା ମିଳିଲା ନାହିଁ । ତହସିଲ୍ ଅଫିସ ଆଡୁ ବସ୍‌ଷ୍ଟାଣ୍ଡ ଆଡୁ ଖୋଜିଲେ ହେଲେ ସେ ଜାଗା କୋଉଠି ହେଲେ ମିଳିଲାନାହିଁ । ସିଆଡ଼େ ବହୁତ ଅସନା ଥିଲା । ଘରର ପଛକଡ଼ ଆହୁରି ଅସନା । ପିଲାଏ ଆଉ କିଛି ପଚାରିଲେ ସେ ଚିଡ଼ିଯିବେ । "ହଉ, ଏଇଲେ ତୁମେ ନିଜ ନିଜର କାମ କର । କାହାରି ଘରର ଖିଡ଼ିକି ବାଟେ ରାସ୍ତା କରିବାଟା ଉଚିତ୍ ନୁହେଁ । ରାସ୍ତା ମିଳିଗଲେ ନେଇଯିବି । ବଗିଚା ବୁଲିବାର ଅଧିକ ମନ ହେଲେ ମ୍ୟୁନିସିପାଲଟିର ବଗିଚାକୁ ସନ୍ଧ୍ୟାବେଳକୁ ଚାଲିଯାଅ ।"

ଛୁଟି ଦିନ ଥିଲା । ସକାଳୁ ହିଁ ରଘୁବର ପ୍ରସାଦ ଓ ସୋନସୀ ଝରକା ବାଟେ ଡେଇଁ ପଛକୁ ଗଲେ । ରଘୁବର ପ୍ରସାଦଙ୍କ ହାତରେ ଗୋଟିଏ ଲୁହା ବାଲଟି ଥିଲା, ତହିଁରେ ଧୋଇବାକୁ ଲୁଗାପଟା ଥିଲା । ସବା ଉପରେ ଥୁଆ ହୋଇଥାଏ ନୂଆ ସାବୁନ୍‌ର ଖଣ୍ଡ । ଦୁହେଁ ଖାଲି ଗୋଡ଼ରେ ଥିଲେ । ଗଙ୍ଗା ତେନ୍ତୁଳି ଗଛଠାରୁ ଟିକିଏ ଦୂରରେ ଏକପଦୀ ରାସ୍ତା ହୋଇଛି, ସେଇଥି ପାଇଁ ଗଛ ତଳେ କଣ୍ଟା ପଡ଼ିଥାଏ । ଗଙ୍ଗା ତେନ୍ତୁଳି ନାଲି ହୋଇ ପାଚିଯାଇଛି । ଢେର୍ ଗୁଡ଼ାଏ ଶୁଆ ଡାଳରେ ଉପରୁ ଲଟକି ତାକୁ ଖାଉଥାନ୍ତି । ଖାଉ ଖାଉ ତାଙ୍କ ଥଣ୍ଟରୁ ଫଳ ତଳେ ପଡ଼ିଯାଏ, ଯାହାକୁ ପିଲାଏ ଗୋଟାଇ ନିଅନ୍ତି । ସ୍ତ୍ରୀ ମାଟିରୁ ଗୋଟାଇ କଞ୍ଚା ଫଳ ଖାଇଲା । ଟୁକୁଡ଼ାଏ ସେ ରଘୁବର ପ୍ରସାଦଙ୍କୁ ଦେଲା । ଏକଡ଼େ ମହୁଆ ଗଛର ଧାଡ଼ି ଥିଲା । ମହୁଆର ଧଳାଫୁଲ ତଳେ ଝଡ଼ି ପଡ଼ିଥାଏ । ମହୁଆ ଗଛର ଧାଡ଼ି ସାଙ୍ଗେ ତାଳ ଦେଇ ଗଭୀର ମାଦକ ବାସ୍ନା ମଧ୍ୟ ହାଉଆରେ ଭର୍ତ୍ତି ହୋଇଥିଲା । ଏକପଦୀ ରାସ୍ତାରେ ଚାଲୁ ଚାଲୁ ସେହି ମାଦକ ବାସ୍ନାର ଗହୀର ନିଃଶ୍ୱାସ ନେଇ ସେ ଦୁହେଁ ଯାଉଥାନ୍ତି ।

"ବୁଢ଼ୀ ମା'ର ଚାହା ପିଇବ କି ?"

"ଲୁଗା ଧୋଇ ସାରେ ।"

ନଈରେ ଲୁଗାଧୁଆ କି ଗାଧୁଆ ହୋଇପାରେନା । ଅଗଭୀର, ବହନ୍ତା ତଳର ନଈ ସେ । ତଳ ଖାଲି ସେଇଠି, ତା ଉପରେ ଆଉ କିଛି ଥଳ ନାହିଁ । ଏଇଟି ଗଭୀର ହେବାର ଶଯ୍ୟା ଥିଲା କିନ୍ତୁ ତାର ତଳଟି ଗଭୀର ନଥିଲା । ବର୍ଷା କାଳରେ ବି ଏଥିରେ ବଢ଼ି ହୁଏନାହିଁ । ଆଉ ନଈର ପାଣି

ବର୍ଷାଦିନେ ବି ଗୋଳିଆ ହୁଏନା । ସବୁ ପୋଖରୀର ସ୍ତର ମାଟି ସଙ୍ଗେ ସମତଳ ଥିଲା କିନ୍ତୁ ପୋଖରୀଯାକ ଗଭୀର ଥିଲା । ଏସବୁ ଜାଗା ରଘୁବର ପ୍ରସାଦଙ୍କର ମନର ଜାଗା ଥିଲା । ଗୋବର ଲିପା ଏକପଦୀ ରାସ୍ତା ମନର ଏକପଦୀ ରାସ୍ତା ଥିଲା, ସଫା ସୁତୁରା ଆକାଶ ଥିଲା ଉଡ଼ିବାକୁ ତିଆରି ମନର ଆକାଶ । ଗୋଟିଏ ପୋଖରୀ କୂଳର ପଥର ଉପରେ ସ୍ତ୍ରୀ ଯାଇ ଠିଆ ହୋଇଗଲା । ସେ ଏପରି ଦିହକୁ ଟାଣ କରି ଠିଆ ହୋଇଥିଲା ସେ ତାହାର ସୁପୁଷ୍ଟ ପିଚା ଆହୁରି ଛୋଟ ଦିଶୁଥିଲା । ସ୍ଥିର ପାଣି ଉପରେ କେବଳ ସ୍ତନ ଦୁଇଟିର ଛାଇର କମ୍ପନ ଦିଶୁଥିଲା । ଅଥବା ପାଣିରେ କମ୍ପନ ଥିଲା, ଏକଥା ଠିକ୍ ବୁଝାଯାଉନଥିଲା । ହୁଏତ ସ୍ତନ ଦ୍ୱୟରେ କମ୍ପନ ହେବାରୁ ପାଣିରେ ସ୍ତନ ଦ୍ୱୟର ଛାୟାରେ କମ୍ପନ ହୋଇଛି ଓ ଛାୟାର କମ୍ପନ ହେତୁ ପାଣିରେ ବି । ପଥର ଉପରେ ଠିଆ ହୋଇ ସେ ଏତେ ମାଂସଳ ଓ ଶକ୍ତ ଥିଲା ଯେ ଜଣାଯାଉଥିଲା ସତେକି ସେ ଗୋଟିଏ ପାଦ ଆଗେଇଗଲେ ହିଁ ପୋଖରୀର ସବୁତକ ପାଣି ଏକାଥରେ ଡେଇଁ ଉପରକୁ ଉଠିଯିବ । ସେହି ମୁହୂର୍ତ୍ତରେ ହୃଦୟରେ ଘଟିଥିବା ଉଲ୍‌କାପାତର ପଥରରେ ଗଢ଼ା ପ୍ରତିମାର ଶକ୍ତ ଦେହ ଆହୁରି ଦୂରରୁ ଗରମ ଲାଗୁଥିଲା । ସେ ଯେତେବେଳେ ଶାଢ଼ିକୁ ଜଙ୍ଘ ଯାକେ ଖୋସିଦେଲା ସେତେବେଳେ ମନେହେଲା ପଥରଟା ଚନ୍ଦ୍ରମାର ହୋଇପାରେ କିମ୍ବା ବୃହସ୍ପତିର । ଯେବେ ଚନ୍ଦ୍ରମାର ହୋଇଥିବ ତେବେ ପଥରର ରଙ୍ଗଟା ଠିକ୍ ଯେମିତି ସକାଳେ ଚନ୍ଦ୍ରମା ଦୂରରୁ ଦେଖାଯାଏ ସେଇମିତି ଥିଲା । ସେତେବେଳେ ରଘୁବର ପ୍ରସାଦ ଜୋରରେ ପାଟି କଲେ ।

ସୋନସୀ ! ଦେଖିଲ ମୋ କାନ୍ଧ ଉପରେ ଗୋଟାଏ ଚଢ଼େଇ ବସିଛି ନା କ'ଣ ? ସ୍ତ୍ରୀ ବୁଲି ଚାହିଁଲା ଗୋଟିଏ ଛୋଟିଆ ଗାଢ଼ ନୀଳ ରଙ୍ଗର ଚକଚକିଆ ଫୁଲଚୁକ୍କୀ ଚଢ଼େଇ ଥିଲା— ଶକରଖୋର ।

''ଫୁଲଚୁକ୍କୀ ସେଇଟା ।'' ସୋନସୀ କହିଲା ।

''ମୋ କାନ୍ଧ ଉପରେ କାହିଁକି ବସିଛି ?''

''ତମେ ଜାଣିଥିବ ।''

''ଏଇଲେ ଏ ଚଢ଼େଇ ତମ ପାଖକୁ ଆସୁଛି ।'' ରଘୁବର ପ୍ରସାଦ କହିଲେ ।

''ହଉ !'' ସୋନସୀ କହିଲା ଓ ତାକୁ ଅନିସା କଲା । ରଘୁବର ପ୍ରସାଦ ଭାବିଥିଲେ ଯେ ଚଢ଼େଇଟି ସ୍ତ୍ରୀ ପାଖକୁ ଚାଲିଯିବ । ଚଢ଼େଇ ଗଲାନାହିଁ । ଟିକିଏ ଅପେକ୍ଷା କଲାପରେ ସେ ଆସ୍ତେ ଆସ୍ତେ ନିଜେ ସ୍ତ୍ରୀ ପାଖକୁ ଚାଲିଗଲେ । ଏହିପରି ତାଙ୍କ କାନ୍ଧରେ ବସିଥିବା ଚଢ଼େଇଟି ମଧ୍ୟ ତାଙ୍କ ସଙ୍ଗେ ସଙ୍ଗେ ସ୍ତ୍ରୀ ପାଖକୁ ଚାଲିଗଲା । ସ୍ତ୍ରୀ କାକଳି ରବରେ ରଘୁବର ପ୍ରସାଦଙ୍କୁ କହିଲା, ''ତୁମର ରଙ୍ଗ ବି ଫୁଲଚୁକ୍କୀ ଭଳିଆ ।''

ରଘୁବର ପ୍ରସାଦ ଯେତିକି ଯେତିକି ସ୍ତ୍ରୀ ନିକଟକୁ ଆଗେଇ ଯାଉଥାନ୍ତି ଚଢ଼େଇଙ୍କର କଳରବ ବଢ଼ି ଚାଲିଥାଏ । ମାଙ୍କଡ଼ଙ୍କର କେଉଁଠୁ 'ହୁପ୍ ! ହୁପ୍ !' ଶବ୍ଦ ଶୁଭୁଥାଏ । ଅତି ପାଖରେ କେଉଁଠୁ ହାତୀର ବୋବାଳିର ଶବ୍ଦ ବି ଶୁଭିଗଲା । ରଘୁବର ପ୍ରସାଦଙ୍କ ଗୋଡ଼ର ଅଳ୍ପ ଧକ୍କା ଲାଗି ଲୁଗାପଟା ଭରା ବାଲଟି ଓଲଟି ପଡ଼ିଲା ଓ ସାବୁନର ନୂଆ ଖଣ୍ଡଟା ର୍‌ୟାପର ସମେତ ପୋଖରୀ ଭିତରକୁ ପଡ଼ିଗଲା । ରଘୁବର ପ୍ରସାଦଙ୍କୁ ବୋଧହେଲା ଯେ ସେ ସାବୁନର ଖଣ୍ଡକୁ ପାଣିରେ ବୁଡ଼ିବାର

ଦେଖିଛନ୍ତି । କିନ୍ତୁ ସେ ଭୁଲିଗଲେ । ସ୍ତ୍ରୀକୁ ଧରି ପାଖର ଗୋଟିଏ ଉଚ୍ଚ, ଶୁଖିଲା ଜାଗାକୁ ସେମାନେ ଆସିଗଲେ । ଗୋଟିଏ ଖଟିଆ ଆକାରର ସ୍ଥାନ ସେଠି ଗୋବର ଲିପା ହୋଇଥିଲା । ଧଳା ଖଡ଼ିମାଟିର ଧୂଳି ଦେଇ ଠାଏ ଠାଏ ସେଠି ମୁରୁଜ ଦିଆ ହୋଇଥିଲା । ଯେଉଁଠି ସ୍ତ୍ରୀର ମଥା, ସେଠି ସ୍ୱସ୍ତିକ ଥିଲା । ଯେଉଁଠି ଦୁଇଟି ହାତ ଥିଲେ ସେଠି ଚକ୍ର ଥିଲା । ଯେଉଁଠି ଗୋଡ଼, ସେଠି ଶଙ୍ଖ ଲେଖା ଥିଲା । କମଳ ଫୁଲର ଚିତାଟି ସ୍ତ୍ରୀ ଶୋଇବାରୁ ଲୁଚି ଯାଇଥିଲା । ଟିକିଏ ଦୂରରେ ଗୋଟିଏ ମାଛ ଅଙ୍କା ହୋଇଥିଲା । ଚୁପ୍‌ଚାପ୍ ବାତାବରଣ । ଶକରଖୋର ଚଢ଼େଇଟି ରଘୁବର ପ୍ରସାଦଙ୍କ ପିଠି ଉପରେ ଡେଣା ଫଡ଼ ଫଡ଼ କରି ବସି ରହିଥିଲା । ସ୍ତ୍ରୀର ଦୃଷ୍ଟି ସାମନାରେ ସକାଳର ସୂର୍ଯ୍ୟ ଉପରୁ ଖସି ଆସିଲା, ତଥାପି ତା'ର ଆଖିରେ ଲୁହ ଭରିଗଲା । ସେ ଯେତେବେଳେ ପୁଣି ଆଖି ଖୋଲିଲା, ସେତେବେଳକୁ ଦୃଷ୍ଟିର ଜଳ ଦ୍ୱାରା ସୂର୍ଯ୍ୟ ଚନ୍ଦ୍ରମା ହୋଇ ଯାଇଥିଲା, ଆଉ ସନ୍ଧ୍ୟା ହୋଇଯାଇଥିଲା । ତା'ପରେ ରାତି ହୋଇଗଲା । ସେମାନେ ଉଠିଲାବେଳେ ଏପରି ଉଠିଲେ ସତେକି ତହିଁ ଆରଦିନର ସକାଳ ହୋଇଯାଇଥିଲା । ଶକରଖୋର ଚଢ଼େଇଟି ଉଡ଼ିଯାଇଛି ।

ସ୍ତ୍ରୀ କହିଲା, ''ଡେରି ହୋଇଗଲା, ମୋର ଲୁଗା ଧୋଇବାକୁ ଅଛି ।''

''ସାବୁନ ତ ପୋଖରୀରେ ପଡ଼ିଗଲା ।''

''ଆରେ !'' କହି ସ୍ତ୍ରୀ ପୋଖରୀ ପାଖକୁ ଦଉଡ଼ିଗଲା । ବାଲ୍‌ଟିକୁ ସେ ସିଧା ରଖିଦେଲା । ରଘୁବର ପ୍ରସାଦଙ୍କ କମିଜ ବାହାରିଯାଇ ପଥର ଉପରେ ପଡ଼ିଥିଲା । ତାହାରି କଡ଼ରେ ସାବୁନ୍‌ର ଖଣ୍ଡଟି ଥିଲା । ପୂରା ଓଦା ହୋଇଯାଇଥିଲା ।

''ସାବୁନ୍ ଅଛି !'' ସ୍ତ୍ରୀ କହିଲା । ସ୍ତ୍ରୀ ସ୍ଥିର ପାଣି ଭିତରେ ଦେଖିଲା ସେହି ପାଣି ଭିତରେ ମୁରୁଜର ସ୍ୱସ୍ତିକ, ଶଙ୍ଖର ଚକ୍ର, ମାଛ ଦିଶିଗଲା । ଖଡ଼ିମାଟିର ଚୁନାର ମୁରୁଜ ମାଛଟି ପହଁରୁଥାଏ । ସେଇ ଭାସିଯାଉଥିବା ସାବୁନ ଖଣ୍ଡକୁ ବାହାରକୁ କାଢ଼ିଥିବ । ସାବୁନ୍ ଦେଖିକରି ରଘୁବର ପ୍ରସାଦ ଆଶ୍ଚର୍ଯ୍ୟ, ଚକିତ ହୋଇଯାଇଥିଲେ । ''ବୋଧେ ଗୋଟିଏ ବଡ଼ ମାଛ ଖାଇବା ଜିନିଷ ଭାବି ସାବୁନକୁ ଧରିଥିବ ପୁଣି ଏଇ କୂଳରେ ଛାଡ଼ି ଯାଇଥିବ ।''

''ହଁ, ମୁରୁଜର ମାଛଟି ସାବୁନକୁ କାଢ଼ିଥିବ । ଚିତାର ମାଛଟିକୁ ମୁଁ ପାଣିରେ ପହଁରୁଥିବାର ଦେଖିଥିଲି ।''

''ଆଚ୍ଛା !'' ଆଶ୍ଚର୍ଯ୍ୟ ହୋଇ ରଘୁବର ପ୍ରସାଦ କହିଲେ । ସେ ପୋଖରୀର ପାଣିକୁ ଅପଲକ ହୋଇ ଚାହିଁ ରହିଲେ । ତାଙ୍କୁ ମୁରୁଜରେ ଅଙ୍କା କମଳ ଫୁଲ ଦେଖାଗଲା । ''ମୋତେ ତ କମଳ ଫୁଲ ଦିଶୁଛି ।'' ରଘୁବର ପ୍ରସାଦ କହିଲେ ।

''ମୋତେ ବି ଦିଶୁଛି ।'' ସ୍ତ୍ରୀ ଗୁଡ଼ାଏ ଫୁଟିଲା କମଳ ଫୁଲକୁ ଚାହିଁ କହୁଥିଲା ।

''ଏ ସତ ସତକା କମଳ ନୁହେଁ ।'' ରଘୁବର ପ୍ରସାଦ କହିଲେ ।

''କୋଉ କମଳ ?'' ସ୍ତ୍ରୀ ପଚାରିଲା ।

''ଏ କମଳଟି ସେହି ଗୋବର ଲିପା ଜାଗାରେ ଅଙ୍କା ଥିଲା ।''

''ମାଛ ବି ସେଇଠି ଥିଲା ।''

"ହଁ ।" ରଘୁବର ପ୍ରସାଦ କହିଲେ । ସେ ପୋଖରୀରେ ପଶି ଗାଧୋଇଲେ । ଗାଧୋଇବାର ପାଣି ଚହଲିବାରୁ ପୋଖରୀରେ ଫୁଟିଥିବା କମଳଯାକ ଆସ୍ତେ ଆସ୍ତେ ଦୁହିଁଙ୍କ ଚାରିକଡ଼େ ଜମା ହୋଇଗଲା । କିନ୍ତୁ ମନେ ହେଉଥିଲା ସତେ ଯେମିତି ତାଙ୍କର ଗାଧୋଇବା ଫଳରେ ଧଳା କମଳ ଫୁଲର ସଂଖ୍ୟା ବଢ଼ିଯାଉଛି । ଆଉ ଫୁଲର ପ୍ଲାବନ ତାଙ୍କର ନିକଟକୁ ଆସିଯାଉଛି । ଏହାରି ଭିତରେ ବୁଢ଼ୀ ମାଆ ଚାହା ଦି'କପ୍ ନେଇ ଆସି ସେହି ଗୋବରଲିପା ଜାଗାରେ ଥୋଇଦେଲା । ଯେଉଁଠି ମୁରୁଜଯାକ ଲିଭିଯାଇଥିଲା । ସେଠାରୁ ସେ ଡାକିଲା, "ବାହାରକୁ ଉଠିଆସ, କମଳରେ ଛନ୍ଦି ହୋଇଯିବ ।

ଦୁହେଁ ବାହାରି ଆସିଲେ । ସ୍ତ୍ରୀ ବାଲ୍‌ଟିରୁ ପଡ଼ିଥିବା ରଘୁବର ପ୍ରସାଦଙ୍କ କମିଜ୍‌ରେ ତା' ଦିହ ପୋଛିହେଲା । ରଘୁବର ପ୍ରସାଦ ବାଲ୍‌ଟିରେ ଥିବା ସ୍ତ୍ରୀର ଶାଢ଼ିରେ ନିଜ ଦେହକୁ ପୋଛି ହେଲେ । ଭଙ୍ଗା କପ୍‌ଟିକୁ ରଘୁବର ପ୍ରସାଦ ନେଲେ । ଚାହା ପିଇସାରି ସ୍ତ୍ରୀ ଲୁଗା ଧୋଇଲା । ରଘୁବର ପ୍ରସାଦ କପ୍ ନେଇ ଚାଲିଗଲେ । ତା'ପରେ ସେ ପିଲାମାନଙ୍କ ସାଙ୍ଗରେ ଗଙ୍ଗା ତେନ୍ତୁଳି ତୋଳିବାକୁ ଲାଗିଲେ ।

ସେହିଦିନ ଦିପହରକୁ ରଘୁବର ପ୍ରସାଦ ଖୁସିରେ ଚିତ୍କାର କରୁଥିବା ପିଲାଙ୍କ ସ୍ୱର ଶୁଣିଲେ । ତା' ପରେ ତାଙ୍କର ମନେହେଲା ଯେ ପିଲାଏ ନିଜ ନିଜ ଭିତରେ ଝଗଡ଼ା ବି କରୁଛନ୍ତି । ସେ ଝରକା ବାଟେ ଉଙ୍କିମାରିଲେ । ଚାରିଟି ଛୋଟ ଛୋଟ ଝିଅ ଥିଲେ । ତାଙ୍କ ଭିତରୁ ଗୋଟିଏ 'ଗୁଡ଼ିୟା' ବି ଥିଲା । ଦୁଇଜଣ ଝିଅ ଇଟାରେ ଇଟା ରଗଡ଼ି କରି ଇଟାର ନାଲି ଚୁରା ଗୋଟିଏ ବିଛା ଯାଇଥିବା ଖବର କାଗଜରେ ଜମାଉଥିଲେ । ଗୁଡ଼ିୟା ଆଉ ଆର ଝିଅଟି ଖଡ଼ିମାଟିର ଢେଲା ରଗଡ଼ି କରି ଧଳା ଚୁନା ବନାଉଥିଲେ । ରଘୁବର ପ୍ରସାଦ ପଚାରିଲେ, "ବ'ରେ ହ୍ରସ୍ୱ ଉ କାର ନା ଗ'ରେ ?"

"ମୁରୁଜ କେହି ବିଗାଡ଼ି ଦେଇଛି ।" ଗୁଡ଼ିୟା କହିଲା ।

"କେଉଁ ମୁରୁଜ ?"

"ପୋଖରୀ କୂଳର ।"

"ମୁଁ ବିଗାଡ଼ିନାହିଁ । ସୋନ୍‌ସୀ ଇଆଡ଼େ ଆସ ।"

"କ'ଣ ହେଲା ?"

"ୟାଙ୍କର ପୋଖରୀ ପାଖର ମୁରୁଜ କିଏ ବିଗାଡ଼ି ଦେଇଛି ।" ରଘୁବର ପ୍ରସାଦ କହିଲେ ।

"ମୁଁ ବିଗାଡ଼ି ନାହିଁ ।" ସୋନସୀ କହିଲା ।

"ମୁଁ ବି ବିଗାଡ଼ି ନାହିଁ ।" ରଘୁବର ପ୍ରସାଦ କହିଲେ ।

"ବୁଢ଼ୀ ମାଆର ମାଙ୍କଡ଼ ବିଗାଡ଼ି ଥିବ ।" ଜଣେ ଝିଅ କହିଲା । ଯେ କି ଗୋଟିଏ ନାଲି ରଙ୍ଗର ଚିରା ଲହଙ୍ଗା ଆଉ ସାଗୁଆ ରଙ୍ଗର ପୋଲ୍‌କା ପିନ୍ଧିଥିଲା ।

"ହଁ । ସେଇ ବିଗାଡ଼ିଛି ।" ସୋନସୀ କହିଲା ।

"ମୁଁ ପୁଣି କରିଦେବି ।" ଗୁଡ଼ିୟା କହିଲା ।

"ହଁ ।" ସୋନସୀ କହିଲା ।

"ଆମେ ପୁଣି ବିଗାଡ଼ି ଦେବୁ !" ରଘୁବର ପ୍ରସାଦ ସ୍ତ୍ରୀକୁ ଆସ୍ତେ କରି କହିଲା । ସ୍ତ୍ରୀ ରଘୁବର ପ୍ରସାଦଙ୍କୁ କହିଲା, "ଆଜି ଛୁଟି । ହାତୀର ବି କ'ଣ ଛୁଟୀ ହୋଇଥିବ ? ସେ କ'ଣ କଲେଜ ଯାଏ ?" ରଘୁବର ପ୍ରସାଦ ଶୁଣିଲେ, ଝରକା ସେକଡ଼କୁ ଆମର ହାତୀ କେମିତି ଯିବ ?

ସେ କହିଲେ, "ଯିବନି ତ କେମିତି କାମ ଚଳିବ ?"

ସ୍ତ୍ରୀ କହିଲା, "ଝରକା ଦେଇ ହାତୀ ଯାଇ ପାରିବନି ।"

"ହଁ ।" ରଘୁବର ପ୍ରସାଦ କହିଲେ ।

ସ୍ତ୍ରୀ ଶୁଣିଲା, "ମନର ଝରକା ତ । ହାତୀ କାହିଁକି ଯାଇ ପାରିବନି ?"

ସ୍ତ୍ରୀ କହିଲା, "ମନର ଝରକା ଆଉ ଟିକିଏ ବଡ଼ ହୋଇଥିଲେ ଭଲ ହୋଇଥାନ୍ତା । ମନର ହାତୀ ବଡ଼ ହୁଏ ।"

"ତମେ ତା ବିଷୟରେ ଚିନ୍ତିତ ହୁଅନା ।"

"ମୋର ମନ ହେଉଥିଲା ଯେ ସେଠି ହାତୀ ଥାନ୍ତା । ତମେ ତାହା ଉପରେ ସବାର ହୋଇଥାନ୍ତ । ଆମ୍ବ ପାଚିଲେ ମୁଁ ହାତୀ ଉପରେ ବସିଯିବି । ହାତୀ ଉପରେ ଠିଆ ହୋଇ ଆରାମରେ ଆମ୍ବ ତୋଳିଥାନ୍ତେ ।"

"ତମର ସେଇ ଆମ୍ବର ଚିନ୍ତା ।"

"କ'ଣ ହେଲା, ମାଗଣାରେ ଆମ୍ବ ମିଳିଯିବ । ହାତୀ ବି ପେଟ ପୂରାଇ ଆମ୍ବ ଖାଇ ପାରିବ ।"

"ଗୋଟିଏ ବୋଲି ତ ଆମ୍ବ ଗଛ ଅଛି ।"

"ବହୁତ ଗଛ ହେବ । କଦଳୀର ବଣ ହେବ । କବାଟ ଖୋଲିଦେଲେ ହାତୀ କଦଳୀ ବଣକୁ ଝରକା ବାଟରେ ଶୁଂଘିଦେବ ଆଉ ଝରକା ବାଟେ ଚାଲିଯିବ ।"

"କେମିତି ଯିବ ? ଝରକାର କାନ୍ଥ ଭାଙ୍ଗି ଯାଇ ପାରିବ ?"

"ମାହୁନ୍ତକୁ କହିବା ସେ ତହସିଲ ଅଫିସ୍ ଆଡୁ କି ବସ୍‌ଷ୍ଟାଣ୍ଡ ଆଡୁ ହାତୀକୁ ନେଇଯାଉ ।" ରଘୁବର ପ୍ରସାଦ ପୁଣି କହିଲେ । ହେଲେ ସ୍ତ୍ରୀ ଶୁଣିପାରିଲା ନାହିଁ । ତା'ର ମନେ ହେଲା ରଘୁବର ପ୍ରସାଦ କିଛି କହିନାହାନ୍ତି ।

ରଘୁବର ପ୍ରସାଦ ହାତୀକୁ ଅନିସା କରିଛନ୍ତି । କଲେଜ ଯିବାର ବେଳ ହେଲାଣି । ହାତୀ ଆସିନାହିଁ । ସେ ସଡ଼କର ଦୁଇପଟକୁ ଚାହିଁଲେ । ଦୂର ଯାଏ ହାତୀର ଦେଖାନାହିଁ । ହୁଏତ ସାଧୁ ବେମାର ହୋଇଛି ? କି ସାଧୁ ହାତୀରେ ବସି କେଉଁଆଡ଼େ ଚାଲିଯାଇଛି । ହଠାତ୍ ଯାଇନଥିବ, ହଠାତ୍ ନ ଯାଇଥିଲେ ହେଲେ କହିକରି ଯାଇଥାନ୍ତା । ସେ ବଖରା ଭିତରକୁ ଗଲେ ଓ ସ୍ତ୍ରୀକୁ କହିଲେ, "ହାତୀ ଆସିନାହିଁ, ଏଇଲେ ମୁଁ ଟେମ୍ପୋରେ ଯିବି ।"

"ଟେମ୍ପୋରେ ଗଲେ ତ ଜଲଦି ପହଞ୍ଚିଯିବ । ଟିକେ ରହିଯାଅ ।"

"କାହିଁକି ?"

"କାଲି ଯୋଉ ଲୁଗାପଟା ଧୋଇଥିଲି ତାକୁ ଶୁଖାଇବାକୁ ବୁଦାବାଡ଼ ଉପରେ ପକାଇ ଦେଇଥିଲି । ଆଣିବାକୁ ଭୁଲିଯାଇଛି । ତମେ ଯାଇ ନେଇଆସ ।"

''ଆରେ ! କିଏ ନେଇଯିବ ନାହିଁ ?''

''ଏଠି କିଏ ନବ ?''

''ମାଙ୍କଡ଼ ! ନିଜେ ପିନ୍ଧିବାକୁ ମୋର କମିଜ ଆଉ ପେଣ୍ଟ୍ ନେଇଯିବେ ।''

''ତାଙ୍କ ମାପର ନୁହେଁ, ଯାଅ ।'' ସ୍ତ୍ରୀ ରଘୁବର ପ୍ରସାଦଙ୍କୁ ଝରକା ଆଡ଼କୁ ଠେଲିଦେଲା ।

ଜୋତା ଖୋଲି ରଘୁବର ପ୍ରସାଦ ଡେଇଁପଡ଼ିଲେ ଓ ଖାଲିଗୋଡ଼ରେ ଦଉଡ଼ିଗଲେ । ବୁଦା ଉପରେ ଛନ୍ଦାଛନ୍ଦି ଅବସ୍ଥାରେ ଲୁଗାପଟା ଗୋଟାଇ ସେ ଫେରିଲେ । ବୁଢ଼ୀମାଆ ଖଟିଆ ଉପରେ କନା ପକାଇ ବଡ଼ି ବସାଉଥିଲା । ଭଲ ଖରା ପଡ଼ିଛି ।

''ବୁଢ଼ୀମା,' ଲୁଗାପଟା ନେବାକୁ ଆସିଥିଲି ।'' ପାଟିକରି ରଘୁବର ପ୍ରସାଦ କହିଲେ ।

ବୁଢ଼ୀମାଆ ଶୁଣିଲା; ବଡ଼ି ବସାଇବାକୁ ସୋନସୀକୁ ବି ଡାକି ଆଣିଥାନ୍ତ ।

ଏହି ବାକ୍ୟଟି ରଘୁବର ପ୍ରସାଦ କହିବାକୁ ଚାହୁଁଥିଲେ, କିନ୍ତୁ ଦଉଡୁ ଦଉଡୁ କହିବାକୁ ଭୁଲି ଯାଇଥିଲେ, ଯାହାକି ବୁଢ଼ୀମା ଶୁଣି ପାରିଥିଲା ।

ରଘୁବର ପ୍ରସାଦ ଯେତେବେଳେ ଝରକା ବାଟେ ଭିତରକୁ ଆସିଲେ, ସେତେବେଳେ ସ୍ତ୍ରୀ କହିଲା, ''ହାତୀ ଆସିଗଲାଣି ।'' ''ଆରେ !'' ରଘୁବର ପ୍ରସାଦ କହିଲେ । ସେ ଜଲଦି ଜୋତା ପିନ୍ଧିଲେ । ରବର ସୋଲର ଜୋତା ଥିଲା, କିନ୍ତୁ ସାଧୁ କେଜାଣି କାହିଁକି ଜୋତା ଖୋଲି ହାତୀ ଉପରେ ବସିବାକୁ କହିଲା । ସେ ତରତର ହୋଇ ଜୋତା ଖୋଲିଦେଲେ । ମୋଜା ପିନ୍ଧିଥିଲେ । ଗୋଟିଏ ହାତରେ ଜୋତା ଧରି ସେ ହାତୀ ପାଖକୁ ଗଲେ । ହାତୀ ତାଙ୍କୁ ଦେଖି ବସି ପଡ଼ିଥିଲା । ହାତୀରେ ଚଢ଼ିବା ପରେ ସେ ସାଧୁକୁ ପଚାରିଲେ, ''ମୋତେ ଦେଖି କ'ଣ ହାତୀ ବସିପଡ଼ିଥିଲା ?''

''ନା, ମୁଁ ବସାଇଥିଲି ।'' ସାଧୁ କହିଲା । ହାତୀ କଲେଜ ଆଡ଼କୁ ଯାଉଥିଲା । ସ୍ତ୍ରୀକୁ ଚାହିଁବାକୁ ସେ ଭୁଲିଯାଇଥିଲେ ।

''ଆଗେ ତ ମୁଁ ଜୋତା ପିନ୍ଧି ବସୁଥିଲି ।'' ରଘୁବର ପ୍ରସାଦ କହିଲେ ।

ମୁଁ ବାରଣ କରିବାକୁ ଭୁଲିଯାଇଥିଲି ।

ଜୋତା ପିନ୍ଧି ବସିବା ଉଚିତ ନୁହେଁ, କିନ୍ତୁ ମୋ ଜୋତାରେ ନାଲ ଲଗାହୋଇନାହିଁ । ସାଧୁ ତା'ପରେ କିଛି କହିଲା ନାହିଁ । କିଛି ବେଳ ପରେ ସେ କହିଲା, ''ହାତୀକୁ ସମ୍ମାନ ଦେବା ଉଚିତ ।''

''ହଁ । ହାତୀକୁ ସମ୍ମାନ ଦେବା ଉଚିତ । ତମକୁ ଟିକିଏ ଉଦାସିଆ ଲାଗୁଛି ?'' ରଘୁବର ପ୍ରସାଦ ପଚାରିଲେ ।

''ହଁ । ମୋର ଯିବାର ଅଛି ବୋଲି ମୁଁ ଉଦାସ ଅଛି ।''

''କେତେ ଦିନ ଲାଗି ଯିବ ?''

''କିଛିଦିନ ପାଇଁ । ତା'ପରେ ମୁଁ ଫେରି ଆସିବି ।''

''କୋଉଠିକି ଯିବ ?''

''ଘରକୁ ଯିବି ।''

''ଘରେ କିଏ ଅଛନ୍ତି ?''

''ସମସ୍ତେ ଅଛନ୍ତି । ସ୍ତ୍ରୀ ଅଛି ।''

''କେବେ ଯିବ ?''

''ହଠାତ୍ କେବେ ବି । କିନ୍ତୁ ମୁଁ ଘରକୁ ଫେରୁନାହିଁ । ମୁଁ ଏଠିକି ଫେରି ଆସିବି ।''

ଝରକାଠାରୁ ଆକାଶ ଦେଖାଯାଏ, ସେଥିପାଇଁ ଝରକାରୁ ଡୁଙ୍ଗୁଥିବା ପିଲାମାନେ ଆକାଶକୁ ଡୁଙ୍ଗୁଥିବା ପରି ଦିଶୁଥାନ୍ତି । ସେ ଛୋଟ ଛୋଟ ଦେବତାଙ୍କ ପରି ଝରକା ବାଟେ ଡେଇଁକରି ଭିତରକୁ ଆସିବାକୁ ଚାହୁଁଥିଲେ । ଇଟାରେ ବନ୍ଧା ବେଦୀଟି ଏତେ ଉଚ୍ଚ ନୁହେଁ । ପିଲାଯାକ ଏତେ ବଡ଼ ହୋଇନାହାନ୍ତି ।

ସ୍ତ୍ରୀ ସୂତାର ନାଲି ଶାଢ଼ି ପିନ୍ଧିଥାଏ । ଶାଢ଼ିରେ ଟିକେ ଖୁଞ୍ଚ ଲାଗିଯାଇଥିଲା । ତଳପଟର ଏରୁଣ୍ଡି ଉପରେ ଗୋଟିଏ କୀଳା ଟିକିଏ ବାହାରି ପଡ଼ିଛି, ଝରକା ବାଟେ ଡେଇଁବା ସମୟରେ ଶାଢ଼ି ଚିରିଯାଇଥିଲା ।

''ଶାଢ଼ି ତ ଚିରିଗଲା ।'' ରଘୁବର ପ୍ରସାଦ କହିଲେ ।

''ହଁ, ଆଜି ସିଲେଇ କରିଦେବି ।''

ରଘୁବର ପ୍ରସାଦ ଝରକା ପାଖକୁ ଆସିଲେ । ବାହାରିଥିବା କଣ୍ଟାକୁ ଦେଖି ସେ ସେହିପଟରେ ଠିଆ ହୋଇଥିବା ପିଲାର ମଥାରେ ସ୍ନେହରେ ହାତ ବୁଲାଇ କହିଲେ, ''କଣ୍ଟା ବାଡ଼େଇବା ପାଇଁ ଗୋଟେ ପଥର ଦବୁ କି ?''

''ହଁ ।'' ପିଲାଟି ଖୁସି ହୋଇ କହିଲା । ପିଲା ଗୋଟିଏ ଛୋଟିଆ ପଥର ଖଣ୍ଡ ଉଠାଉଥିଲା ।

''ସେଇଟା ନୁହେଁ । ତା ପାଖରେ ସେଇ ଯେଉଁ ଗୋଲ ବଡ଼ ପଥର, ସେଇଟା ।'' ରଘୁବର ପ୍ରସାଦ କହିଲେ । ଦୁଇ ହାତରେ ପଥର ଉଠାଇ ପିଲାଟି ଝରକା ପାଖକୁ ଆସିଲା । ପଦାକୁ ନଇଁପଡ଼ି ରଘୁବର ପ୍ରସାଦ ପିଲା ହାତରୁ ପଥର ଖଣ୍ଡିକ ନେଲେ । ରଘୁବର ପ୍ରସାଦ କଣ୍ଟା ବାଡ଼େଇବାବେଳେ ପିଲାଟି ଝରକା ପାଖରୁ ଦୂରେଇ ଯାଇଥିଲା ।

''ଯୋଉଠୁ ଆଣିଥିଲୁ ସେଇଠି ରଖିଦେ ।'' ରଘୁବର ପ୍ରସାଦ ପିଲା ହାତରେ ପଥରଟି ଦେଲେ । ସେଇ ଜାଗାରେ ପିଲାଟି ପଥର ରଖିଦେଲା ।

''ଠିକ୍ ଅଛି ।'' ରଘୁବର ପ୍ରସାଦ କହିଲେ । ''ଠିକ୍ ଅଛି'' ବୋଲି ସାବାସୀ ପାଇ ପିଲାଟି ଖୁସି ହୋଇଗଲା ।

ଅଦିନରେ ବର୍ଷା ହୋଇନାହିଁ । କିନ୍ତୁ ଝରକା ବାଟେ ଦୂରଦୂରାନ୍ତର ଗଛବୃକ୍ଷ ପରିଷ୍କାର ଚକ୍‌ଚକ୍ ସବୁଜ ଦିଶୁଥାନ୍ତି । ବାତାବରଣଟି ଯେମିତି ଗାଧୋଇ ପଡ଼ିଛି । ଦରଜା ବନ୍ଦ । ଦରଜା ପାଖରେ ଠିଆ ହେଲେ ମନେ ହେବ ଦରଜା ସେକଡ଼େ ଝଡ଼ ବହୁଛି । ପବନର ବେଗରେ ଦରଜା ହଲୁଥାଏ ।

''ବାହାରେ କ'ଣ ଝଡ଼ବତାସ ହେଉଛି ?'' ରଘୁବର ପ୍ରସାଦ ପଚାରିଲେ । ସ୍ତ୍ରୀ ଝରକା ଆଡ଼କୁ ଚାହିଁ କହିଲା, ''ନାଇଁ ତ ।''

ଝରକା ବାଟେ ଆକାଶ ପରିଷ୍କାର ଦିଶୁଥିଲା । ଗଛ ଧୀରେ ଧୀରେ ହଲୁଥିବାର ଦିଶୁଥିଲା ।

''କବାଟ ଖୋଲୁଛି ।'' ରଘୁବର ପ୍ରସାଦ କବାଟ ଖୋଲିଲା ବେଳେ ଧଡ଼ କରି କବାଟ

ଖୋଲିଗଲା । ଜୋର୍ ପବନର ଧକ୍କା ଲାଗିଥିଲା ବୋଲି ଖୋଲିଗଲା । ଚଟାଣରେ ଯେଉଁ ଗିଲାସ ଥୁଆ ହୋଇଥିଲା ସେଇଟି ପବନ ଯୋଗୁ ଓଲଟିଗଲା । କାନ୍ଥରେ ଯେଉଁ କ୍ୟାଲେଣ୍ଡର ଥିଲା ତାହା କଣ୍ଟା ସମେତ ଉପୁଡ଼ିଗଲା । ଘର ସାରା ଧୂଳି ଜମିଗଲା । ଏତେ କଥା ଘଟିଗଲା ଯଦିଓ ରଘୁବର ପ୍ରସାଦ ସାଙ୍ଗେ ସାଙ୍ଗେ କବାଟ ବନ୍ଦ କରିଦେଇଥିଲେ । ଝରକାଟା ବନ୍ଦ କରିବା କଥା କାହାରି ମନେ ନ ଥିଲା । ତା'ର ଦରକାର ବି ନ ଥିଲା । ଝରକା ବାଟେ ଧୀରେ ଧୀରେ ଭଲ ପବନ ଆସୁଥିଲା । ଝରକା ବାହାରେ ସବୁ ଶାନ୍ତ ଥିଲା ।

ଘର ଭିତରେ ଧୂଳି ହେତୁ ଖସଡ଼ା ହେବା ଭଳି ସ୍ତର ଜମିଯାଇଛି । ସ୍ତ୍ରୀ ଝାଡୁ ଦେବାକୁ ଲାଗିଛି । ଥାଳିରେ ଚକଟା ଅଟା ଅଛି, ଓଦା ଫରିଆ ଗାମୁଛାରେ ଢଙ୍କା ହୋଇଛି । ତେଣୁ ମନେ ହେଲା, ଧୂଳି ଅଟାରେ ଲାଗୁ ନ ଥିବ । ତଥାପି ଫରିଆ ଗାମୁଛାକୁ ଝାଡ଼ିଦେଇ ସ୍ତ୍ରୀ ସେ ଥାଳିକୁ ପୋଛିଦେଲା । ଟିକିଏ ଅଟା ଆଙ୍ଗୁଠିରେ ନେଇ ସେ ଚାଖିଲା । ବୋଧହୁଏ ଅଟାରେ ଖଦଡ଼ା ଲାଗିଲା । ''ତା ହେଲେ ?'' ସ୍ତ୍ରୀ ପଚାରିଲା । ''ଉପରୁ ଉପରି ପରସ୍ତର କିଛି ଅଟା କାଢ଼ିଦେଇ ରୁଟି କରିବ ।'' ରଘୁବର ପ୍ରସାଦ କହିଲେ । ଯେତେବେଳେ ମନେହେଲା ଯେ ଝଡ଼ ବତାସ କମି ଗଲାଣି, ସେତେବେଳେ ଘରର ଧୂଳିକୁ ବାହାରେ ଝଡ଼ା ହେଲା । ତିନିଦିନଯାକ ଏମିତି ଝାଡ଼ିବା ପୋଛିବା ଚାଲିଲା । ତେବେ ଯାଇ ଘରର ଅବସ୍ଥା ଠିକ୍ ହେଲା ।

ସ୍ତ୍ରୀ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ଥକିଗଲା । ତା'ର ବାଳ ଲମ୍ବା ଓ ଗହଳିଆ, ବାଗ ମାନୁନାହିଁ । ବାହାଘର ଆଗରୁ ତାର ମା' କୁଣ୍ଡାଇ ଦେଉଥିଲା । ଏବେ ତାକୁ ନିଜେ କରିବାକୁ ପଡୁଛି । ଅଧଘଣ୍ଟାରୁ ବେଶୀ ହୋଇଗଲା । କାଠର ଚଉଡ଼ା ପାନିଆ ଧରିଛି ।

''କେତେ ବଡ଼ ପାନିଆ ।'' ସ୍ତ୍ରୀ କହିଲା ।

''ଆଣ ମୁଁ କୁଣ୍ଡେଇ ଦଉଛି ।'' ରଘୁବର ପ୍ରସାଦ କହିଲେ ।

''ତୁମେ ଦେଇ ହବନାହିଁ ।''

''ହୋଇଯିବ ।'' ରଘୁବର ପ୍ରସାଦ ସ୍ତ୍ରୀ ପଛରେ ବସିଗଲେ । ସେ ସ୍ତ୍ରୀର ବାଳକୁ ନିଜର କୋଳରେ ରଖିଲେ । ସେ ଉପରୁ ବାଳର ଅଡୁଆ ଛଡ଼ାଉଥିଲେ । ଆସ୍ତେ ଆସ୍ତେ କୁଣ୍ଡାଉଥିଲେ ବି ବାଳ ଓଟାରି ହୋଇଯାଉଥାଏ । ସୋନସୀ ବାଳତକ ମୁଣ୍ଡ ପାଖରେ ହାତ ଦେଇ ଚାପି ରଖିଥିଲା । ତା ଆଖିରେ ଲୁହ ଭରିଗଲା ।

''କାଟୁଛି ।'' ସ୍ତ୍ରୀ କହିଲା ।

''ଥାଉ । ତମେ କୁଣ୍ଡାଅ ।'' ରଘୁବର ପ୍ରସାଦ କହିଲେ ।

''ତମେ ପୋଖରୀରେ ବୁଡ଼ ପକାଇବା ସଙ୍ଗେ ସଙ୍ଗେ ମୁଣ୍ଡକୁ ବାହାର କରି ପଛପଟକୁ ବାଳକୁ ଝାଡ଼ିଦେବ । ତା'ପରେ ତାକୁ ଏକାଠି କରି ଜୁଡ଼ା କରିଦବ ଯେ ବାଳ ଆଉ ଅଡୁଆ ହେବନାହିଁ ।'' ରଘୁବର ପ୍ରସାଦ ପୁଣି କହିଲେ ।

''କିଏ କହିଲା ?''

''କେହି ନୁହେଁ । ପାଣି ଭିତରେ ବାଳ ଅଡୁଆ ହୋଇ ଗଣ୍ଠି ପଡ଼ିଯାଏ ।''

''ବହୁତ ବାଳ ଛିଣ୍ଡିଛି ।'' ପାନିଆରୁ ବାଳ ବାହାର କରୁ କରୁ ସ୍ତ୍ରୀ କହିଲା ।

ବଡ଼ି ଭୋରରୁ ଗାଧୋଇବା ପାଇଁ ପୋଖରୀକୁ ଗଲାବେଳେ ସ୍ତ୍ରୀ କହିଲା, ''ମୁଁ ଦୁଇ ତିନି ଦିନ ବାଳ ଓଦା କରିବି ନାହିଁ । ଜୁଡ଼ା ଖୋଲିବି ନାହିଁ ।'' ସେ ମୁଣ୍ଡ କୁଣ୍ଡାଇବାରୁ ରକ୍ଷା ପାଇବାକୁ ଚାହୁଁଥିଲା ।

''ନାହିଁ ତମେ ମୁଣ୍ଡ ବୁଡ଼ାଇ ଗାଧୋଇବ । ବୁଢ଼ୀ ମାଆ ମୁଣ୍ଡ କୁଣ୍ଡାଇବ । ତା'ର ମାଙ୍କଡ଼ ଉକୁଣି କି ରୂପି ବି ବାଛି ଦବ ।'' ହସିହସି ରଘୁବର ପ୍ରସାଦ କହିଲେ ।

''ମୋର ଉକୁଣି ନାହିଁ । ମାଙ୍କଡ଼ ଦେଇ ମୁଁ ଉକୁଣୀ ବଛାଇବି ନାହିଁ । ମୁଣ୍ଡ ଓଦା କରିବି ନାହିଁ ।''

''ଉକୁଣି ମାଙ୍କଡ଼ାଣୀକୁ ଦେଖାଇଦେବ ।'' ରଘୁବର ପ୍ରସାଦ କହିଲେ । ଗାଧୋଇ ଯିବା ଲାଗି ରଘୁବର ପ୍ରସାଦ ଗାମୁଛା, ଚଡ଼ି ଓ ସାବୁନ ଖଣ୍ଡିକ ଧରି ଝରକାରୁ ଡେଇଁଲେ । ସ୍ତ୍ରୀ ରଘୁବର ପ୍ରସାଦଙ୍କର ଧୂଆ କମିଜ, ନିଜର ସଫା ଶାଢ଼ି ଆଉ ବ୍ଲାଉଜ ନେଇ ଝରକା ବାଟେ ଡେଇଁଲା । ''ଭଲ ପବନ ଦେଉଛି । ତମେ ବାଳକୁ ଖୋଲି ଦିଅ ହାୱାରେ ବାଳ ଉଡ଼ିବ ।'' ଏହା ଶୁଣି ସୋନସୀ ମୁରୁକି ହସି ଚାଲୁ ଚାଲୁ ନିଜର ବାଳକୁ ଖୋଲି ମୁକୁଳାଇ ଦେଲା । ଜୋର ପବନରେ ବାଳତକ ଆହୁରି ବିଛାଡ଼ି ହୋଇ ଉଠୁଥାନ୍ତି ।

''ତମେ ମୋର ହାତ ଧରିଥାଅ କାଳେ ମୁଁ ବାଳ ଉଡ଼ିବା ସାଙ୍ଗରେ ଉଡ଼ିଯିବି ।'' ସ୍ତ୍ରୀ ତାର ଉଡ଼ିଯାଉଥିବା ପଣତ ଖୋସି ଦେଇଥିଲା ।

''ପଣତ କାହିଁକି ଖୋସିଲ ?''

''ତା ନ ହେଲେ ତ ମୁଁ ଉଡ଼ିଯିବି ।''

''କେମିତି ଉଡ଼ିବ ?'' ରଘୁବର ପ୍ରସାଦ କହିଲେ ।

ଉଡ଼ନ୍ତା ବାଳ ଓ ଉଡ଼ନ୍ତା ପଣତ ଡେଣା ପରି ସ୍ତ୍ରୀକୁ ସତସତକା କାଳେ ଉଡାଇନବ, ଏହା ଭାବି ରଘୁବର ପ୍ରସାଦ ସ୍ତ୍ରୀର ହାତକୁ ଜୋର୍‌ରେ ଧରି ପକାଇଲେ । ପବନ ଏତେ ବଢ଼ିଆ ଓ ବେଗରେ ବୋହୁଥିଲା ଯେ ଧୂଳି ବି ଉଡୁନଥିଲା । କିନ୍ତୁ କେଉଁଠି ଗୋବର ଲିପା ଜାଗାରେ ଅଠରଟି ଟିପ ଚିତା ଦେଇ ଚଉକା ପୂରା କରାଯାଇଥିବ । ଏହି ସୁନ୍ଦର ମାଙ୍ଗଳିକ ଛବିଟିକୁ ହାୱା ଅସ୍ତବ୍ୟସ୍ତ ନ କରି ଉଡ଼ାଇ ନେଇଛି । ସେହି ଛବିଟି ଘୁଡ଼ି ଭଳିଆ ଉଡୁଥିଲା । ତା'ପରେ ଆହୁରି ଅନେକ ଛୋଟ ଛୋଟ ଅଟାରେ ଡିଆରି ଛବିମାନ ଏଠି ସେଠି ଉଡୁଥିବାର ଦେଖାଗଲା । ପବନ ତାଙ୍କର ସ୍ୱରୂପକୁ ବିଗାଡ଼ି ନାହିଁ । ଏତିକିବେଳେ ରଘୁବର ପ୍ରସାଦଙ୍କ ହାତରୁ ସ୍ତ୍ରୀର ହାତ ଛାଡ଼ି ହୋଇଗଲା । ସୋନସୀ ଦଉଡ଼ିକରି ଆଗକୁ ବାହାରିଗଲା । ସତେ ଯେପରି ରଘୁବର ପ୍ରସାଦ ସୋନସୀର ଦଉଡ଼ିବାଟାକୁ ହିଁ ଧରି ଅଟକାଇଥିଲେ । ଅଟକିଥିବା ଦଉଡ଼ଟି ଛାଡ଼ପାଇ ଦଉଡ଼ିଗଲା । ଦଉଡୁଥିବା ସୋନସୀର ବାଳତକ ପବନରେ ବିଛାଇ ହୋଇଯାଇଥିଲେ । ଫଳରେ ମନେ ହେଉଥିଲା ଯେ ସେ ଠିଆ ଠିଆ

ଉଡ଼ିଯାଇଛି । ରଘୁବର ପ୍ରସାଦ ଶୁଣିଲେ ଯେ ସୋନସୀ ଉଦ୍ଭାନ୍ ହେବା ଆଗରୁ କହିଲା ଯେ ପଛେ ପଛେ ଆସ । ଉଡ଼ିଯିବାର ରୂପ ପଛରେ ଖାଲି ଉଡ଼ିଯିବା କରି ହିଁ ଯାଇ ହେବ । ଆଉ କାହାରି ଉଡ଼ିଯିବାଟା ଜଣାପଡ଼ିଯାଏ । ନିଜର ଉଡ଼ିଯିବା ନିଜକୁ ଜଣାପଡୁନଥିବ । ଆଉ କାହାକୁ ଜଣାପଡ଼ିଯାଉଥିବ । ହୁଏତ ରଘୁବର ପ୍ରସାଦ ବି ଉଡ଼ିଯାଇଛନ୍ତି । ଯେଉଁଆଡ଼େ ସୋନସୀ ଯାଇଥିଲା । ସେହି ଦିଗକୁ ହିଁ ରଘୁବର ପ୍ରସାଦ ଗଲେ । ପବନ ବି ସେଇଆଡ଼େ ବହୁଥିଲା । ସେହି ସମୟର ସଂପୂର୍ଣ୍ଣ ସ୍ଥାପନାଟି ସେହି ଦିଗରେ ହିଁ ରହିଛି । ଆଉ ଦୁହିଁଙ୍କ ଆଖପାଖରେ ଅଛି । ରଘୁବର ପ୍ରସାଦ ଗଛବୃକ୍ଷ ଦେଇ ଯାଉଥିଲେ ଓ ସେ ସୋନସୀ, ସୋନସୀ ବୋଲି ଡାକି ବି ପକାଉଥିଲେ ।

ଆଗରେ କ୍ଷଣକ ଲାଗି ରଘୁବର ପ୍ରସାଦଙ୍କୁ ସୋନସୀ ଦେଖାଗଲା । ସୋନସୀର ଶାଢ଼ିକୁ ବୋଧହୁଏ ପବନ ଉଡ଼ାଇ ନେଇଛି, କିନ୍ତୁ ସେ ଲଙ୍ଗଳା ନଥିଲା । ହାଉଆରେ ଉଡ଼ି ଉଡ଼ି ଯାଉଥିବା ମୁରୁଜଚିତା ତାକୁ ଘୋଡ଼ାଇ ରଖିଛି । ସେ ମୁରୁଜଚିତାର ଶାଢ଼ି ପିନ୍ଧିଛି । ପବନ ବନ୍ଦ ହୋଇଗଲା ପରେ ଗଛ, ଫୁଲ ଓ ଦୁବମାନଙ୍କର ବାସନା ଯାହା ଚାରିଆଡ଼େ ବିଛାଇ ହୋଇଥିଲା ତାହା ଗଛ, ଫୁଲ ଓ ଦୁବମାନଙ୍କ ପାଖ ଆଖରେ ଲାଖିଗଲା । ସେ ଲାଖିବାଟା ଏମିତି ହେଲା ଯେ ଗଛ ପାଖରେ ଫୁଲର ବାସନା ଲାଖିଗଲା । ଦୁବଘାସ ପାଖରେ ଗଛର ବାସନା ଥିଲା । ଗୋଟିଏ ଗଛମୂଳରେ, ଯାହା ବରଗଛ ଥିଲା, ତାହା ପାଖରେ ପୂଜା ପାର୍ବଣ ଦିନର ପୂଜା ସ୍ଥାନର ବାସନା ଥିଲା । ତାହାରି ପାଖରେ ଗୋଟିଏ ଗଛର ଗଣ୍ଡି ଚିକ୍କଣ କଳା ଥିଲା । ସେଇଟି ଶିବଲିଙ୍ଗ ପରି ଗଛ ଥିଲା । ଗୋବର ଦେଇ ଲିପା ପୋଛା ଜାଗାରେ ସେହି ଗଛମୂଳେ ଆଖିବୁଜି ସୋନସୀ ଶୋଇ ରହିଥିଲା । ସୋନସୀକୁ ଜାଣି ଜାଣି ରଘୁବର ପ୍ରସାଦଙ୍କର ନିକଟକୁ ଆସିବା ଜଣାପଡୁ ନ ଥିଲା । ସୋନସୀକୁ ଜାଣି ଜାଣି ରଘୁବର ପ୍ରସାଦଙ୍କର ସେଠି ଠିଆ ହୋଇ ତାକୁ ନିରେଖିବାଟା ଜଣାପଡୁ ନ ଥିଲା । ସୋନସୀକୁ ଜାଣିଜାଣି ରଘୁବର ପ୍ରସାଦଙ୍କର କିଛି ବି କାର୍ଯ୍ୟ ଜଣାପଡୁନଥିଲା । ସୋନସୀକୁ ଘୋଡ଼ାଇଥିବା ସେହି ମୁରୁଜ ଚିତାର ଆବରଣଟି ପୂର୍ବଭଳି ଗୋବରରେ ଲିପା ପୋଛା ଜାଗାରେ ଚଉକା ପୂରା କଲା ଭଳି ଅଙ୍କା ହୋଇଥିଲା । ସେତିକିବେଳେ ସୋନସୀର ବାଁ ବାହା ଉପରେ ଚିଁ ଚିଁ କରି ଗୋଟିଏ ଚଢ଼େଇ ଆସି ବସିଲା ।

''ଦେଖିଲ ମୋ କାନ୍ଧ ଉପରେ କୋଉ ଚଢ଼େଇ ବସିଛି ?'' ସ୍ତ୍ରୀ ପଚାରିଲା । ତା'ର ନିଜର ଭୁଲିଲା ଅସ୍ତିତ୍ୱ ମଧ୍ୟରୁ ତା'ର ସ୍ୱରଟି ଶୁଭୁଥିଲା । ସୋନସୀ ହଲିଗଲେ ଚଢ଼େଇ ଘୁଞ୍ଚିଗଲେ ତା'ର ପଞ୍ଝାର ନଖ କାନ୍ଧରେ ଫୁଟିଯାଇଥାନ୍ତା ।

''ହଁ, ଗୋଟିଏ ସୁନ୍ଦର ଶୁଆ, ପାହାଡ଼ୀ କରଦ । ତା'ର କଣ୍ଠ ଫିଟୁଛି ।''

''ଶୁଆ ଗଭୀର ନିଃଶ୍ୱାସ ଆଉ ଫୁସ୍ ଫୁସ୍ କଥାକୁ ମନେ ରଖିନବ; ସୋନସୀ ଗଭୀର ନିଃଶ୍ୱାସ ନେଇ ଫୁସ୍ ଫୁସ୍ କରି କହିଲା ।

''ମୁଁ ତାକୁ କହିଦେବି ଯେ ଆମେ ସ୍ୱାମୀ-ସ୍ତ୍ରୀ'' ରଘୁବର ପ୍ରସାଦ କହିଲେ ।

ସୋନସୀ ଦେଖିଲା ଯେ ଯେଉଁଠି ଅଟା ନେଇ ଯେଉଁ ଚଉକାଚିତା ଲେଖା ହୋଇଥିଲା ସେଇଟି

ଘୁଡ଼ି ଭଳି ଉଡ଼ି ଉଡ଼ି ଆସୁଥିଲା । ପବନ ତା'ର ସ୍ୱରୂପ ବି କିଛି ବିଗାଡ଼ି ନାହିଁ । ତା'ପରେ ଅନ୍ୟ ପଟରୁ ଚଢ଼େଇଚିଡ଼ା ଆସି ତା' ସାଙ୍ଗରେ ମିଶି ଉଡ଼ିଗଲା ।

ପୋଖରୀ କୂଳର ପଥର ଉପରେ ସୋନସୀ ବସିଗଲା । ରଘୁବର ପ୍ରସାଦ ଗାଧୋଇବା ପାଇଁ କାଠରେ ଖୋଳି ଟିକିଟା ମାଟିରୁ ଢେଲାଏ ନେଇ ଆସିଥିଲେ । ପୋଖରୀରେ ବୁଡ଼ ପକାଇ ଦୁହେଁ ବାହାରିଗଲେ ଏବଂ ନିଜ ନିଜ ଦେହରେ, ଏବଂ ପରେ ପରେ ପରସ୍ପରର ଦେହରେ ମାଟିକୁ ବୋଳିଲେ । ଦୁହେଁ ପୋଖରୀର ପାଣିରେ ଗୋଡ଼ ବୁଡ଼ାଇ କିଛି ସମୟ ବସିରହିଲେ । ମାଟି ଶୁଖି ଶୁଖି ଆସିବା ପରେ ଦୁହେଁ ପୋଖରୀକୁ ଡେଇଁ ପଡ଼ିଲେ ।

ଏକ୍‌ଦମ୍ ସକାଳର ସୂର୍ଯ୍ୟ ବାଁ କଡ଼ରେ ପୋଖରୀରେ ଥିଲା । ସୂର୍ଯ୍ୟ ପରେ ସେ ପୋଖରୀରେ ରଘୁବର ପ୍ରସାଦ ଥିଲେ, ପୁଣି ସୋନସୀ ଥିଲା । ସୋନସୀ ବୁଡ଼ ପକାଇ ବାହାରିବା ପରେ ବାଳକୁ ପଛକୁ ଝାଡ଼ିଦେବାରୁ ଗୋଟିଏ ଅର୍ଦ୍ଧଗତ୍ର ଆକାରର ପାଣିର ବୁନ୍ଦାଯାକ ବାଳରୁ ଝଡ଼ିଲେ । ସେତେବେଳେ ରଘୁବର ପ୍ରସାଦଙ୍କୁ ସେହି ବୁନ୍ଦା ଆଡ଼େ ଇନ୍ଦ୍ରଧନୁ ଦିଶିଗଲା । ସୋନସୀର ଓଦା ବାଳ ଝାଡ଼ିବା ପରେ କ୍ଷଣକ ଲାଗି ଇନ୍ଦ୍ରଧନୁ ହୋଇଯାଉଥିଲା ।

ବୁଢ଼ୀ ମାଆ ଚାହା ଧରି ଧୀରେ ଧୀରେ ଆସୁଥିଲା । ବୁଢ଼ୀ ମାଆର ଆଗରେ ଆସୁଥିବା ମାଙ୍କଡ଼ଟିଏ ପୋଖରୀ କୂଳର ଗୋଟିଏ ଗଛ ଉପରେ ଚଢ଼ିଗଲା ।

''ସୋନସୀ ଚାଲ ।'' ରଘୁବର ପ୍ରସାଦ ବୁଢ଼ୀ ମାଆକୁ ଆସୁଥିବାର ଦେଖି କହିଲେ । ସୋନସୀ ଶେଷ ବୁଡ଼ଟି ପକାଇ ବାହାରିଲା ଓ ବାଳକୁ ପଛକୁ ଝାଡ଼ିଦେଇ ଏକାଠି କଲା ଓ ଜୁଡ଼ା ବାନ୍ଧିଲା ।

''ଏଇଲେ ବାଳ ସହଜରେ କୁଣ୍ଡେଇ ପାରିବି ?'' ସୋନସୀ ପଚାରିଲା ।

''ହଁ, ଏବେ ବାଳ ସହଜରେ କୁଣ୍ଡା ଯାଇପାରିବ'' ରଘୁବର ପ୍ରସାଦ କହିଲେ । ଚାହା ରଖି ବୁଢ଼ୀ ମାଆ ଚାଲିଗଲା । ପରସ୍ପରର ଛଡ଼ା ଲୁଗା ଦେଇ ଦୁହେଁ ନିଜ ଦେହକୁ ପୋଛିଲେ, ତା'ପରେ ଧୁଆ ଲୁଗା ପିନ୍ଧି ଚାହା ପିଇଲେ ।

ଦୁହେଁ ଚେଇଁଥିଲେ । ଆଉ ସବୁକିଛି ନିଦରେ ବୁଡ଼ିଥିଲା ।

ପୋଖରୀ ନିଦର ପୋଖରୀ ଥିଲା । ଆକାଶ ନିଦର ଆକାଶ ଥିଲା ।

ବୁଢ଼ୀ ମାଆ ସୋନସୀ ଲାଗି ଗୋଟିଏ ଟୋକେଇରେ କେସରିଆ କନ୍ଦା ଆଉ ଗୋଟିଏ ଟୋକେଇରେ କେନ୍ଦୁଫଳ ମାଙ୍କଡ଼ଙ୍କଠାରୁ ରକ୍ଷା କରି ସାଇତିଥିଲା । ସୋନସୀ ନିଜ କାନିରେ କେସରିଆ କନ୍ଦା ଓ କେନ୍ଦୁଫଳ ଖୋସି ନେଇଥିଲା । ରାସ୍ତାସାରା ଦୁହେଁ କେସରିଆ କନ୍ଦାକୁ ଦାନ୍ତରେ ଛଡ଼ାଇ ଖାଇ ଖାଇ ଆସୁଥିଲେ । ଘରର ଝରକା ପାଖକୁ ଆସି ଦୁହେଁଯାକ ଠିଆ ହୋଇଗଲେ । ଦୁହେଁ ଛୋଟ ପିଲାଙ୍କ ପରି ନିଜର ଘରକୁ ଉଙ୍କିମାରି ଚାହୁଁଥିଲେ । ଘର ଭିତରେ ସେମାନେ ନଥିଲେ ।

''ମୁଁ କୋଉଠି ଅଛି ?'' ରଘୁବର ପ୍ରସାଦ ଘର ଭିତରକୁ ଉଙ୍କି ମାରି ସୋନସୀକୁ ପଚାରିଲେ । ଯେମିତି ସେ ଘରକୁ ହିଁ ପଚାରିଲେ ।

''ତମେ ମୋ ପାଖରେ ଅଛ ।'' ସୋନସୀ ଘର ଭିତରକୁ ଚାହିଁ କହିଲା । ଯେମିତି ସେ ଘରକୁ ହିଁ କହୁଥିଲା ।

''ଆଉ ମୁଁ ?'' ଖାଲି ଘର ଭିତରକୁ ଚାହିଁ ସୋନସୀ ଆଶ୍ଚର୍ଯ୍ୟ ହୋଇ କହିଲା ।

''ତମେ ଏଠି ମୋ ପାଖରେ ଅଛ ।'' ରଘୁବର ପ୍ରସାଦ କହିଲେ । ତା'ପରେ ଦୁହେଁ ଘର ଭିତରକୁ ଡେଇଁ ପଡ଼ିଲେ ।

''ରଘୁବର ପ୍ରସାଦ ! ହୋ ରଘୁବର ପ୍ରସାଦ !'' କିଏ ଡାକୁଥିଲା ।

''ବୋଧହୁଏ ବିଭାଗାଧ୍ୟକ୍ଷ ।'' ରଘୁବର ପ୍ରସାଦ ସୋନସୀକୁ କହିଲେ । ରଘୁବର ପ୍ରସାଦ କବାଟ ଖୋଲିଲେ, ବିଭାଗାଧ୍ୟକ୍ଷ ଥିଲେ । ବଡ଼ ଅସ୍ତବ୍ୟସ୍ତ ଦିଶୁଥିଲେ । ସକାଳୁ ବିଛଣାରୁ ଉଠିକରି ଆସିଛନ୍ତି । ବିଭାଗାଧ୍ୟକ୍ଷ କାହାରି ଆଡ଼କୁ ନ ଚାହିଁ ଝରକା ପାଖକୁ ଗଲେ ଏବଂ ଝରକା ବାଟେ ପଦାକୁ ଅନାଇଲେ । ତାଙ୍କର ଆଉ କେଉଁଥିକୁ ଧ୍ୟାନ ନାହିଁ ।

''ବସନ୍ତୁ ସାର୍ ! ପାଣି ପିଅନ୍ତୁ ।'' ରଘୁବର ପ୍ରସାଦ କହିଲେ । ସୋନସୀ ବିଛଣା ଉଠାଇ ତଳପଟରେ ଚଉତି ଦେଇଥିଲା । ଖଟିଆ ଉପରେ ଖାଲି ସତରଞ୍ଜି ପଡ଼ିଥିଲା ।

''ନାହିଁ । ମୁଁ ଏଇଠି ଠିକ୍ ଅଛି ।'' ଝରକାରୁ ପଦାକୁ ଚାହିଁ ସେ କହିଲେ ।

ସୋନସୀ ଗିଲାସରେ ପାଣିଆଣି ରଘୁବର ପ୍ରସାଦଙ୍କୁ ଧରାଇଦେଲା ।

''ନିଅନ୍ତୁ ସାର୍ !'' ରଘୁବର ପ୍ରସାଦ କହିଲେ । ପାଣି ପିଇବା ଭିତରେ ବି ବିଭାଗାଧ୍ୟକ୍ଷ ଖିଡ଼ିକି ଦେଇ ବାହାରକୁ ଚାହୁଁଥାନ୍ତି । ରଘୁବର ପ୍ରସାଦ ମୁଁ ଏତିକି କହିବାକୁ ଆସିଥିଲି ଯେ ମୁଁ ମୋ ପିଲାଙ୍କୁ ଧରି ଆସୁଛି । ଆମେ ସମସ୍ତେ ଝରକା ସେପଟକୁ ଯିବୁ ।

''ହଉ ସାର୍ ! କିନ୍ତୁ କଲେଜର ସମୟ ହୋଇଗଲାଣି ।''

ଆଜି ଦଶହରାର ଛୁଟି । ମୁଁ ପନ୍ଦର କୋଡ଼ିଏ ମିନିଟରେ ଆସିବି । କିମ୍ବା ଗାଧୋଇ ପାଧୋଇ ଆସିବି । ଗାଧୋଇବାକୁ ଡେରି ହୋଇଗଲେ ଝରକାର ପୋଖରୀରେ ଯାଇ ଗାଧୋଇପଡ଼ିବି । ଝରକା ପଛର ଗଛରେ ଆଜି ନୀଳକଣ୍ଠ ଦେଖିନେବା । (ଭଦଭଦଳିଆ ଚଢ଼େଇ)

''ହଉ ସାର୍ !''

ବିଭାଗାଧ୍ୟକ୍ଷ ଚାଲିଗଲା ପରେ ରଘୁବର ପ୍ରସାଦ ସୋନସୀକୁ ପଚାରିଲେ, ''ଆଜି ଗାଧୋଇ ଗଲାବେଳେ ତୁମ ଆଖିରେ ନୀଳକଣ୍ଠ ଦିଶିଥିଲା କି ?''

''କେଜାଣି ମନେନାହିଁ । ଦେଖିଥିବି ଅବା । ତମେ ଦେଖିଥିଲ କି ?''

''କେଜାଣି ମୋ ବି ମନେ ପଡୁନି । ଦେଖି ଥାଇପାରେ ।''

''ଆମ ଦୁହିଁଙ୍କୁ ଦେଖା ଦେଇଛି ଆଉ ଆମେ ଦୁହେଁ ତାକୁ ଦୃଷ୍ଟି ଦେଇନାହୁଁ ।''

''ଦେଖା ତ ଦେଇ ଦେଇଛି, ଦୃଷ୍ଟି ନ ଦେଲେ କ'ଣ ହେଲା ।'' ରଘୁବର ପ୍ରସାଦ ତା'ପରେ କହିଲେ ।

''ଜଣାଯିବା ଦରକାର ଯେ ଆମେ ନୀଳକଣ୍ଠ ଦେଖିଛେ । ଚାଲ ନୀଳକଣ୍ଠ ଦେଖିବାକୁ ଯିବା ।''

''କେମିତି ଯାଇପାରିବା ?'' ବିଭାଗାଧ୍ୟକ୍ଷ ଆସିବାର ଅଛି ।

''ଆଜି କ'ଣ ହାତୀ ଆସିବ ?'' ସ୍ତ୍ରୀ ପଚାରିଲା ।

''ଯଦି ସାଧୁ ଜାଣିଥିବ ଯେ ଆଜି ଛୁଟି ଅଛି, ତେବେ ସେ ନ ଆସିପାରେ । ହୁଏତ ସାଧୁ ଆଜି ରାବଣଭାଟା ଚାଲିଯିବ ।''

''ହୁଏତ ରାମସୀତାଙ୍କ ମେଢ଼ ହାତୀ ଉପରେ ବାହାରିବ । ତାହାରି ଲାଗି ସେ ପ୍ରସ୍ତୁତ ହେଉଥିବ । ଚାଲ ଏଇଲେ ନୀଳକଣ୍ଠ ଦେଖିନବା, ପରେ ସନ୍ଧ୍ୟାବେଳେ ମେଢ଼ ଦେଖିବାକୁ ବାହାରିବା ।''

''ବିଭାଗାଧ୍ୟକ୍ଷ ଆସିବାର ଅଛି ।'' ରଘୁବର ପ୍ରସାଦ ପୁଣି କହିଲେ ।

''ହଁ । ବିଭାଗାଧ୍ୟକ୍ଷ ଆସିବାର ଅଛି ।'' ସ୍ତ୍ରୀ କିଛି ଉଦାସିଆ ହୋଇ କହିଲା । ତାକୁ ଭଲ ଲାଗୁ ନଥାଏ ।

ବହୁତ ବେଳଯାକେ ଦୁହେଁ ଘରେ ବସି ବିଭାଗାଧ୍ୟକ୍ଷଙ୍କୁ ଅପେକ୍ଷା କଲେ । ବିଭାଗାଧ୍ୟକ୍ଷ ଆସିଲେ ନାହିଁ । ହାତୀ ଆସିଲା ନାହିଁ । ସ୍ତ୍ରୀ ଥକା ହୋଇ ଚଟାଣ ଉପରେ ଶୋଇଗଲା ।

''ମନେହୁଏ ବିଭାଗାଧ୍ୟକ୍ଷଙ୍କୁ ନୀଳକଣ୍ଠ ଦିଶିଗଲାଣି । ଚାଲ ଆମେ ବି ଯିବା ।''

''ଚାଲ ।'' ରଘୁବର ପ୍ରସାଦ କହିଲେ ।

''ଶୁଣ ମୋ କାନ୍ଧ ଉପରେ ସେ ଚଢ଼େଇଟା ଶୁଆ ଥିଲା ନା ନୀଳକଣ୍ଠ ।'' ସ୍ତ୍ରୀ ବଡ଼ ଖୁସି ହୋଇ ପଚାରିଲା ।

''ଶୁଆ ଥିଲା ।'' ରଘୁବର ପ୍ରସାଦ ବି ବଡ଼ ଖୁସିରେ କହିଲେ ।

''ହୁଏତ ନୀଳକଣ୍ଠ ହୋଇଥିବ ।'' ସ୍ତ୍ରୀ ବହୁତ ଆସ୍ତେ କରି କହିଲା ।

ଦୁହେଁ ନୀଳକଣ୍ଠ ଦେଖିବାକୁ ବାହାରିଲେ । ଘରଠାରୁ ଦୁଇ ପାଦ ବାହାରିଛନ୍ତି ଏତିକିବେଳେ ସ୍ତ୍ରୀ କହିଲା, ''ମୋତେ ଭଲ ଲାଗୁନି ।'' ରଘୁବର ପ୍ରସାଦ ସ୍ତ୍ରୀର ହାତକୁ ଛୁଇଁଲେ । ଗରମ ଥିଲା ।

''ତମର ତ ଜର ଅଛି । ଥାଉ, ଯିବାନି । ଘରେ ରହିବା । ନୀଳକଣ୍ଠକୁ ଦେଖିବାକୁ ହେଲେ ସେ ଝରକା ଉପରେ ଆସି ବସିଯିବ ।''

''ନାଇଁ ଚାଲ, ମୋର କିଛି ହୋଇନାହିଁ ।''

''ବହୁତ ବେଳ ପୋଖରୀରେ ବୁଡ଼ିକରି ରହିବାର ନୁହେଁ । ହୁଏତ ଆମେ ନୀଳକଣ୍ଠ ଦେଖି ନେଇଛୁ ।''

''ତମେ ଦେଖିସାରିଛ, ତେବେ ଫେରିଯିବା ।''

''ଠିକଣା କଥା ନୁହେଁ । ଚାଲ ରିକ୍ସାରେ ଯିବା । ମ୍ୟୁନିସିପାଲ ହସ୍‌ପିଟାଲ ଯିବା ଯେ ବାଟରେ ନୀଳକଣ୍ଠ ଦିଶିଯିବ ।''

ଘର ଆଗରେ ନିମ୍ବଗଛ ମୂଳେ ସେମାନେ ଠିଆ ହୋଇଗଲେ । ରଘୁବର ପ୍ରସାଦ ରିକ୍ସାକୁ ଖୋଜୁଥିଲେ । ସ୍ତ୍ରୀ ଦୂର ଦିଗ୍‌ବଳୟ ଆଡ଼କୁ ଚାହିଁଥିଲା ।

''କ'ଣ ଦେଖୁଛ ?'' ରଘୁବର ପ୍ରସାଦ ସ୍ତ୍ରୀକୁ ଆଶ୍ରା ଦବାକୁ ଧରିନେଇଥିଲେ ।

''ନୀଳକଣ୍ଠ ଦେଖୁଛି ।''

''ଦିଗ୍‌ବଳୟରେ ନୀଳକଣ୍ଠ ଥିଲେ ବି ଦିଶିବ ନାହିଁ ।''

''କାହିଁକି ?''

''ବହୁତ ଛୋଟ ହୋଇଥିବ ।''

''ଦିଶିବ ତ ନିଶ୍ଚୟ ।''

''ଏତେ ଛୋଟ ହୋଇଥିବ ଯେ ଦେଖାଯିବ ନାହିଁ ।''

''ମୋତେ ମୋ ବାଟରେ ଦେଖିବାକୁ ଦିଅ । ତୁମେ ନିଜ ପ୍ରକାରେ ପାଖଆଖକୁ ଦେଖୁଥାଅ ।'' ସ୍ତ୍ରୀ କହିଲା । ରଘୁବର ପ୍ରସାଦ ଗୋଟିଏ ଯାଉଥିବା ଖାଲି ରିକ୍ସାକୁ ଅଟାକାଇଲେ । ''କୁଆଡ଼େ ଯିବାକୁ ଅଛି ?'' ରିକ୍ସାବାଲା ପଚାରିଲା ।

''ନୀଳକଣ୍ଠ ଦେଖିବାକୁ ।'' ସ୍ତ୍ରୀ କହିଲା ।

''ମ୍ୟୁନିସିପାଲ ହସ୍‌ପିଟାଲ ଚାଲ, ବାଟରେ ନୀଳକଣ୍ଠ ଦେଖିନେବା ।'' ରଘୁବର ପ୍ରସାଦ କହିଲେ ।

''ଲଖୋଲି ଗାଁଉ ଯିବା କି, ସେଠି ବହୁତ ନୀଳକଣ୍ଠ ଅଛନ୍ତି ।''

''ଆଗ ହସ୍‌ପିଟାଲ ଚାଲ ତା'ପରେ ଲଖୋଲି ଚାଲିଯିବା ।'' ସ୍ତ୍ରୀ ରଘୁବର ପ୍ରସାଦଙ୍କ କାନ୍ଧରେ ମଥା ରଖି ଆଖି ବୁଜିଥିଲା ।

''ଶୋଇଗଲ ! ଭଲ ଲାଗୁନାହିଁ ?''

''ଶୋଇନାହିଁ । ଦେଖାଗଲେ ମୋତେ କହିଦବ ।'' ତା'ପରେ ସେ ରିକ୍ସାବାଲାକୁ କହିଲା –

''ରିକ୍ସାବାଲା ! ବାଟରେ ନୀଳକଣ୍ଠ ଦେଖାଗଲେ ଆମକୁ କହିଦବୁ ।'' ଯେତେବେଳେ ସେ ଆଖି ବୁଜୁଥିଲା ସେ କହୁଥିଲା ଯେ ଦେଖୁଥାଅ ଓ ଦେଖିଲା ମାତ୍ରେ କହିବ । ଡେରି କଲେ ଉଡ଼ିଯିବ ।

''ଉଡ଼ିଗଲେ ଉଡ଼ିଯାଉଥିବାର ଦେଖାଯିବ । ରିକ୍ସାବାଲାକୁ ତା'ର ପଛେ ପଛେ ଯିବାକୁ କହିବା ।''

''ନୀଳକଣ୍ଠ ପଛେ ପଛେ ରିକ୍ସାବାଲାକୁ କେତେ ଯାଏ ନେଇ ହେବ । ଧର ସେ ଉଡ଼ିକରି ଦୂରର ସେଇ ଓସ୍ତଗଛରେ ବସିଗଲା । ଓସ୍ତଗଛ ଯାଏ ପହଞ୍ଚୁ ପହଞ୍ଚୁ ଡେରି ହେବ, ସେଠି କ'ଣ ବସି ରହିଥିବ । ସେଠୁ ବି ଉଡ଼ିକରି ଆକାଶରେ ଉଭେଇଗଲେ, ସେଉଠୁ ?''

ରଘୁବର ପ୍ରସାଦ ରିକ୍ସାବାଲାକୁ କହିବେ, ''ଆକାଶ ଆଡ଼କୁ ନେଇଚାଲ ।'' ପୁଣି ଭାବିବେ । ଆକାଶ ଆଡ଼େ ବହୁତ ଉଠାଣି ଉଠିବାକୁ ହେବ । ତା'ପରେ ସେ ରିକ୍ସାବାଲାକୁ କହିବେ, ''ତୁ ରହ, ଏଇଠି ଆମର ବାଟ ଚାହିଁ ବସିଥା । ମୁଁ ରିକ୍ସା ନେଇ ଯାଉଛି ।'' ରିକ୍ସା ଚଳାଇ ସେ ନିଜର ସ୍ତ୍ରୀକୁ ଆକାଶ ଆଡ଼କୁ ନେଇଯିବେ । ପ୍ୟାଡଲ୍ ମାରି ମାରି ଉପରକୁ ଚଢ଼ିଯିବେ । ଉପରେ ବାଦଲର ଖଣ୍ଡଗୁଡ଼ାକୁ ରିକ୍ସା ଉପରେ ଲଦି ହୋଇଯାଉଥିବ । ବାଦଲର ତ ଓଜନ ନଥାଏ ·। କୌଣସି ଗୋଟିଏ ବାଦଲ ଭିତରେ ଲୋକଙ୍କୁ ଦେଖାଯିବନାହିଁ ବୋଲି ଦଶହରା ଦିନ ନୀଳକଣ୍ଠ ବସିଥିବାର ଦିଶିଯିବ । ସ୍ତ୍ରୀକୁ ଦେଖାଇବେ, ''ସୋନସୀ ଦେଖ ନୀଳକଣ୍ଠ, କାଳେ ଗଛ ଉପରେ ଦିଶିଯିବ ସେଥିପାଇଁ ଏଠି ପାଉଁଶିଆ ବାଦଲ ଉପରେ ଆସି ବସିପଡ଼ିଛି । ତମେ ବି ଦେଖ ।''

ଏମିତି ବି ହୋଇପାରେ ଯେ ନୀଳକଣ୍ଠକୁ ଦେଖିବାର ପ୍ରବଳ ଇଚ୍ଛା ପୁଣି ତାକୁ ନ ଦେଖିବା ଯୋଗୁରୁ ମଉଳିଯିବ । ଉଡୁଉଡୁ ଆଗକୁ ଆସିଯିବ ଯେପରି ଦୁହେଁ ତାକୁ ଏକାଠି ଦେଖିନେଇପାରିବେ ପୁଣି ଉଡ଼ିଯିବ । ଯିବା ପରେ ବି ନୀଳକଣ୍ଠକୁ ନିଶ୍ଚୟ ଲାଗିବ ଯେ ଦୁହେଁଯାକ ତାକୁ ଦେଖିଥିବେ କି

ନାହିଁ । କେଜାଣି ଜଣେ ଦେଖିଥିବ କି, ତା'ପରେ ସେ ଆଉଥରେ ଆସିବ, ଆଗରେ କରି ସେ ତାର ନୀଳ ଡେଣା ମେଲାଇ ଉଡୁଥିବ । ତା'ପରେ ଦୁହେଁ କହିବେ, ''ଆମେ ତୁମକୁ ଦେଖି ନେଇଛୁ ।'' ତା'ପରେ ସେ ଉଡ଼ି ଚାଲିଯିବ ।

ହସ୍‌ପିଟାଲରେ ପ୍ରବେଶପତ୍ର କଟାଇବାର ଭିଡ଼ ଲାଗିଥିଲା । ସୋନସୀ ବେଞ୍ଚ ଉପରେ ବସିଛି । ବହୁତ ଡେରିରେ ଡାକ୍ତର ସୋନସୀକୁ ଦେଖିଲା । ଗୋଟିଏ ପୁଡ଼ିଆରେ ସେ ଚାରିଟି ବଟିକା ଦେଲା । ଦୁଇ ଦୁଇ ଘଣ୍ଟାରେ ଗୋଟିଏ କରି ବଟିକା ଖାଇବାକୁ କହିଲା । ଗୋଟିଏ ବଟିକା ଏହିକ୍ଷଣି ଖାଇବାକୁ ଥିଲା । ସୋନସୀ ହସ୍‌ପିଟାଲର ନଳ ପାଖକୁ ଯାଇ ବଟିକା ଖାଇ ପାଣି ପିଇଲା । ''ଚାଲ ।'' ସୋନସୀ କହିଲା । ସେହି ରିକ୍ସାଟି ହସ୍‌ପିଟାଲ ଆଗରେ ଠିଆ ହୋଇଥିବାର ଦିଶିଲା ।

''ଯିବକୁ କି ?'' ରଘୁବର ପ୍ରସାଦ ରିକ୍ସାବାଲାକୁ ପଚାରିଲେ ।

''ହଁ ।'' ଦୁହେଁ ରିକ୍ସା ଉପରେ ବସିଗଲେ ।

''କୁଆଡ଼େ ନେଇଯାଉଛୁ ।'' ରଘୁବର ପ୍ରସାଦ କହିଲେ ।

''ନୀଳକଣ୍ଠ ଦେଖିବାକୁ ।'' ରିକ୍ସାବାଲା କହିଲା ।

''ଯୋଉଠୁ ଆସିଥିଲେ ସେଇଠିକି ଚାଲ୍ ।''

ଘରକୁ ଆସି ଦେଖାଗଲା ଛୋଟୁ ସେଠି ବାହାରେ ସଫା ଇସ୍ତିରି କରା କୁରୁତା ଧୋତି ପିନ୍ଧି ଠିଆ ହୋଇଛି । ରିକ୍ସାରେ ଭାଇକୁ ଓହ୍ଲାଇବାର ଦେଖି ଛୋଟୁ ରିକ୍ସା ଆଡ଼କୁ ଦଉଡ଼ିଗଲା ଓ ପାଟିକରି କହିଲା, ''ମା, ଭାଇ ଭାଉଜ ଅଇଲେଣି ।'' ତା'ପରେ ଛୋଟୁ ଭାଇଭାଉଜଙ୍କର ପାଦ ଛୁଇଁ ପ୍ରଣାମ କଲା ।

ଭାଉଜ ପଚାରିଲା, ''କେତେ ବେଳୁ ତମେ ସବୁ ଆସିଲଣି ?''

''ବହୁତ ବେଳ ହେଲାଣି ।''

ବାପା ଖଟିଆ ଉପରେ ଶୋଇଛନ୍ତି । ସେଇଠି ଅଖା ଉପରେ ବସି ମା' ଗାଁରୁ ଆଣିଥିବା ବରଗୁଡ଼ି କାଟୁଥାଏ । ସୋନସୀ ଓ ରଘୁବର ପ୍ରସାଦ ମା'ର ପାଦ ଛୁଇଁଲେ । ରଘୁବର ପ୍ରସାଦ ବାପାଙ୍କ ଗୋଡ଼ ଛୁଇଁବାକୁ ଯାଉଥିଲେ କିନ୍ତୁ ବାପା କହିଲେ, ''ରହି ଯା, ଉଠି ବସିବାକୁ ଦେ ।'' ସେ ଗୋଡ଼ ଝୁଲାଇ ତଳେ ବସିଗଲେ । ରଘୁବର ପ୍ରସାଦ ପାଦ ଛୁଇଁଲା ପରେ ସୋନସୀ ତାଙ୍କର ପାଦ ଛୁଇଁଲା । ସୋନସୀ ମା' ପାଖରେ ବରଗୁଡ଼ି କାଟିବାକୁ ବସୁଥିଲା, ସେତିକି ବେଳେ ମା' କହିଲେ, ''ଯା ଆଗ ଦୁହେଁ ମୁହଁ ହାତ ଧୋଇ ଆସ ।'' ଦୁହେଁ ମୁହଁ ହାତ ଧୋଇବାକୁ ଗଲାପରେ ମା' ତାଙ୍କର ଆଜ୍ଞା ପାଳନରେ ଖୁସି ହୋଇ ରଘୁବର ପ୍ରସାଦଙ୍କ ବାପାଙ୍କ ଆଡ଼କୁ ଅନାଇଦେଲେ । ରଘୁବର ପ୍ରସାଦଙ୍କ ବାପା ମୁରୁକି ହସିଲେ ।

''ଭାଇ ଆଜି ହାତୀ ଆସିଥିଲା ?'' ଛୋଟୁ ପଚାରିଲା ।

''ନା ।'' ରଘୁବର ପ୍ରସାଦ କହିଲେ ।

''ଆସିବ କି ?''

''କେଜାଣି ।''

''ଆସିଲେ ଯାକୁ ହାତୀରେ ବସାଇ ବୁଲାଇ ଆଣିବୁ ।'', ବାପା କହିଲେ ।

ରଘୁବର ପ୍ରସାଦ ଦେଖିଲେ ଯେ ସ୍ତ୍ରୀ ଗୋଟିଏ କୋଣରେ ବସି ବରଗୁଡ଼ି ଛୁଇଁ କାଟିଲାଣି । ତାଙ୍କୁ ଜ୍ୱର ହୋଇଥିଲା, ଶୋଇପଡ଼ିଥିଲେ ଭଲ ହୋଇଥାନ୍ତା । ଛୋଟୁ ପଦାରେ ଠିଆ ହୋଇଥିଲା । ସେ ବୋଧହୁଏ ହାତୀ ଆସୁଥିବାର ଦେଖିବାକୁ ଚାହୁଁଛି ।

ମା' ତାଙ୍କ ସାଙ୍ଗରେ ଦୁଇଟି କଂସା ଥାଳି, ଗୋଟିଏ ଚଟୁ ଆଉ ଅଦା ଛେଚିବା ପାଇ ଖଣ୍ଡିଏ କଳା ଗୋଲିଆ ପଥର ଆଣିଛି । କୁଲା, ଚାଲୁଣି ଆଣିବାକୁ ଭୁଲିଗଲା । ବନ୍ଧା ଥିଲା । ରଘୁବର ପ୍ରସାଦଙ୍କ ବାପାଙ୍କୁ ଲାଗୁଛି ଯେ କଳା ପଥରଟା କଷଟୀ ପଥର । ବାପା ସୁନାର ଗୋଟିଏ ତମ୍ବାଟିଆ ମୁଦି ପିନ୍ଧିଥିଲେ । ସୁନାରେ ତମ୍ବା ଭାଗ ବେଶି ଥିଲା । ସେହି ମୁଦିକୁ ସେ ସେଇ ପଥରରେ ଘଷିକରି ଦେଖିଥିଲେ, ଯେ ଗୋଟିଏ ହାଲୁକା ସୁନେଲି ତମ୍ବାଟିଆ ଗାର ତା' ଉପରେ ଅଙ୍କା ହୋଇଗଲା, ସେହ ଗାରଟି ବି ପଥର ସାଙ୍ଗରେ ଚାଲି ଆସିଛି । ରଘୁବର ପ୍ରସାଦ ଛୋଟୁ ପାଖକୁ ଗଲେ, କାଳେ ତାର ସଫା ଜାମାପଟା ମଇଳା ହୋଇଯିବ ସେଥିପାଇଁ ସେ ପଥର ଚାଇଁ ଓ ଗଛ ଉପରେ ଚଢ଼ିବାର ଖେଳ ଖେଳୁ ନ ଥିଲା । ସେ ହାତୀରେ ବସି ବୁଲିଯିବାର ପୋଷାକ ପିନ୍ଧିଥିଲା । ସେ ଛୋଟୁକୁ କହିଲେ, ''ଆଜି ବୁଲି ଯିବାନି । ତୋ ଭାଉଜର ବହୁତ ଜର ହୋଇଛି ।''

''ଭାଉଜଙ୍କର ଜର ହେଇଛି ?'' ଛୋଟୁ ପଚାରିଲା ।

''ହଁ '', ସେ ଭିତରକୁ ଗଲା ଓ କହିଲା, ''ମା । ଭାଇ କହୁଛନ୍ତି ଭାଉଜଙ୍କୁ ଜର ହେଇଛି । ଏହା ଶୁଣି ରଘୁବର ପ୍ରସାଦ ବ୍ୟସ୍ତ ହୋଇପଡ଼ିଲେ । ଭଲ ହୋଇଥାନ୍ତା ଯେବେ ଛୋଟୁ ଆଗ କହିଥାନ୍ତା, ''ବୁଲିଯିବାନାହିଁ ।'' ତା'ପରେ ମା ପଚାରିଥାନ୍ତା । ହାତୀ ଆସିବନି କି ?

''ବୋଧେ ଆସିବ ନାହିଁ । ଦଶହରା ଦିନ ତ ।'' ବାପା କହିଥାନ୍ତେ ।

''ହାତୀ ଆସିଲେ ବି ସମସ୍ତେ କେମିତି ଯିବେ, ଭାଉଜଙ୍କୁ ତ ଜର ।'' ଛୋଟୁ କହିଥାନ୍ତା ।, ଏମିତିକା କଥା ହୋଇଥିଲେ ଭଲ ହୋଇଥାନ୍ତା । ରଘୁବର ପ୍ରସାଦ ଅନୁମାନ କରିନେଲେ ଯେ ମା' ବାପା କ'ଣ ବିଚାରିଥିବେ ।

ମା' ସୋନସୀକୁ ପଚାରିଲା, ''ବୋହୂ ତୋତେ ଜର ହେଇଛି ?'' ସୋନସୀ ବରଗୁଡ଼ି କାଟୁ କାଟୁ ମୁଣ୍ଡ ହଲାଇ 'ନା', କହିଲା । ମା' ଉଠି ସୋନସୀ ପାଖକୁ ଗଲା, ମୁଣ୍ଡ ଛୁଇଁଲା । ''ଅଛି ତ, ବହୁତ ଜର ଅଛି ।'' ଏହା ଶୁଣି ବାପା ଉଠି ବସିଗଲେ । ସୋନସୀର ଆଖି ଛଳ ଛଳ ହୋଇଗଲା । ବୋଧେ ତା'ର ବାପଘର କଥା ମନେ ପଡୁଥିବ । ମାଆ ତା'ର ମଥାକୁ ଛାତିରେ ଲଗାଇ ଦେଲା । ''ଚାଲ୍ ଶୋଇପଡ଼ ।''

''ଡାକ୍ତରଙ୍କୁ ଦେଖାଇଛୁ ?'' ରଘୁବର ପ୍ରସାଦଙ୍କ ବାପା ପଚାରିଲେ ।

''ହଁ, ବଟିକା ଦେଇଛି ।''

''ବଟିକା କେତେବେଳେ ଖାଇବାକୁ ହେବ ?''

''ଦି ଦି ଘଣ୍ଟା ଅନ୍ତରରେ ।''

''ସମୟ ହୋଇଗଲା କି ?''

''ହଁ ।''

''ବଟିକା କୋଉଠି ଅଛି ବୋହୂକୁ ଦେ । ଛୋଟୁ, ଭାଉଜକୁ ଗିଲାସେ ପାଣିଦେ ।''

ରଘୁବର ପ୍ରସାଦ ବଟିକା ବାହାର କଲେ । ଛୋଟୁ ପାଣି ନେଇ ଭାଉଜ ପାଖକୁ ଗଲା । ରଘୁବର ପ୍ରସାଦ ଛୋଟୁକୁ ବଟିକା ଦେଲେ ସେ ତାକୁ ଭାଉଜକୁ ଦେବାକୁ । ବଟିକା ଖାଇଲା ପରେ ମା' ତାକୁ ଅଖା ଉପରେ ଶୁଆଇଦେଲା । ସୋନସୀର ପାଛୁଡ଼ା ଗାମୁଛା ଥୁଆ ହୋଇଥିଲା ତାକୁ ହିଁ ଆଣି ଘୋଡ଼ାଇଦେଲା ।

ମା' ରୋଷେଇ କରିବାକୁ ପ୍ରସ୍ତୁତ ହେଲା । ମା' ରୋଷେଇ କରିବ ବୋଲି ଜାଣି ସୋନସୀ ଉଠୁଥିଲା ଯେ ବାପା କହିଲେ, ''ବୋହୂ, ତୁ ଶୋଇଥା ।'' ସୋନସୀ ଶୋଇପଡ଼ିଲା । ସେ ନିଜର ପାଛୁଡ଼ା ଗାମୁଛା ଘୋଡ଼େଇ ହୋଇ ଟିକେ ପରେ ଶୋଇପଡ଼ିଲା । ବାପା ରଘୁବର ପ୍ରସାଦଙ୍କୁ ଆସ୍ତେ କରି କହିଲେ, ''ଝୁଲା ମୁଣି ଦେ ।'' ତା'ପରେ ସେ ରଘୁବରଙ୍କ ମା'ଙ୍କୁ ପଚାରିଲେ, ''କିଛି ଆଣିବାକୁ ଅଛି କି ?''

''ନା ।'' ରଘୁବରଙ୍କ ମା' କହିଲେ ।

''ମୁଁ ଆସୁଛି । ଖାଇବାକୁ ହେବା ଆଗରୁ ଫେରିଆସିବି ।'' ମୁଣି ନେଇ ସେ ଚାଲିଗଲେ ।

ସୋନସୀର ଜର ଓହ୍ଲାଇ ଯାଇଛି ।'ମୁହଁ ହାତ ଧୋଇ ମା' କଥା ମାନି ସେ ଖାଇନେଲା ଓ ତାକୁ ଭଲ ଲାଗିଲା । ଛୋଟୁ ତା'ର କୁରୁତା ଧୋତିକୁ ଲଗାତାର ମଇଳାରୁ ରକ୍ଷା କରି ମନକୁ ମନ ହାତୀର ବାଟ ଚାହିଁଥାଏ । କାଲେ ଆସିଯିବ । କେହି ନ ଗଲେ ବି ସେ ଏକୁଟିଆ ହାତୀ ଉପରେ ବସି ବୁଲି ଆସିବ । ସୋନସୀକୁ ଭଲ ଲାଗିବାରୁ ସେ ଘରକାମ କରିବାରେ ଲାଗିଗଲା । ଯେଉଁଠି ସୋନସୀ ଶୋଇଥିଲା ସେଇ ଜାଗାରେ ରଘୁବର ପ୍ରସାଦ ଯାଇ ଶୋଇପଡ଼ିଲେ ।

''ଛୋଟୁ !'' ବାହାରୁ ବାପା ଡାକୁଥିଲେ ।

''ଦେଖ୍ ହାତୀ ଆସୁଛି ନା ନାହିଁ ?'' ଛୋଟୁ ଦଉଡ଼ି କରି ପଦାକୁ ଗଲା । ହାତୀ ଆସୁଥିଲା । ମା, ରଘୁବର ପ୍ରସାଦ ବି ପଦାକୁ ଆସିଗଲେ । ବାପା ଘର ଭିତରକୁ ଆସି ମୁଣି ରଖି କହିଲେ, ''ବୋହୂ ମୁଢ଼ି ଆଣିଛି ତୁମେ ସବୁ ଖାଇନେବ ।'' ବାପା ବି ବାହାରକୁ ଆସିଗଲେ ।

ସାଧୁ ହାତୀକୁ ନ ବସାଇ ହାତୀ ଉପରୁ ଓହ୍ଲାଇ ପଡ଼ିଲା । ଯେମିତି ଆବୁଡ଼ା ଖାବୁଡ଼ା ପଥରର ପାଖେ ପାଖେ ଗୋଡ଼କୁ ରଖି ରଖି ପାହାଡ଼ ଉପରୁ ଓହ୍ଲାନ୍ତି, ହାତୀ ଉପରେ ଦୁଇପାଦ ଏକଡ଼ ସେକଡ଼ ରଖି ସେ ତଳକୁ ଓହ୍ଲାଇ ଥିଲା । ଓହ୍ଲାଇଲା ମାତ୍ରେ ସେ କାନ୍ଧରୁ ଗାମୁଛା ନେଇ ପାଛୁଡ଼ି ପକାଇ ପୁଣି କାନ୍ଧରେ ଥୋଇଦେଲା । ସେ ଧୋତିକୁ ଢିଲା କରି ବାନ୍ଧିଥିଲା ଓ ହଳଦିଆ କୁର୍ତ୍ତା ପିନ୍ଧିଥିଲା । କୁର୍ତ୍ତାର ରଙ୍ଗ ଫିକା ହୋଇଯାଇଥିଲା । ପୋଷାକଯାକ ସଫାସୁତୁରା ଥିଲା ଓ ଇସ୍ତିରି ବି ହୋଇଥିଲା ଦଶହରା ଦିନ ବୋଲି ବୋଧହୁଏ । ଛୋଟୁ ବହୁତ ଉତ୍ସାହିତ ହୋଇଥିଲା ।

''ରାବଣଭାଟା ଯିବ କି ?'' ସାଧୁ ରଘୁବର ପ୍ରସାଦଙ୍କୁ ପଚାରିଲା ।

''ସେଠି ବହୁତ ଭିଡ଼ ହୋଇଥିବ । ହାତୀ ବେକରେ ତ ଘଣ୍ଟି ନାହିଁ, ଲୋକେ କେମିତି ଜାଣିବେ ଯେ ହାତୀ ଆସୁଛି ବୋଲି ?'' ରଘୁବର ପ୍ରସାଦ କହିଲେ ।

ହାତୀ ଆସିବାର ବହୁତ ଦୂରରୁ ଦେଖାଯାଏ । ତାକୁ ଦେଖିବାର ଖବର ମିଳିଯାଏ ଓ ଅନ୍ୟମାନଙ୍କୁ ଜଣା ପଡ଼ିଯାଏ ।

''ତା'ହେଲେ ବି !'' ରଘୁବର ପ୍ରସାଦ କହିଲେ ।

''ଚାଲନ୍ତୁ କିଛି ହେବନି ।''

''ଛୋଟୁ ବି ଯିବ ।'' ବାପା କହିଲେ ।

''ବୋହୂ ବି ଯିବ ।'' ରଘୁବର ପ୍ରସାଦଙ୍କ ମା' କହିଲେ, ସେ ଭିତରକୁ ଗଲେ ।

''ବୋହୂ ଜଲଦି ବାହାର, ହାତୀରେ ଚଢ଼ି ବୁଲିଆ ।'' ସୋନସୀ ଶୀଘ୍ର ଶୀଘ୍ର ମୁହଁ ହାତ ଧୋଇଲା ।

''ବୋହୂ ଏଠି ତ ଦୁଇଟି ଶାଢ଼ି ନୂଆ ରହିଥିବ ।''

''ହଁ ମା' ।'' ସୋନସୀ ଆସ୍ତେ କରି କହିଲା ।

''ଲାଲ୍ ଶାଢ଼ିଟା ପିନ୍ଧିନେ ।''

''ହଉ ମା ।''

ମା' ଖଟିଆ ଉପରେ ଭାଙ୍ଗି ରଖାଥିବା ବିଛଣାକୁ ତଳେ ଚଟାଣ ଉପରେ ବିଛା ହୋଇଥିବା ଅଖା ଉପରେ ଥୋଇଦେଲା । ସତରଞ୍ଜି ଉଠାଇଦେଲା ଓ ଖଟିଆକୁ ଠିଆକଲା । ସତରଞ୍ଜିକୁ ମା ଖଟିଆ ଉପରେ ଟାଙ୍ଗିଦେଲା ।

''ଖଟିଆ ଆଢୁଆଳରେ ଶାଢ଼ି ପାଲଟିଦେବୁ ।'' ସୋନସୀ ନୂଆ ଲାଲ୍ ଶାଢ଼ି ନେଇ ଖଟିଆ ଆଢୁଆଳକୁ ଚାଲିଗଲା । ତଳେ ବସି ସେ ବ୍ଲାଉଜ ପିନ୍ଧିଲା । ତା'ପରେ ଲାଲ୍ ଶାଢ଼ି ପିନ୍ଧିଲା । ଖଟିଆ ଆଢୁଆଳରୁ ସେ ବାହାରି ଆସିଥିଲା ।

''ବିନ୍ଦି ନାଇଚୁ ?'' ମା' ପଚାରିଲା ।

''ହଁ ମା' ।''

ପାଇଝରୀ ପିନ୍ଧିନେବୁ । ସୋନସୀ ପାଇଝରୀକୁ ଓହ୍ଲାଇ ଦେଇଥିଲା ।

''ହଉ ମା' ।''

''ରଘୁବର !'' ମା' ଡାକିଲା ।

''ତୁ ବି ଲୁଗା ବଦଳାଇ ନେ ।'' ମା' ରଘୁବରଙ୍କ ବାପାଙ୍କର କଷା ରଙ୍ଗର କୁରୁତା ଯାହା ପ୍ରାୟ ପନ୍ଦର ବର୍ଷର ପୁରୁଣା, ତାକୁ ମୁଣିରୁ ବାହାର କଲା ।

ଗାମୁଛାରେ ଭାଙ୍ଗକରି ରଖାହୋଇଥିଲା । ସେ କୁରୁତା, ଧୋତି ବାହାରକଲା ।

''ନେ ପିନ୍ଧିପକା ।'' ରଘୁବର ପ୍ରସାଦ ବାପାଙ୍କଠାରୁ ଡେଙ୍ଗା ଥିଲେ । କୁରୁତା ବଡ଼ ଥିଲା, ବାପା ହାତକୁ କବଜି ପାଖରୁ ମୋଡ଼ି ପିନ୍ଧୁଥିଲେ । ରଘୁବର ପ୍ରସାଦ ବି ଖଟିଆ ଆଢୁଆଳକୁ ଚାଲିଗଲେ । ତାଙ୍କୁ କୁରୁତାଟି ଠିକ୍ ହୋଉଥିଲା । ଲମ୍ବାରେ ଟିକିଏ ଛୋଟ ହେଉଥିଲା । ରଘୁବର ପ୍ରସାଦ ଧୋତି ପିନ୍ଧିଲେ । ଗାଁର ବୁଣା ଧୋତି, ମୋଟା ଖଦି ଭଳିଆ । ଧୋତିର ଧଡ଼ି ସୁନେଲି ରଙ୍ଗର । ବାଳରେ

ପାଣି ଲଗାଇ ରଘୁବର ପ୍ରସାଦ ମୁଣ୍ଡ କୁଣ୍ଡାଇଲେ । ଏଣ୍ଡିର କୁରୁତା ଆଉ ସୁନେଲି ଧଡ଼ିର ଧୋତି ପିନ୍ଧି ରଘୁବର ପ୍ରସାଦ ସୁନ୍ଦର ଦିଶୁଥିଲେ । ସୋନସୀ ଘର ଭିତରେ ଯୋଉଠି ଥିବ, ସେଠି କିଛି ବେଶୀ ଆଲୁଅ ଥିବା ଭଳି ଲାଗେ । ଯେଉଁଠି ପାଣିର କୁଣ୍ଡ ଥିଲା ସେ ଜାଗା ଘର ଭିତରେ କିଛି ଅନ୍ଧାରିଆ ଜାଗା ଥିଲା । ସୋନସୀ ସେଠି ଥିଲେ ସେ ଅଂଶଟି ବେଶୀ ଆଲୋକିତ ଲାଗେ ।

ସମସ୍ତେ ଖାଲି ଗୋଡ଼ରେ ହାତୀରେ ବସିବାକୁ ବାହାରିଲେ । ସାଧୁ ହାତୀରେ ଆଗରୁ ବସି ପ୍ରସ୍ତୁତ ଥିଲା । ପାଖପଡ଼ିଶାର ଲୋକମାନେ ବି ପିଲାକବିଲାଙ୍କ ସାଙ୍ଗରେ ରାବଣଭଟା ଯିବାଲାଗି ପ୍ରସ୍ତୁତ ଥିଲେ । ଯିବାର ଲୋକ କିଛି ସମୟ ଲାଗି ହାତୀ ପାଖରେ ଅଟକି ଯାଆନ୍ତି । ଯାଉଥିବା ଲୋକ ରଙ୍ଗରଙ୍ଗେଲି ଶାଢ଼ି ଓ ପୋଷାକ ପିନ୍ଧିଥିବା ମାଇପେ, ଝିଅମାନେ, ମିଣିପେ, ପିଲାମାନଙ୍କ ଦଳ ଥିଲା । ହାତୀ ଉପରେ ବସିବା ଆଗରୁ ରଘୁବର ପ୍ରସାଦ ଓ ସୋନସୀ ବାପା ଓ ମାଆଙ୍କର ପାଦ ଛୁଇଁଲେ । ଯେତେବେଳେ ରଘୁବର ପ୍ରସାଦ ହାତୀରେ ଚଢ଼ିବାକୁ ଗଲେ, ସମସ୍ତେ ଠିଆ ହୋଇ ତାଙ୍କୁ ଚାହୁଁଥିଲେ । ତା'ପରେ ରଘୁବର ପ୍ରସାଦଙ୍କ ସ୍ତ୍ରୀ, ତା'ପରେ ଛୋଟୁ ଚଢ଼ିଲା । ସାଧୁ ସମସ୍ତଙ୍କୁ ଠିକ୍ କରି ବସାଇବାକୁ ସାହାଯ୍ୟ କରୁଥାଏ । ଛୋଟୁ ସାଧୁକୁ ଧରିକରି ବସିଥିଲା । ଆଉ ସୋନସୀ ରଘୁବର ପ୍ରସାଦଙ୍କୁ ଧରି ବସିଥିଲା । ଘରର କବାଟ ପାଖରେ ମାଆ ଓ ବାପା ଠିଆ ହୋଇଥିଲେ ।

ହାତୀ ପିଠିରେ ଆଳୁ ପତରର ଗଦି ବନ୍ଧା ହୋଇଥାଏ । ହାତୀ ଗାଧୋଇ ପାଧୋଇ ବେଶ ସଜିଲ ହେବା ପରି ଦିଶୁଥାଏ । ସମସ୍ତେ ବସିଲା ପରେ ହାତୀ ଚାଲିବାକୁ ଆରମ୍ଭ କଲା । ରାବଣଭଟା ଯାଉଥିବା ଦୁଇଜଣ ମହିଳା ହାତ ଯୋଡ଼ିକରି ରଘୁବର ପ୍ରସାଦ, ସୋନସୀ ଓ ଛୋଟୁଙ୍କର ଶୋଭାଯାତ୍ରାକୁ ପ୍ରଣାମ କଲେ । ଯେତେବେଳେ ହାତୀ ଆଗେଇଗଲା ସେତେବେଳେ ମା' କହିଲେ, ''କେତେ ବଢ଼ିଆ ଯୋଡ଼ି ହୋଇଛନ୍ତି । ଛୋଟୁ ଲକ୍ଷ୍ମଣ ପରି ଲାଗୁଛି ।'' ବାପା କିଛି କହିଲେ ନାହିଁ ।

ଆଗରେ ଡାହାଣ ପଟେ ଆମ୍ବତୋଟା ଥିଲା । ସାଧୁ ହାତୀକୁ ସେକଡ଼ ପଟେ ନେଇଗଲା । କିଛି ସମୟ ପରେ ଦୂରରେ ଆସୁଥିବା ଅନ୍ଧାର ମଧ୍ୟରେ ରାବଣ ଦେଖାଗଲା । ଅନ୍ଧାର ହେବା ମାତ୍ରେ ରାବଣ ବାଣ ସମେତ ଜଳି ଉଠିଲା । ହାତୀ ଉପରେ ଚଢ଼ି ସେମାନଙ୍କ ଉପରେ ରାବଣ ପୋଡ଼ି ହେବାର ଆଲୁଅ ଲାଖି ରହିଥିଲା । ଗଛ ମଧ୍ୟରେ ନିଆଁର ଝଲକାରେ ସମସ୍ତେ ମୁହୂର୍ତ୍ତେ କାଳ ଦେଖିପାରିଲେ ।

ସାଧୁ ହାତୀକୁ ଫେରାଇଲା କାରଣ ଅନ୍ଧାର ହୋଇଯାଇଥିଲା । ଲେଉଟି ଆସୁଥିବା ଲୋକଙ୍କ ଭିଡ଼ ଆସିବାରେ ହାତୀକୁ ଜୋର୍‌ରେ ଚଳାଇବା କଷ୍ଟ ହେବ । ଛୋଟୁ ଖୁବ୍ ଖୁସି ହେଲା । ଫେରିବା ବେଳେ କିଛି ବାଟ ଯାକେ ରହି ରହି ବାଣ ଫୁଟିବାର ଶବ୍ଦ ତାକୁ ଶୁଣାଯାଉଥିଲା ।

ବାପାଙ୍କୁ ଛାଡ଼ି ରାତିରେ ସମସ୍ତେ ଚଟାଣ ଉପରେ ଶୋଇଲେ । ଚୁଲି ଆଡ଼େ ସୋନସୀ, ତା'ପରେ ମା', ଛୋଟୁ, ରଘୁବର ପ୍ରସାଦ । ରଘୁବର ପ୍ରସାଦଙ୍କ ପରେ ବାପା ଖଟିଆ ଉପରେ ଶୋଇଥିଲେ । ଛୋଟୁ ଆଗ ବାପାଙ୍କ ସାଙ୍ଗେ ଶୋଇଥିଲା ପରେ ଚଟାଣକୁ ଆସିଗଲା । ରାତି ଅଧ ହେଲାଣି । ରଘୁବର ପ୍ରସାଦ ଓ ସୋନସୀ ଚେଇଁ ରହିଥିଲେ । ସୋନସୀକୁ ଜଣାଥିଲା ଯେ ରଘୁବର ପ୍ରସାଦଙ୍କୁ

ନିଦ ଆସୁନାହିଁ । ରଘୁବର ପ୍ରସାଦ ଆସ୍ତେ କରି ଉଠିଲେ ଓ ଝରକା ପାଖକୁ ଯାଇ ଠିଆ ହୋଇଗଲେ । ରଘୁବର ପ୍ରସାଦଙ୍କର ମନହେଲା ସେ ଝରକା ବାଟେ ଡେଇଁକି ସେ ପଟକୁ ଚାଲିଯାନ୍ତେ । ସେ ଡେଇଁବାକୁ ଯାଉଛନ୍ତି ସୋନସୀ ଆସି ତାଙ୍କ ପାଖରେ ଠିଆ ହୋଇଗଲା । ରଘୁବର ପ୍ରସାଦ ଶବ୍ଦ ନ କରି ଡେଇଁଗଲେ । ଯେତେବେଳେ ସୋନସୀ ଡେଇଁବାକୁ ବସିଲା ସେତେବେଳେ ରଘୁବର ପ୍ରସାଦ ତାକୁ ଫୁସ୍ ଫୁସ୍ କରି କହିଲେ, ''ତୁମେ ଆସ୍ତେ କରି ଡେଇଁ ପାରିବ ନାହିଁ । ତୁମେ ମୋ ପିଠିରେ ଲଦି ହୋଇଯାଅ ।'' ରଘୁବର ପ୍ରସାଦ ଝରକା ଆଡ଼କୁ ପିଠି ଦେଖାଇ ଠିଆ ହୋଇ ପଡ଼ିଲେ । ସୋନସୀ ଝରକାର ଏରୁଣ୍ଡି ଉପରେ ଗୋଡ଼ ଝୁଲାଇ ବସିପଡ଼ିଲା । ''ମୁଁ ଆସ୍ତେ ଆସ୍ତେ ଡେଇଁ ଯାଉଛି ।''

''ନା'', ରଘୁବର ପ୍ରସାଦ କହିଲେ । ତା'ପରେ ସୋନସୀ ରଘୁବର ପ୍ରସାଦଙ୍କ ବେକରେ ହାତ ଦେଇ ଲଟକି ପଡ଼ିଲା । ପିଠିରେ ସୋନସୀକୁ ବୋହି ରଘୁବର ପ୍ରସାଦ ବୁଲିଲେ । ଦୁହେଁଯାକ ଘର ଭିତରକୁ ଚାହିଁନେଲେ କାଳେ କିଏ ଚେଇଁଥିବ । ଛୋଟୁ ମା' ଉପରେ ଗୋଟିଏ ଗୋଡ଼ ଥୋଇ ଶୋଇଥାଏ । ବାପା କାନ୍ଥକୁ ମୁହଁକରି ଶୋଇଥିଲେ । ଘର ଭିତରେ ଝରକାରୁ ଅଳ୍ପ ଆଲୁଅ ପଡ଼ିଥିଲା । ଝରକା ସକାଶେ ଅନ୍ଧାରର ଏକ ହାଲୁକା ଆସ୍ତରଣ ଜମିଯାଇଥିଲା । ସୋନସୀ ପିଠିରେ ଚଢ଼ି ଯୋଉଠି ସେ ଶୋଇଥିଲା ସେ ଜାଗାକୁ ଚାହିଁଲା । ପୁଣି ଯୋଉଠି ରଘୁବର ପ୍ରସାଦ ଶୋଇଥିଲେ ସେ ଜାଗାକୁ ଚାହିଁଲା । ଝରକାର ସିଧା ଆଲୁଅ ଯାଇ ପାଣିର କୁଣ୍ଡ ଉପରେ ପଡୁଥିଲା । ସୋନସୀ ଦେଖିଲା କୁଣ୍ଡ ଉପରେ ଢାଙ୍କୁଣୀ ନାହିଁ । ଛୋଟୁ ପାଣି କାଢ଼ିଥିବ ଓ ଢାଙ୍କୁଣୀ ଲଗେଇବାକୁ ଭୁଲିଯାଇଥିବ । ସୋନସୀ ଓହ୍ଲାଇବାକୁ ଯାଉଛି ଏତିକିବେଳେ ରଘୁବର ପ୍ରସାଦ ତାଙ୍କ ଗଳାରେ ଲାଗି ରହିଥିବା ସୋନସୀର ହାତକୁ ଜୋରରେ ଜାବୁଡ଼ି ଧରିଲେ ।

''ଓହ୍ଲେଇବି, ଛାଡ଼ିଦିଅ କୁଣ୍ଡି ଖୋଲା ଅଛି ।''

''ଖୋଲା ରହିଥାଉ ।'' କହି ରଘୁବର ପ୍ରସାଦ ସୋନସୀକୁ ବୋହି କରି ଅନ୍ଧାରରେ ଚାଲିବାକୁ ଆରମ୍ଭ କଲେ ।

''ପକେଇ ଦବନି ।''

''ପଡ଼ିବନି, ଏକପଦୀ ରାସ୍ତାକୁ ମୁଁ ଭଲ ଜାଣେ ।''

ଗଭୀର ରାତିର ଶାନ୍ତି ଥିଲା । ଏହି ଶାନ୍ତିରେ ସମସ୍ତଙ୍କର ଅଲଗା ପ୍ରକାରର ଶାନ୍ତି ଥିଲା, ଯଥା ଅଶ୍ୱତ୍‌ଥଗଛ ମୂଳେ ଥିଲା ଅଶ୍ୱତ୍‌ଥଗଛର ଶାନ୍ତି । ଯେଉଁ ଅଜଣା ଗଛ ତଳ ଦେଇ ସେମାନେ ଯାଉଥିଲେ ସେ ଗଛମୂଳେ ଅଜଣା ଗଛର ଶାନ୍ତି ଥିଲା । ସୋନସୀ ରଘୁବର ପ୍ରସାଦଙ୍କ କାନ୍ଧରେ ବୋଝେଇ ହୋଇ ରଘୁବର ପ୍ରସାଦଙ୍କର ପ୍ରତ୍ୟେକ ପଦକ୍ଷେପରେ ଆସ୍ତେ କରି ଚହଲିଯାଏ ଓ ହୁଁ ! ହୁଁ ! କରି ଆଳାପ କରୁଥାଏ । ତା'ର ଏହି ସ୍ୱରଟି ଗଛ, ପୋଖରୀ, ଟାଙ୍ଗର, ପ୍ରତ୍ୟେକ ଏକାନ୍ତରେ ଶୁଣାଯାଉଥିଲା । କଥା ହେଲା ଏ ଦିଜଣ ଚେଇଁଥିଲେ ଓ ଆଉ ସବୁକିଛି ନିଦରେ ଚୁର୍ ଥିଲା । ଗଛ ନିଦରେ ଗଛ ଥିଲେ । ପୋଖରୀ ନିଦରେ ପୋଖରୀ ଥିଲା । ଆକାଶ ନିଦରେ ଆକାଶ ଥିଲା ।

ପକ୍ଷୀମାନେ ନିଦରେ ପକ୍ଷୀ ଥିଲେ । ବାତାବରଣଟି ନିଦମୟ ଥିଲା । ସୋନସୀ ତାର ଭାରି ଆଖିପତା ଖୋଲି ଦେଖିଲା ଯେ ଠାଏ ଠାଏ ଚକଚକିଆ ବିନ୍ଦୁରେ ପୂରା ଚକଡ଼ା ଭର୍ତ୍ତି ହେବାର ଦେଖାଯାଉଥିଲା । ହୁଏତ ଅଭ୍ରକର ଚୁନା ଚୁନା ଧୂଳିରେ ଚକଡ଼ାଟି ଭର୍ତ୍ତି ହୋଇଯାଇଛି । ତାରାର ଆଲୁଅରେ ସେସବୁ ଚକ୍ ଚକ୍ କରୁଥାନ୍ତି । ଏପରି ଜାଗାକୁ ଦେଖି ସୋନସୀର ଅଟକିଯିବାକୁ ତୁରନ୍ତ ମନ ହେଲା ।

ସେ କହିଲା, ''କୁଆଡ଼େ ଯାଉଛ ? ଏଇଠି ରହିଯାଅ ।'' ରଘୁବର ପ୍ରସାଦ କିଛି କହିଲେ ନାହିଁ । ସୋନସୀ ନିଜ ଗୋଡ଼କୁ ରଘୁବର ପ୍ରସାଦଙ୍କ ଅଣ୍ଟାରେ ଭିଡ଼ିଦେବାକୁ ଚାହୁଁଥିଲା କିନ୍ତୁ ଶାଢ଼ି ଯୋଗୁ ଭିଡ଼ି ପାରୁ ନଥିଲା ।

''ମୋର ଗୋଡ଼ କାଟିଲାଣି ।''

''ତୁମେ ତ ଚାଲୁନାହଁ । ତୁମ ଗୋଡ଼ କାହିଁକି କାଟିବ ?''

''ହାତକୁ ବି କାଟୁଛି ।''

''କାଟୁନି ମୋତେ ।'' ରଘୁବର ପ୍ରସାଦ କହିଲେ ।

''ଗୋଡ଼ ଲଟକି ଲଟକି କାଟିଲାଣି । ଆଉ ତମର ହାତର ଜାବୁଡ଼ ଯୋଗୁରୁ ହାତ ଭାଙ୍ଗିବାକୁ ବସିଲାଣି ।''

''ଆଚ୍ଛା, ହାତ ଛାଡ଼ିବ ନାହିଁ ।'' କହି ରଘୁବର ପ୍ରସାଦ ଦୁଇ ହାତକୁ ପଛକୁ ନେଇ ସୋନସୀର ଶାଢ଼ିକୁ ଆଣ୍ଠୁ ଉପରୁ ଟେକିଦେଇ କହିଲେ, ''ଏଥର ଅଣ୍ଟାରେ ଗୋଡ଼କୁ ଭିଡ଼ିନିଅ ।'' ସୋନସୀ ରଘୁବରଙ୍କ ଅଣ୍ଟାରେ ଗୋଡ଼କୁ ଛନ୍ଦିଦେଲା ପରେ ରଘୁବର ପ୍ରସାଦ ସୋନସୀର ଜଂଘ ତଳେ ଦୁଇ ପାପୁଲିକୁ ଛନ୍ଦି ଦେଇ ଉପରକୁ ଉଠାଇଦେବାରୁ ସୋନସୀର ହାତ ରଘୁବର ପ୍ରସାଦଙ୍କ ଷଣ୍ଢାରେ । ଢୁଗୁଳା ହୋଇଗଲା । ରଘୁବର ପ୍ରସାଦ ସେତେବେଳକୁ ବହୁତ ଧୀରେ ଧୀରେ ଚାଲୁଥିଲେ ।

''ଏଇଲେ ଠିକ୍ ଅଛି ?'' ରଘୁବର ପ୍ରସାଦ ପଚାରିଲେ ।

''ହଁ ଠିକ୍ ଅଛି ।'' ସୋନସୀ କହିଲା ।

ରଘୁବର ପ୍ରସାଦ ପୋଖରୀ କୂଳେ କୂଳେ ଚାଲିଲେ । ସୋନସୀ ପୋଖରୀରେ ରଘୁବର ପ୍ରସାଦଙ୍କର ଛାଇ ଉପରେ ନିଜର ବୋଝେଇ ଛାଇକୁ ଚାହୁଁଥିଲା । ରଘୁବର ପ୍ରସାଦ ସୋନସୀକୁ ଧରି ପୋଖରୀକୁ ଓହ୍ଲାଇ ପଡ଼ିଲେ । ଆଣ୍ଠୁଯାକେ ରଘୁବର ପ୍ରସାଦଙ୍କ ଧୋତି ତିନ୍ତିଗଲା । କିଛିକାଳ ସେହିପରି ପୋଖରୀରେ ଠିଆ ହୋଇ ରହିଲେ । ପୋଖରୀରୁ ବାହାରିବା ପରେ ଆହୁରି ଭଲ ଲାଗିଲା । ପୋଖରୀ ପାଖରେ ଗୋଟିଏ କୁଦ ଥିଲା । ରଘୁବର ପ୍ରସାଦ ସୋନସୀକୁ ନେଇ ସେହି କୁଦ ଉପରେ ଚଢ଼ିଲେ । ସେ କୁଦଟି ନିଦମୟ କୁଦ ଥିଲା । ସୋନସୀ କହିଲା, ''ମୋତେ ଓହ୍ଲେଇ ଦିଅ । ତମେ ବହୁତ ଥକିଯିବଣି । ମୁଁ ତମକୁ ବହୁତ ଥକଉଛି ।'' କୁଦ ଉପରେ ଶୁଖିଲା ପତ୍ରର କୁଢ଼ ଥିଲା । ତାହାରି ପାଖରେ ରଘୁବର ପ୍ରସାଦ ସୋନସୀକୁ ଓହ୍ଲାଇଦେଲେ । ସେହି ପତ୍ରର ଅନ୍ଧାର ଭିତରେ ଚାରିଟି ଜୁଳୁଜୁଳିଆ ପୋକ ପାଖକୁ ପାଖ ଚମକୁଥିଲେ । ସୋନସୀ ଯେତେବେଳେ ପତ୍ରକୁ ହଟାଇଲା ସେଥିରୁ ଚାରିଟି ଜୁଳୁଜୁଳିଆ ପୋକ ଗୋଟି ଗୋଟି କରି ଉଡ଼ିଗଲେ । ଉଡ଼ିଯାଉଥିବା ଜୁଳୁଜୁଳିଆଙ୍କର

ଛାୟା ସେମାନେ ପୋଖରୀ ଉପରେ ଦେଖିଲେ ।

ସୋନସୀ ରଘୁବର ପ୍ରସାଦଙ୍କ ବାହୁରେ ମଥା ରଖି ଠିଆ ହୋଇଥିଲା । ପୋଖରୀ ଉପରେ ତାରାମାନଙ୍କ ଛାୟା ପଡ଼ିଥିଲା । କେଉଁ ମାଛ ଯୋଗୁ ପୋଖରୀର ପାଣି ଚହଲିଗଲା ଯେ ସୋନସୀ ଦେଖିଲା ଯେ କିଛି କିଛି ତାରାଙ୍କର ଛାୟା ଭାସି ଭାସି ପାଖାପାଖି ହୋଇଗଲେ । ସୋନସୀ ଉପର ଆକାଶକୁ ଅନେଇଲା ଯେ ଦେଖିଲା କିଛି କିଛି ତାରା ପାଖାପାଖି ଆସିଗଲେଣି ଯେମିତିକି ଆଗରୁ ଦୂରରେ ଥିଲେ । ସୋନସୀ ରଘୁବର ପ୍ରସାଦଙ୍କ ସାଙ୍ଗରେ ଲାଖିକରି ବସୁ ବସୁ ସେଇଠି ଶୋଇଗଲା । ସୋନସୀର ଗୋଡ଼ ଗଡ଼ାଣି ଆଡ଼କୁ ରହିଥିଲା ।

''ତୁମ କାନ୍ଧରେ ଚନ୍ଦ୍ରମା ବସିଛି ।'' ସୋନସୀ ଶୋଇ ରହି ହାତ ଟେକି କହିଲା । ସତେ ଯେମିତି ସେ ରଘୁବର ପ୍ରସାଦଙ୍କୁ ଡାକୁଛି ଓ ରଘୁବର ପ୍ରସାଦ ବହୁତ ଦୂରରେ ଅଛନ୍ତି । ରଘୁବର ପ୍ରସାଦ ଠିଆ ହୋଇ ସୋନସୀକୁ ଦେଖୁଥିଲେ । ସୋନସୀର ମନେହେଲା ରଘୁବର ପ୍ରସାଦଙ୍କ କାନ୍ଧରେ ବସିଥିବା ଚନ୍ଦ୍ରମା ପାଖକୁ ଆସୁଛି । ସୋନସୀ ତାର ପାଖକୁ ଆସିବାର ସୁଖର ତେଜକୁ ସହିବା ଲାଗି ଆଖି ବୁଜି ଦେଇଥିଲା ।

ଠିଆ ହୋଇ ସୋନସୀ ଦେଖିଲା ଯେ ପୋଖରୀ ଆଲୋକିତ ପୋଖରୀ ଥିଲା । ପୋଖରୀର ସ୍ତର ଆଲୋକିତ ସ୍ତର ଦିଶୁଥିଲା ।

ଚନ୍ଦ୍ରମା କ'ଣ ପୋଖରୀରେ ବୁଡ଼ିଗଲା ?'' ସୋନସୀ ରଘୁବର ପ୍ରସାଦଙ୍କୁ ପଚାରିଲା ।

''ହଁ ପୋଖରୀରେ ବୁଡ଼ିଗଲା ।''

''ଦେଖ ଗୋଟିଏ ଆଲୋକିତ ମାଛ ଚନ୍ଦ୍ରମା ଆଡ଼କୁ ଆସୁଛି ।''

''ପୋଖରୀର ଜଳ ବି ଆଲୋକିତ ସବୁଜ ଅଛି ।''

''ଚନ୍ଦ୍ରମା, ତାରାଯାକ, ସବୁ ପୋଖରୀର ପାଣିରେ ଧୋଇ ହୋଇ ଗଲେଣି । ଆକାଶରେ ଏମାନଙ୍କୁ ଚାହଁ, ଏମାନେ ସମସ୍ତେ ଶୀତଳ ଓ ସ୍ୱଚ୍ଛ ଦିଶିବେ ।''

''ହଁ, ଖାଲି ସେତିକି ତାରା ଧୋଇହୋଇଛନ୍ତି ଯାହାଙ୍କ ଛାଇ ପୋଖରୀରେ ଦିଶୁଛି । ବାକି ତାରାଯାକ ଏତେ ଶୀତଳ କି ସ୍ୱଚ୍ଛ ନୁହନ୍ତି ।''

''ଚନ୍ଦ୍ରମା ଶୀତଳ ଓ ସ୍ୱଚ୍ଛ ଅଛି ।''

''ଚାଲ ।'' ରଘୁବର ପ୍ରସାଦ କହିଲେ ।

''କୁଆଡ଼େ ?''

''ଆଲୋକିତ ପାଣିରେ ବୁଡ଼ି ଚନ୍ଦ୍ରମା ପାଖରେ ଗାଧୋଇବା ।''

''ଚନ୍ଦ୍ରମା ପାଖରେ ମୁଁ ଗାଧୋଇବି ନାହିଁ ।''

''ହଉ ଚନ୍ଦ୍ରମାଠାରୁ ଦୂରରେ ଗାଧୋଇବା ।'' ଲୁଗାପଟା ଖୋଲି ଚନ୍ଦ୍ରମା ଠାରୁ ଦୂରରେ ଦୁହେଁ ପୋଖରୀକୁ ଡେଇଁପଡ଼ିଲେ । ବହୁତ ଡେରିଯାକେ ଦୁହେଁ ବୁଡ଼ି ବୁଡ଼ି ଗାଧୋଇଲେ ।

''ଚନ୍ଦ୍ରମା ତମ ପାଖକୁ ଛପି ଛପି ଆସୁଛି ।'' ରଘୁବର ପ୍ରସାଦ କହିଲେ ।

''ଓଃ ମା !'' ସୋନସୀ କହିଲା ଆଉ ସେ ପହଁରି କରି ଚନ୍ଦ୍ରମାଠାରୁ ଦୂରକୁ ଚାଲିଗଲା ।

ଆସ ବାହାରି ଆସ । ସମସ୍ତଙ୍କର ଉଠିବାର ବେଳ ହୋଇଯାଉଛି । ବୁଢ଼ୀ ମାଆ ରାଗ ମିଶାଇ କହିଲା । ସେ ପୋଖରୀ କୂଳରେ ଠିଆ ହୋଇଥିଲା ।

''ବୁଢ଼ୀ ମାଆ ଚାହା ଅଛି ।'' ରଘୁବର ପ୍ରସାଦ ପଚାରିଲେ ।

''ନାହିଁ, ଚାହା ପିଇବା ବେଳକୁ ସମସ୍ତେ ଉଠିଯିବେ । ଜଲଦି ଦଉଡ଼ି ଯା ।''

''ହଉ ।'' ରଘୁବର ପ୍ରସାଦ କହିଲେ । ବୁଢ଼ୀ ମାଆ ଚାଲିଗଲା ।

''ଜଲଦି ପଦାକୁ ବାହାର ।'' ସୋନସୀ କହିଲା ।

ସୋନସୀ ପଶ୍ଚିମ ଦିଗରେ ଦଶଟି ତାରା ଘୁଡ଼ି ଆକାରରେ ଯାଉଥିବାର ଦେଖିଲା । ପୂର୍ବ ଦିଗରୁ ତାରାମାନେ ବିଭିନ୍ନ ଆକୃତି ନେଇ ଗୋଟି ଗୋଟି କରି ପଶ୍ଚିମ ଆଡ଼େ ଏକାଠି ହେଉଥାନ୍ତି । ପୂର୍ବରେ ସୂର୍ଯ୍ୟ ଉଦୟ ହେବାକୁ ପ୍ରସ୍ତୁତ ହେଉଥିଲା ।

ଦୁହେଁ ଦଉଡ଼ି ଦଉଡ଼ି ଘର ଆଡ଼କୁ ଫେରୁଥିଲେ । ଘରର ଟିକିଏ ପାଖ ହୋଇଛି କି ନାହିଁ । ଚଢ଼େଇମାନେ ଡାକି ଉଠିଲେ । ଆଉ ଟିକିଏ ପାଖକୁ ପହଞ୍ଚିଲା ବେଳକୁ କୋଇଲି କୁହୁ କୁହୁ ଡାକିଲା । ରଘୁବର ପ୍ରସାଦ ଝରକା ଭିତରକୁ ଗଲାବେଳକୁ ଗାଈର ରମ୍ଭାରଡ଼ି ଶୁଣାଗଲା । ସୋନସୀ ଯେତେବେଳେ ଘର ଭିତରକୁ ଆସିଲା ସେତେବେଳକୁ ଖରାର ଗୋଟିଏ ଫିକା ଟୁକୁଡ଼ା ନିଃଶବ୍ଦରେ ଘର ଭିତରକୁ ପଶୁଥିଲା ।

ନିଜ ଜାଗାରେ ରଘୁବର ପ୍ରସାଦ ଯାଇ ଆଖି ବୁଜି ଶୋଇଗଲେ । ସୋନସୀ ତା' ନିଜ ଜାଗାରେ କାନିରେ ମୁହଁ ଢାଙ୍କି କରି ଶୋଇପଡ଼ିଲା । ସେତିକି ବେଳକୁ ବାପା ଉଠିଲେ ଓ ଆସ୍ତେ କରି ଦରଜାର ଗୋଟିଏ କବାଟ ଖୋଲି ବାହାରକୁ ଚାଲିଗଲେ । ଦରଜାକୁ ବେଶୀ ଖୋଲିଥିଲେ ଦରଜାର ଅନ୍ୟ କବାଟଟି ଛୋଟୁର ମୁଣ୍ଡରେ ବାଜିଥାନ୍ତା । କବାଟ ଭିତର ଆଡ଼କୁ ଖୋଲୁଥିଲା । ଏହାପରେ ମା' ଉଠିଲା ଓ ତା'ପରେ ଛୋଟୁ ଉଠିଲା । ମା' ରଘୁବର ପ୍ରସାଦଙ୍କୁ ଉଠାଇଲା । ରଘୁବର ପ୍ରସାଦ ଦୁଇଟିଯାକ କବାଟ ଖୋଲି ବାହାରକୁ ଚାଲିଗଲେ । ବାପା ସାମନାର ନିମ୍ବଗଛ ମୂଳେ ପଥର ଉପରେ ବସିଥିଲେ । ସଡ଼କ ଉପରେ ଘାସ ଲଦା ହୋଇଥିବା ଗୋଟିଏ ବଳଦଗାଡ଼ି ପଛେ ପଛେ ଗୋଟିଏ ଡେଙ୍ଗା ଗାଈ ବଳଦଗାଡ଼ିରେ ବୋଝେଇ ହୋଇଥିବା ଘାସରେ ମୁହଁ ମାରିବା ସକାଶେ ଯାଉଥିଲା । ଗାଈଟି ଘାସର ଗୋଟିଏ ଛୋଟ ଗୋଛା ଟାଣିକରି ସଡ଼କରେ ପକାଇ ଦେଲା । ବଳଦଗାଡ଼ି ବାଲାକୁ ଜଣା ପଡ଼ିଲାନାହିଁ ।

ମା' ବୋହୂକୁ ଉଠାଇଲା । ସେ ଚେଇଁଥିଲା । ମୁଣ୍ଡରୁ ଓଢ଼ଣା କାଢ଼ି ସେ ଉଠିଲା । ମା ଦେଖିଲା ବୋହୂ ପୋଲକା (ବ୍ଲାଉଜ ଜାତୀୟ ପୋଷାକ) ପିନ୍ଧିନାହିଁ । ମା ଛୋଟୁକୁ ବାହାରେ ରଘୁବର ପ୍ରସାଦଙ୍କ ପାଖକୁ ଯିବାକୁ କହିଲା । ଛୋଟୁ ଚାଲିଗଲା ।

''ବୋହୂ ପୋଲ୍‌କା ପିନ୍ଧିନାହୁଁ ।'' ମା ପଚାରିଲା । ଶୁଣିବା ମାତ୍ରେ ସେ କାନିରେ କାନ୍ଧକୁ ଘୋଡ଼ାଇ ଝରକା ବାଟେ ଡେଇଁବାକୁ ଯାଉଥିଲା ସେତେବେଳେ ମା' ଅଟକାଇଦେଲା ।

''ଆଉ ଗୋଟେ ପୋଲ୍‌କା ପିନ୍ଧିପକା । ରଘୁବର ପ୍ରସାଦକୁ କହିଦେ ସେ ନେଇ ଆସିବ ।'' କହି ମା ବାହାରକୁ ଆସିଲା ।

''ରଘୁବର ! ଦେଖିଲୁ ଭିତରେ କ'ଣ କାମ ଥିବ ।'' ରଘୁବର ଭିତରକୁ ଗଲେ । ସୋନସୀ ଆସ୍ତେ କରି କହିଲା, ''ପୋଲକା ସେଇଠି ପଡ଼ିରହିଲା । ଯାଇ ନେଇଆସ ।''

''ପିନ୍ଧିଛ ତ ।'' ଅଳସୁଆମିରେ ରଘୁବର ପ୍ରସାଦ କହିଲେ ।

''ଯେ ଆଉ ଗୋଟିଏ ।''

''କେହି ଦେଖିଛି କି ?''

''ମା କହିଛନ୍ତି ।'' ରଘୁବର ପ୍ରସାଦ ଝରକା ବାଟେ ଡେଇଁଗଲେ । ବୁଢ଼ୀ ମାଆ ବସି ବସି ବଢ଼ିଣା ଦେଇ ସାମନାଟା ପହଁରୁଥିଲା । ଗୋଟିଏ ହାତ ଥକିଗଲେ ଆର ହାତରେ ପହଁରା ଲଗାଏ । ରଘୁବର ପ୍ରସାଦ ଦଉଡୁ ଦଉଡୁ କିଛି କହିଲେ ନାହିଁ । କିନ୍ତୁ ବୁଢ଼ୀ ମାଆ ଶୁଣିଲା ଯେ ରଘୁବର ପ୍ରସାଦ କହୁଛନ୍ତି, ''ବୁଢ଼ୀ ମାଆ ବହୁତ ମିହନ୍ତ କରୁଛୁ ।''

ଫେରିବା ବେଳେ ରଘୁବର ପ୍ରସାଦ କହିଲେ, ''ବୁଢ଼ୀ ମାଆ ମୁଁ ଏଯାକେ ଚାହା ପିଇନାହିଁ ।'' ବୁଢ଼ୀ ମାଆ ଶୁଣିଲା, ରଘୁବର ପ୍ରସାଦ କହୁଛନ୍ତି, ''ଘଣ୍ଟା ଦି ଘଣ୍ଟା ଲାଗି ସୋନସୀକୁ କାମ କରିବାକୁ ଡାକି ଆଣିବ ।'' ଏତିକିବେଳେ ରଘୁବର ପ୍ରସାଦ ଦେଖିଲେ ଯେ ସେ ପୋଲକା ନ ଆଣି ତା' ଜାଗାରେ ପୋଖରୀରୁ କଇଁଫୁଲ ତୋଳି ଆଣିଛନ୍ତି । ଓଲଟା, ବାଟରେ ଦଉଡ଼ି ଯାଉ ଯାଉ ସେ ଦେଖିଲେ କୁଦ ପାଖରେ ବି ବୁଢ଼ୀ ମାଆ ଗଛ ତଳକୁ ବସି ବସି ଝାଡୁ ଲଗାଉଛି ।

ରଘୁବର ପ୍ରସାଦ କହିଲେ, ''ବୁଢ଼ୀ ମାଆ କ'ଣ ପୂରା ଜଙ୍ଗଲକୁ ପହଁରୁଛୁ ?''

''ମୁଁ ବହୁତ ବୁଢ଼ୀ ହେଲିଣି ।'' ବୁଢ଼ୀ ମାଆ କହିଲା । ରଘୁବର ପ୍ରସାଦ ଶୁଣିଲେ, ''ହଁ ।''

ରଘୁବର ପ୍ରସାଦ ଛପିକରି ଝରକାବାଟେ ଦେଖିଲେ ଯେ ବାପା ଝୁଲା ମୁଣିରୁ ମୁଢ଼ି ବାହାର କରି ଥାଳିରେ ରଖୁଛନ୍ତି । ମା ରଘୁବର ପ୍ରସାଦଙ୍କୁ ଝରକା ପାଖରେ ଦେଖି ନେଇଥିଲେ । ବାପାଙ୍କ ସକାଶେ ରଘୁବର ପ୍ରସାଦ ଭିତରକୁ ପଶିପାରୁ ନ ଥାନ୍ତି ।

''ତୁମେ ଟିକେ ବାହାରକୁ ଯିବ କି ?'' ମା କହିଲେ ।

''କାହିଁକି ? ଟିକେ ଲୁଣ ଲଙ୍କା ଆଉ ସୋରିଷ ତେଲ ଦେବ ।''

ମା', ବାପାଙ୍କ ପାଖକୁ ଯାଇ ମୁଢ଼ିର ଥାଳିକୁ ଟାଣିନେଇ ଆସ୍ତେ କରି କହିଲା, ''କାହିଁକି ମାଇଚିଆମି କରୁଛ ?'' ବାପା ଅନିଚ୍ଛାରେ ଉଠିଲେ । ସେ ଝରକା ବାହାରେ ରଘୁବର ପ୍ରସାଦ ଠିଆ ହୋଇଥିବାର ଦେଖିଲେ । ''ସେଠି କ'ଣ କରୁଛୁ ?''

କମଳ ଫୁଲ ତୋଳିବାକୁ ଯାଇଥିଲି ତୁମର ପୂଜା ପାଇଁ ।

ହଉ ଭଲ କଲୁ । ମୁଠା ଭିତରେ ରଘୁବର ପ୍ରସାଦ ପୋଲକା ଲୁଚାଇକରି ଭିତରକୁ ଡେଇଁଗଲେ ଓ କମଳ ଫୁଲଟି ବାପାଙ୍କୁ ଦେଲେ । ଧଳା କମଳ ଫୁଲ ।

''ବୋହୂ ତୁ ଗାଧୋଇ ପଡ଼ ।'' ମା' କହିଲା ।

''ମା' ମୁଁ ଗାଧୋଇ ସାରିଛି ।'' ସୋନସୀ କହିଲା । ସୋନସୀର ମନେହେଲା କେଉଁଠି ଭୁଲ୍ ହୋଇଯାଇଛି ।

''କେତେବେଳେ ଗାଧୋଇଗଲୁ ?'' ମା' କହିଲା । ମା' ଭୁଲିଗଲା, ତାର ମନେହେଲା କହିବାର ନଥିଲା । ରାତିରେ ଉଠିକରି ସେ ଦେଖିଥିଲା ଯେ ସୋନସୀ ଓ ରଘୁବର ଦୁହେଁ ଘରେ ନଥିଲେ । ଦରଜା ଭିତର ଆଡୁ ବନ୍ଦ ଥିଲା । ଝରକା ବାଟେ ଯାଇଥିବ ।

''ଆଗରୁ, ପୋଖରୀରେ ଯାଇ ଗାଧୋଇଥିଲି । ଭାବିଥିଲି ଯେ ସକାଳ ହୋଇଗଲାଣି । ଗାଧୋଇଲା ପରେ ବି ସକାଳ ହୋଇନଥିଲା ଦେଖି ପୁଣି ଶୋଇପଡ଼ିଲି ।'' ଆସ୍ତେ କରି ସୋନସୀ କହିଲା ।

''ଠିକ୍ ଅଛି, ଠିକ୍ ଅଛି ।''

''ଆଚ୍ଛା ଆମେ ଗାଧୋଇବାକୁ ଯିବା ।'' ବାପା ଝୁଲାରେ ନିଜର ଓ ରଘୁବର ପ୍ରସାଦଙ୍କ ମା'ଙ୍କର ଲୁଗା ରଖିଦେଇଥିଲେ ।

''ଏକଡ଼େ ଝରକା ବାଟେ ଚାଲିଯାଅ । ପାଖରେ ପୋଖରୀ ଅଛି । ସେଠି ଏକୁଟିଆ ବି ହେବ ।'' ରଘୁବର ପ୍ରସାଦ କହିଲା ।

''ଆମର ସେ ବୟସ ନାହିଁ । ସେଇଠି ଗାଧୋଇବୁ ଯୋଉଠି ବୁଡ଼ିଗଲେ କେହି ରକ୍ଷା କରିବାକୁ ଥିବ ।''

''ମୁଁ ବି ଯାଉଛି ।''

''ତୁ ବି ତ ଗାଧୋଇ ସାରିଛୁ ନା ?''

ହଁ । ରଘୁବର ପ୍ରସାଦ କହିଲେ ।

ବାପାଙ୍କର କାଶ ଉଠିଲା । ଖଙ୍କାରକୁ ଝରକା ବାଟେ ପକେଇବାକୁ ଯାଉଥିଲେ, ମା' ଅଟକାଇ ଦେଲା । ''ଆରେ ! ଆରେ ! ଏଠି ଛେପ ପକାଅନା । ପଦାକୁ ଯାଇ ନଳାରେ ପକାଅ । ପିଲାମାନେ ଝରକା ତଳେ ବସିଥାନ୍ତି । ରଘୁବର ଯା ଆସ କରେ । ଏ କିଛି ନର୍ଦ୍ଦମା ନୁହେଁ ।'' ମା' କହିଲା ।

ବାପା ଛେପ ପକାଉ ପକାଉ ଅଟକି ଗଲେ ଓ କବାଟ ବାଟେ ପଦାକୁ ଗଲେ । ବାପା ଯେବେ ଛେପ ପକେଇଥାନ୍ତେ ତେବେ ଝରକା ବାଟେ ଦିଶୁଥିବା ଆକାଶ ଉପରେ ଛିଟା ଲାଗିଯାଇଥାନ୍ତା ।

ଲୁଗାର ଝୁଲାମୁଣିଟି ବାପାଙ୍କ ହାତରେ ଥିଲା । ରଘୁବରଙ୍କ ମା, ରୋଗିଣା ପାତଳୀ ଥିଲେ । ଦୁହିଁଙ୍କ ବାଳ ଧଳା ହୋଇଯାଇଛି । ଯାଉ ଯାଉ କେବେ ବାପା ମାଆଙ୍କର ଆଶ୍ରା ନେଉଥାନ୍ତି । ପୁଣି କେବେ କେବେ ମାଆ ବାପାଙ୍କର ଆଶ୍ରା ନେଉଥାଏ ।

''ଛୋଟୁ ତୁ ବି କାହିଁକି ମା ସାଙ୍ଗରେ ଗଲୁନାହିଁ ।''

ମା' ମନା କରିଦେଲା । କହିଲା, ''ଏଇଠି ବାଲଟି ନେଇ ଗାଧୋଇପଡ଼ିବୁ । ଦୁହେଁ ଖାଲି ଗୋଡ଼ରେ ଯାଇଛନ୍ତି । ବାପାଙ୍କ ଚପଲ ପଦାରେ ପଡ଼ିଛି ।'' ଘର ଭିତରେ ଗୋଟିଏ କାନ୍ଥକୁରା ଭଳି ଜାଗା ଥିଲା ଯେ ତାହାରି ଭିତରେ ଜୋତା କି ଚପଲ ରଖାଯାଉଥିଲା । ବାପାଙ୍କର ଘର ଭିତରକୁ ଚପଲ ଆଣିବାଟା ପସନ୍ଦ ନୁହେଁ । ରଘୁବର ପ୍ରସାଦ ଜୋତାକୁ ପଦାରେ ଖୋଲି ହାତରେ ଧରି ନେଇ ସେଇ କାନ୍ଥକୁରାରେ ରଖୁଥିଲେ । ମା' ତ ଚପଲ ପିନ୍ଧେନା, ଗାଁରେ ଘର ବାହାରେ ବାଲଟି ଥୁଆ ହୋଇଥାଏ । ଘର ଭିତରକୁ ଆସିବା ଆଗରୁ ଗୋଡ଼ ଧୋଇ ଆସିବାକୁ ହେଉଥିଲା ।

ଛୋଟୁ ଚପଲ ଖର୍ଦ୍ଦି କରେ କିନ୍ତୁ ବହୁତ କମ ପିନ୍ଧେ । ଛୋଟୁ ଆଗରେ ରାସ୍ତାରେ ଗୋଟିଏ କୁକୁର ବାପାଙ୍କର ଗୋଟିଏ ଚପଲ ନେଇ ପଳେଇଗଲା । ଛୋଟୁ 'ହଟ୍ ! ହଟ୍ !' କହି କହି କୁକୁରକୁ ଗୋଡ଼ାଇଲା ଆଉ କୁକୁର ଆହୁରି ଜୋରରେ ଦଉଡ଼ିଲା । ଆଉ ବିଲ ଆଡ଼େ ବୁଦା ଜଙ୍ଗଲ ଆଢୁଆଳରେ କେଉଁଠି ପଶିଗଲା । ଛୋଟୁର କଣ୍ଠ ଶୁଣି ରଘୁବର ବି ଦଉଡ଼ିଗଲେ । କ'ଣ ହେଲା ?

କୁକୁର ବାପାଙ୍କ ଚପଲ ନେଇ ପଳେଇଗଲା ।

କୁଆଡ଼େ ଗଲା ?

ସେଆଡ଼େ କେଉଁଠି ବୁଦାରେ ପଶିଗଲା । ଦୁହେଁ ମିଶି ବୁଦା ପାଖରେ ଚପଲ ଖୋଜିଲେ ହେଲେ ଚପଲ କୋଉଠି ପାଇଲେ ନାହିଁ । ପରେ ଫେରି ଗଲେ। ଗୋଟିଏ ଚପଲ ପଡ଼ିଥିଲା । ବାପା ଆସିବା ମାତ୍ରକେ ଛୋଟୁ କହିଲା, ''କୁକୁର ତମର ପଟେ ଚଟି ନେଇଗଲା ।''

''ଆରେ !''

''ଆମେ ଦୁହେଁ ଖୋଜିଲୁ ହେଲେ ଚପଲ ପାଇଲୁ ନାହିଁ । ତମକୁ କହିଥିଲି ଯେ ଭିତରେ କାନ୍ଥ କୁରାରେ ଚପଲ ରଖିବାକୁ ଯେ ମାନିଲେ ନାହିଁ ।'' ''ମିଳିଯିବ ।'' ମା' କହିଲା । ମା'ର କାନ୍ଧରେ ଧୁଆ ଲୁଗା ପଡ଼ିଥିଲା । ବାପା ଛୋଟୁ ସାଥୀରେ ଚପଲ ଖୋଜିବାକୁ ଗଲେ । ପଛେ ପଛେ ରଘୁବର ବି ଗଲେ । ଚପଲ ମିଳିଲା ନାହିଁ ।

ଚପଲ ହଜିବାଟା ବାପାଙ୍କୁ ବାଧୁଥିଲା । ତଥାପି ସେ ରଘୁବରଙ୍କ ମା'ଙ୍କୁ କହିଲେ, ''ଛଅ ମାସ ହେଲା, ବହୁତ ପିନ୍ଧିଥିଲି ।'' ଏହାର ଜବାବ ଦେବାକୁ ରଘୁବରଙ୍କ ମା' କହିବାକୁ ଚାହୁଁଥିଲେ, ''ଛଅମାସ ନୁହେଁ ଦୁଇମାସ ହୋଇଛି ।'' କିନ୍ତୁ କହିଲା ନାହିଁ । ଦୁଇ ପହର ବେଳକୁ ମା' ପଡ଼ିଶା ଘରକୁ ଯାଇଥିଲା । ବାପା ଖାଲି ମୁଣିଟା ଧରି ଚାଲିଯାଇଥିଲେ । ବାପା ଯେତେବେଳେ ବାହାରନ୍ତୁ ମୁଣିଟା ନିଶ୍ଚୟ ନେଇ ବାହାରିବେ । ତାଙ୍କର ମନେ ହେଉଥିଲା ଯେ ଦରକାରୀ ଜିନିଷ ଖୁବ୍ ଶସ୍ତାରେ କେଉଁଠି ହଠାତ୍ ମିଳିଯିବ । ତାକୁ କିଣି ରଖିବାକୁ ହେଲେ ମୁଣିଟା ଥିବା ନିହାତି ଦରକାର । ମୁଣିକୁ କେବେ ଭୁଲନ୍ତି ନାହିଁ, ପଇସା ନେବାକୁ ଭୁଲିଯାନ୍ତି । ଯେତେବେଳେ ପଇସା ନଥିବ, ମନେ ପଡ଼ିଗଲେ ବି ରଖିବେ ନାହିଁ । କେମିତି ରଖିବେ ? ଏମିତି ମୁଣିକୁ ସାଙ୍ଗରେ ଧରିବାର ଅର୍ଥ କ'ଣ ? ତାଙ୍କର ଏଭଳି ଉଦ୍ଦେଶ୍ୟ ନଥାଏ ଯେ ଦରକାରୀ ଜିନିଷ ମୁଣିରେ ନେଇ ଆସିବେ ଓ ପଇସା ପରେ ଦେଇ ଆସିବେ । ତାଙ୍କର ମନେ ହେଉଥିଲା ଯେ ଉଧାର ନେବାର ସମୟ ଏବେ ଚାଲିଗଲାଣି । ଯେତେବେଳେ ଶୁଝିବାର ବେଳଟି କଟିଯାଇଥାଏ ସେତେବେଳେ ଉଧାର ନେବାର ବେଳ ବି ଚାଲି ଯାଇଥାଏ । କେତେ ଜିନିଷ ମିଳୁଥାଏ କିନ୍ତୁ ସେ ଜାଣିଥାନ୍ତି ଯେ ସେସବୁ ଆମ ପାଇଁ ନୁହେଁ ।

ସାନ ପିଲାଟି ହେଲେ ବି ଜାଣିପାରେ । ଛୋଟୁ ବି ଜାଣିଯାଇଥିଲା । ଦେଖିନେଲେ ଯେବେ ଜିନିଷକୁ ପାଇବାର ସୁଖ ମିଳୁଥାନ୍ତା ତେବେ କେତେ ଭଲ କଥା ହୁଅନ୍ତା । ମିଠାଇ ଦେଖିଲେ ହିଁ ଖାଇବାର ସୁଖ । ସେପରି ହେଲେ ଖାଲି ଦେଖାଇବାକୁ ଅଳ୍ପ ଜିନିଷ ଥାନ୍ତା ଓ ସମସ୍ତଙ୍କର ଆବଶ୍ୟକତା ପୂର୍ଣ୍ଣ ହୋଇଯାନ୍ତା । ଅଜଣା ଖୁସି ଭାବିଚିନ୍ତି ହୋଇଥିବା ଦୁଃଖ ବି ଦୂର କରି ଦେଇଥାଏ । ରଘୁବର

ପ୍ରସାଦ କହିଲେ, ''ସୋନସୀ, ତୁମ ପାଖରେ ପଇସା ଅଛି ? ବାପାଙ୍କ ପାଇଁ ଚପଲ ଆଣିଥାନ୍ତେ ।''

''ଅଛି । ପଚିଶ ଟଙ୍କା ହବ ?''

''ହଁ ହୋଇଯିବ ।''

''ମୋ ମା' ଦେଇଥିଲା ।'' ସୋନସୀ କହିଲା ।

''ରଘୁବର ପ୍ରସାଦ ଖୁସିରେ ଛୋଟୁକୁ ସାଙ୍ଗରେ ନେଇଗଲେ । କିନ୍ତୁ ମାପ ଲାଗି ବାପାଙ୍କ ସାଙ୍ଗରେ ଆସିଥାନ୍ତେ ।'' ଛୋଟୁ କହିଲା ।

''ମାପ ପାଇଁ ବାପାଙ୍କ ଚପଲ ଅଛି ।'' ରଘୁବର ପ୍ରସାଦ ବାପାଙ୍କ ଚପଲ ପେଣ୍ଟଲୁନର ପକେଟ ଭିତରେ ପୂରାଇ ରଖିଛନ୍ତି । ଚଉଠେ ଚପଲ ପଦାକୁ ଦିଶୁଛି । ଗୋଲ୍ ବଜାରରେ ଜୋତା ଚପଲର ଦୋକାନଗୁଡ଼ାକୁ ଏମିତି ଯେ ଦରି ଉପରେ ଜୋତାର କୁଢ଼ ରଖାହୋଇଛି । ଦୁହେଁ ମିଶି ବାପାଙ୍କ ମାପର କଳା ରଙ୍ଗର ଚପଲ ବାଛିଲେ ।

ପକେଟରେ ବାପାଙ୍କର ପୁରୁଣା ଚପଲକୁ ରଘୁବର ପ୍ରସାଦ ରଖିଥିଲେ । ନୂଆ ଚପଲକୁ ଖବରକାଗଜରେ ଗୁଡ଼ାଇ ଛୋଟୁ ଧରିଥିଲା । ସେ ଖାଲିଗୋଡ଼ରେ ଡେଉଁଥିଲା । ରାସ୍ତାରେ ଦିଆସିଲିର ଖାଲି ଖୋଳଟିଏ ପଡ଼ିଥିଲା । ଛୋଟୁ ଚାଲୁ ଚାଲୁ ତାହାକୁ ଗୋଇଠା ମାରିଲା । ସାମନାରେ ଦିଆସିଲି ପାଖରେ ପଥର ଖଣ୍ଡଟିଏ ପଡ଼ିଛି । ''ଛୋଟୁ, ପଥର ଖଣ୍ଡରେ ଯେମିତି ନ ବାଜେ, ନ ହେଲେ ଠୋକର ଲାଗିଯିବ ।'' କିନ୍ତୁ ଛୋଟୁ ଲକ୍ଷ୍ୟ କରି ଦିଆସିଲିକୁ ମାରିଲା । ''ଭାଇ, ପଥରକୁ ତ ତୁମେ ମାରିବ । ତୁମେ ଜୋତା ପିନ୍ଧିଛ ।''

''ନାହିଁ । ପଥରଟା ବଡ଼ ଅଛି । ଜୋତା ଖରାପ ହୋଇଯିବ ।'' ରଘୁବର ପ୍ରସାଦ କହିଲେ ।

ଚପଲ ଦେଖି ମା' ଓ ସୋନସୀ ଖୁବ୍ ଖୁସି । ଚପଲକୁ ଝରକା ତଳେ ଛୋଟୁ ନେଇ ଥୋଇଦେଲା । ମା' ଗାଁର ଘର ଭଳି ବାଲ୍‌ଟିରେ ପାଣି ପଦାର ଦରଜା ପାଖରେ ରଖାଇଥିଲା । ବାଲ୍‌ଟିକୁ ଛୋଟ ଢାଙ୍କୁଣୀ ଦେଇ ଘୋଡ଼ା ଯାଇଥିଲା । ଏବେ ଗୋଡ଼ ଧୋଇ ସମସ୍ତେ ଘରକୁ ଯିବା ଆରମ୍ଭ କରିଛନ୍ତି । ବାପାଙ୍କ ନଜର ଚପଲ ଆଡ଼କୁ ପଡ଼ି ନ ଥିଲା । ସୋନସୀ ଆଉ ସମ୍ଭାଳି ପାରି ନଥିଲା । ସେ ଚପଲ ଆଣି ବାପାଙ୍କ ଗୋଡ଼ ପାଖରେ ଥୋଇଦେଲା ।

''ଆରେ, କାହାର ଚପଲ ଇଏ ?'' ବାପା ପଚାରିଲେ, ତା'ପରେ ରାଗିଲେ ।

''ମାପ ଲାଗି ଆପଣଙ୍କର ଗୋଟିଏ ବଳକା ଚପଲ ନେଇଯାଇଥିଲୁ ।'' ରଘୁବର ପ୍ରସାଦ କହିଲେ ।

''ଆଚ୍ଛା'' କହି ବାପା ମୁରୁକି ହସିଲେ । ତାଙ୍କୁ ଚପଲ ଠିକ୍ ହୋଇଛି । ସେ ଚପଲକୁ ପିନ୍ଧିନେଇ ଘର ଭିତରେ ବୁଲିବାକୁ ଉଠି ଠିଆ ହେଲେ । ବାହାରୁ ଥକି କରି ଆସିଥିଲେ । ମା କହିଲା, ''ଖଟିଆରେ ବସି ଆରାମ କରନିଅ ।''

''ମୁଁ ଥକିନି ।'' ବାପା କହିଲେ ।

''ଶୋଇବା ଦରକାର ନାହିଁ । ଚପଲ ପିନ୍ଧି ବସିରୁହ'' ମା' କହିଲା । ରଘୁବରଙ୍କ ମା'ର ପରାମର୍ଶକୁ ବାପା ମାନିନେଲେ । ସେ ଖଟିଆ ଉପରେ ବସିରହିଲେ । ଚପଲ ପିନ୍ଧା ଗୋଡ଼ ତାଙ୍କର ବେଶ୍ ଘେନାଉଥିଲା । ଇତିମଧ୍ୟରେ ରଘୁବରଙ୍କ ମା' ଆସି ପାଖରେ ବସିଗଲେ । ପୁଣି ଚପଲକୁ ଦେଖି ପଚାରିଲେ, ''ଭଲ ହେଇଛି ନା ?''

''ହଁ ।'' ସେଇଠୁ ସେ ଦୁହିଁଙ୍କର ଝରକା ଦେଇ ସେ ପଟକୁ ଯିବାକୁ ମନ ହେଲା ।

''ଚାଲ ।'' ଚପଲ ଖୋଲି ବାପା କହିଲେ । ତାଙ୍କୁ ସାହାଯ୍ୟ କରିବାକୁ ରଘୁବର ପ୍ରସାଦ ଝରକା ସେ ପଟକୁ ଚାଲିଆସିଥିଲେ । ବାପା ଷ୍ଟୁଲ୍ ଦେଇ ଝରକାର ଚଉକାଠ ଉପରେ ପଦାକୁ ଗୋଡ଼ ଝୁଲାଇ ବସିଗଲେ ।

ରଘୁବର ତାଙ୍କୁ ତଳକୁ ଓହ୍ଲାଇ ଦେଲେ । ଷ୍ଟୁଲ୍ ଉପରେ ଗୋଡ଼ ରଖି ମା' ଚଢ଼ିଲାରୁ ସୋନସୀ ତାଙ୍କୁ ସାହାଯ୍ୟ କଲା । ରଘୁବର ମା'କୁ ସମ୍ଭାଳି ତଳେ ଓହ୍ଲାଇଦେଲେ । ସେଠି ଏତିକିରେ ତାଙ୍କୁ ଏତେ ଭଲ ଲାଗୁଥିଲା ଯେ ବାପା ଆଗକୁ ବଢ଼ିଯାଇଥିଲେ । ତାଙ୍କ ପଛେ ପଛେ ମା' ଯାଉଥିଲା । ''ରଘୁ ! ତୁ ଯିବୁ ନାହିଁ?'' ବାପା ପଚାରିଲେ ।

''ରଘୁ ଯାଉନାହିଁ ।'' ରଘୁବରଙ୍କ ମା' କହିଲେ । ବାପା ବୁଲି ଚାହିଁଲେ । ଦେଖିଲେ ଯେ ରଘୁବର ଆଉ ସୋନସୀ ଝରକା ପାଖେ ଠିଆ ହୋଇଛନ୍ତି । ସୋନସୀ ମଥାରେ ଓଢ଼ଣା ଦେଇଛି । ସେ ରଘୁବରଙ୍କ ଡାହାଣ ହାତଟି ତାର ଦୁଇ ହାତରେ ଧରିଥିଲା । ବାପା ବୁଲି ଚାହିଁଲା ପରେ ବି ସୋନସୀ ଓ ରଘୁବର ସେହିପରି ଠିଆ ହୋଇରହିଲେ । ରଘୁବରଙ୍କର ବି ମନେ ନଥିଲା । ବାପା କହିଲେ, ''ପଛକୁ ଅନାଅ ତ ।'' ରଘୁବରଙ୍କ ମା' ବୁଲିପଡ଼ି ଚାହିଁଲେ ଓ କହିଲେ, ''ଦେଖିନେଇଛି ।'' ଆଗକୁ ଯାଇ ବାପା ପଚାରିଲେ, ''ଛୋଟୁ କାହିଁ ?''

''କୋଉଠିକି ଖେଳିବାକୁ ଯାଇଛି, ଏଯାଏ ଫେରିନି।''

''ସେ ବି ଆସିଥାନ୍ତା ।''

''ରଘୁ ସାଥୀରେ ଆସିଯିବ ।''

''ତମେ ମୁଣିଟା ଆଣିଲ ନାହିଁ ?'' ରଘୁବର ମା' ପଚାରିଲା ।

''ମୁଁ ଭୁଲିଗଲି ।''

''ଆରେ, ଏଠି କ'ଣଟା ମିଳିବ ?''

''ମକ୍କା, ବରକୋଳି, ପିଆଜ, କିଛି ହେଲେ ତ ମିଳିଯିବ । କିଛି ନ ମିଳିଲେ ପୋଖରୀରେ ମୁଣିଟା ଧୋଇ ଆଣିବା ।''

''ଏଇ ଏକପଦୀ ରାସ୍ତା ଧର, ସେଠି ଦୂରରେ ବରଗଛ ଦିଶୁଛି ।'' ବାଟରେ ଗୋଟିଏ ବଡ଼ ମାଙ୍କଡ଼ ଗୋଟିଏ ଗଛରୁ ଓହ୍ଲାଇ ଆଉ ଗୋଟିଏ ଗଛ ଉପରେ ଚଢ଼ିଗଲା ।

''ସେଠି ଧୂଆଁ ଉଠୁଛି ।'' ବାପା କହିଲେ ।

''ବୁଢ଼ୀ ମାଆ ରାତିର ରନ୍ଧା ପାଇଁ ଯୋଗାଡ଼ କରୁଥିବ ।''

''ଏଇଲେ ତ ସୂର୍ଯ୍ୟ ବି ଅସ୍ତ ଯାଇନାହିଁ ।''

''ଦିନ ଆଲୁଅ ଥାଉଁ ଥାଉଁ କାମ ବଢ଼ାଇଲେ ଭଲ ହୁଏ ।''

''ହଁ ।''

ବୁଢ଼ୀ ମାଆର କୁଡ଼ିଆ ଦେଖାଗଲା, ସେମାନେ ସେଠି ପହଞ୍ଚିଲା ବେଳେ ଗୋଟିଏ ମାଙ୍କଡ଼ି ପେଟରେ ପିଲାକୁ ଜାକି ହଠାତ୍ ଡେଇଁପଡ଼ି ବରଗଛ ଉପରେ ଚଢ଼ିଗଲା । ଏବେ ସୂର୍ଯ୍ୟର ଆଲୁଅ ଦିଶୁଥିଲା । ଏଣେ ସୂର୍ଯ୍ୟ ଏପରି ବୁଡୁଥିଲା ଯେପରି ସେ ପଶ୍ଚିମ ଜାଗାରେ ଅଛି । ପୂରା ପଶ୍ଚିମୀ ବୁଡ଼ିଲା ସୂର୍ଯ୍ୟର ହାଲୁକା ଲାଲ୍ ରଙ୍ଗର ଆଲୋକ ଦିଶୁଛି । ସୂର୍ଯ୍ୟର ବୁଡ଼ିବାର ଆଲୁଅ ଏତେ ବେଶୀ ଦିଶୁଥିଲା ଯେ ସୂର୍ଯ୍ୟ ଏଇ ପାଖ ଆଖରେ କେଉଁଠି ଯେମିତି ବୁଡୁଛି । ତା'ର ସେଇ ବୁଡ଼ିବାଟା ପୁଣି ବହୁତ ବିଳମ୍ବରେ ବୁଡ଼ିବା ପରି ମନେହେଉଛି । ସୂର୍ଯ୍ୟଙ୍କର ବୁଡ଼ିବାଟା ଅଟକି ବୁଡ଼ିବା ପରି ଲାଗୁଛି । ପାଖଆଖ ଓ ଦୂର ଦୂରାନ୍ତର ପକ୍ଷୀ ଏଠାକାର ଗଛମାନଙ୍କ ଆଡ଼କୁ ଲେଉଟୁଥିଲେ । ଏଇ ପୂରା ଜାଗାଟି ଏଇଲେ ବସାର ଜାଗା ରୂପେ ବଦଳୁଛି ।

''ଏଠି ଜୀବନ ଏତେ ଭଲ ଲାଗୁଛି ଯେ ମନେ ହେଉଛି ଖୁବ୍ ବଞ୍ଚିଗଲେ ଆଉ ମୃତ୍ୟୁ ଏଠାରୁ ବହୁତ ପାଖ ହୋଇଥିବ ।'' ବାପା କହିଲେ ।

''ଏତେ ଭଲ ଯେ ବହୁତ ଜୀଇବା ପରେ ବି ବଳକା ଅଛି । ମୃତ୍ୟୁ ଏଠାରୁ ପାଖରେ ଥିଲେ ବି ଏଯାକେ ପହଞ୍ଚିବାକୁ ବହୁତ ବିଳମ୍ବ ହେବ ।''

''ଠିକ୍ କହିଲ, ବିଳମ୍ବର ଜୀବନ ବଳକା ଅଛି । ଏଠି କ'ଣ ଆମେ ମୃତ୍ୟୁକୁ ଦେଖି ପାରିବା ?''

''ବଳିଥିବା ଜୀବନକୁ ଦେଖିବା ପରେ ଫୁର୍ସତ୍ ମିଳିଲେ ସିନା, ଜିଅନ୍ତା ଆଖିରେ ମୃତ୍ୟୁ ନୁହେଁ, ଜୀବନ ଦିଶୁଥାଏ ।''

''ହଁ ।''

ତାଙ୍କର କଣ୍ଠସ୍ୱର ଶୁଣି ବୁଢ଼ୀ ମାଆ ବାହାରି ଆସିଥିଲା । ହୋମ ଧୂଆଁର ବାସନା ହେଉଥିଲା । ବୁଢ଼ୀ ମା' ସେ ଦୁହିଁଙ୍କୁ ଦେଖି ''ଦୀର୍ଘାୟୁ ହୁଅ'' କହିଲା ।

''ଛୋଟୁ ଆସିଲା ନାହିଁ ? ବୁଢ଼ୀ ମାଆ ପଚାରିଲା ।''

''ଆସିଲା ନାହିଁ ।''

ବୁଢ଼ୀ ମାଆ ଦୁହିଁଙ୍କ ଲାଗି ଚାହା କଲା । ରଘୁର ମା' ସାହାଯ୍ୟ କଲେ । ଚାହା ଶୀଘ୍ର ହୋଇଗଲା । ଚାହା ପିଇ ଦୁହେଁ ଏକପଦୀ ଉପରେ ବୁଲିଲେ । କିଛି ବାଟ ଧରି ତାଙ୍କ ଆଗରେ ଗୋଟିଏ ମାଙ୍କଡ଼ ଲାଙ୍ଗୁଡ଼ ଟେକି ଦଉଡୁଥିଲା । ତା'ପରେ କୁଆଡ଼େ ଚାଲିଗଲା । ସେ ଦୁହେଁ ଅସ୍ତ ସୂର୍ଯ୍ୟର ପଶ୍ଚିମ କେନ୍ଦ୍ରରେ ଥିବାରୁ ଆଲୋକରେ ଥିଲେ । ସେହି ଆଲୋକରେ ଦୁହେଁ ଯାଉଥିଲେ । ଏହାକୁ ଛାଡ଼ିଲେ ଆଲୋକ କମି ଯାଉଥିଲା । ଗୋଟିଏ ପୋଖରୀରେ ନାଲି ପଦ୍ମ ଥିଲା । ଗୋଟିଏ ଛୋଟ ଗଡ଼ିଆରେ ଧଳା ପଦ୍ମ ହୋଇଥିଲା । ବାପା ଛୋଟ ଗଡ଼ିଆ ଭିତରକୁ ପଶିଲେ ଓ ଦୁଇଟି ପଦ୍ମ ଫୁଲ ତୋଳିନେଲେ ।

''ତୁମେ ବି ତୋଳିନିଅ ।''

''ନା ମୋ ଦେଇ ହେବନାହିଁ ।''

''ଯାକୁ ତୋଳ, ଏଇଟା ପାଖରେ ଅଛି ।'' ରଘୁବର ମା' ଭିତରକୁ ପଶିଲେ ଓ ସେ ବି ଗୋଟିଏ ଫୁଲ ତୋଳିଲେ । ଦୁହେଁ ଟିଲା ଉପରକୁ ଚଢ଼ିଗଲେ । ପତ୍ରର କୁଢ଼ ପାଖରେ ରଘୁବର ମାକୁ ସୋନସୀର ପଟେ ପାଇଝରୀ ମିଳିଲା । ଦୁହେଁ ଫେରିଲେ । ବାଟରେ ଗୋଟିଏ ଗଛ ମୂଳେ ଚଉଡ଼ା ପାଖୁଡ଼ାର ଧଳା ଫୁଲ ପଡ଼ିଥିଲା । ଗଛଟି ଫୁଲରେ ଲଦିହୋଇ ହୋଇଥିଲା । ବାପାଙ୍କର ପୁଣି ମୁଣି କଥା ମନେପଡ଼ିଲା ।

''ମୁଣି ଥିଲେ ମୁଣିରେ ଫୁଲ ଭର୍ତ୍ତି କରିଥାନ୍ତେ ।''

''ମନେ ତ ପକେଇ ଦେଇଥିଲି ।''

''ମନେ ପଡ଼ିବା ପରେ ପୁଣି ଭୁଲିଗଲି ।''

ରଘୁବରଙ୍କ ମା'ଙ୍କର ମନହେଲା ସେ ଗୋଟିଏ ଫୁଲ ନେଇ ଖୋସାରେ ଖୋସିଦେବେ, ହେଲେ ଖୋସିଲେ ନାହିଁ । ବାପାଙ୍କର ମନ ହେଉଥିଲା । ଗୋଟିଏ ଫୁଲ ନେଇ ରଘୁବରର ମା' ଖୋସାରେ ଖୋସିଦେବେ କିନ୍ତୁ ଖୋସିଲେ ନାହିଁ । ଗଛ ମୂଳ ଦେଇ ସେମାନେ ଗଲାବେଳେ ଫୁଲର ବାସ୍ନା ତାଙ୍କ ସାଙ୍ଗରେ ଲାଖିଗଲା କିନ୍ତୁ ସେମାନଙ୍କୁ ଜଣାନଥିଲା । ଆଗ ଗୋଟିଏ ଫୁଲର ସୁଗନ୍ଧ ତାଙ୍କ ସାଙ୍ଗରେ ଚାଲିଲା । ତା'ପରେ ବହୁତ ଫୁଲର ସୁଗନ୍ଧ ତାଙ୍କ ସାଙ୍ଗରେ ଚାଲିଲେ ।

ସୂର୍ଯ୍ୟ ବୁଡ଼ିବାର ପଶ୍ଚିମ କେନ୍ଦ୍ରଟି ତାଙ୍କ ସଙ୍ଗେ ସଙ୍ଗେ ଚାଲିଯାଉଥିଲା । ସେଥିପାଇଁ ତାଙ୍କ ସାଙ୍ଗରେ ସନ୍ଧ୍ୟାର ଆଲୋକ ଥିଲା । ସେ ଦୁହେଁ ଝରକା ପାଖକୁ ଯାଇ ପହଞ୍ଚିଲେ । ସେଠୁ ଦେଖିଲେ ଯେ ରଘୁ ବହି ପଢୁଛି । ଛୋଟୁ ତା ଭାଉଜ ପାଖରେ ଅଖା ଉପରେ ଶୋଇଛି । ସେ ନିଜର ବାକ୍ସ ଖୋଲି କିଛି କାଢ଼ିବା ଓ ରଖିବାରେ ବ୍ୟସ୍ତ । ଏତିକିବେଳେ ସମସ୍ତେ ଝରକା ଆଡ଼କୁ ଚାହିଁଲେ, ବୋଧହୁଏ ଶବ୍ଦ ଶୁଣିଥିବେ । କିନ୍ତୁ ସେ ଦୁହେଁ ତ ଚୁପ୍ ଚାପ୍ ଆସିଥିଲେ । ଶବ୍ଦ କିଛି ଶୁଣାଯାଇନାହିଁ । କିନ୍ତୁ ସମସ୍ତଙ୍କୁ ଏକାବେଳେ ଫୁଲର ବାସନା ଜଣାପଡ଼ିଥିଲା । ସେହି ସୁଗନ୍ଧର କିଛି ଶବ୍ଦ ହୋଇଥାଇପାରେ । ସମସ୍ତେ ଏକାଠି ଉଠି ଝରକା ପାଖକୁ ଆସିଲେ । ମା ମୁଣ୍ଡରେ ଓଢ଼ଣା ଦେଇଥିଲେ । ବାପା ଘର ଭିତରକୁ ଆସିବା ଆଗରୁ ଝରକାର ପଦାଆଡୁ ବୋହୂ ହାତକୁ କମଳ ଫୁଲ ବଢ଼ାଇଦେଇଥିଲେ । ସୋନସୀକୁ ଲାଗିଲା ମା' ଖୋସାରେ ଫୁଲ ଖୋସିଥିବେ । ମା' ମୁଣ୍ଡରେ ଓଢ଼ଣା ଦେଇଥିବାରୁ ଜଣାପଡ଼ି ନାହିଁ । ଘର ଭିତରକୁ ଆସି ବାପା ନୂଆ ଚପଲ ପିନ୍ଧି ଠିଆ ହୋଇଗଲେ । ମା' ଲୁଚେଇ ସୋନସୀ ହାତରେ କିଛି ଧରାଇଦେଲେ । ସୋନସୀ ଦେଖିଲା ତାହାରି ପାଇଝରୀରୁ ପଟେ । ସେ ଟିଲା ଉପରେ ଛାଡ଼ିକରି ଭୁଲି ଆସିଥିଲା । ରଘୁବର ପ୍ରସାଦ ମା'କୁ ପାଇଝରୀ ଦେଉଥିବାର ଦେଖି ନେଇଥିଲେ । ବହୁତ ଫୁଲଙ୍କ ବାସନା ପରେ ଗୋଟିଏ ଶେଷଫୁଲ ମା' ପାଖରେ ବଳିଥିଲା । ସେହି ଫୁଲର ବାସନାରେ ମା' ପାଖରୁ ଚାଲିଯିବାକୁ ମନେ ନଥିଲା ।

ମା, ବାପା ଓ ଛୋଟୁଙ୍କର ଯିବା ପରେ ଦୁଇ ଦିନ ବିତିଗଲାଣି । ଛୋଟୁର ରହିବାକୁ ମନ ଥିଲା କିନ୍ତୁ ବାପାଙ୍କର ମନ ଛୋଟୁକୁ ନେଇଯିବାକୁ ହୋଇଥିଲେ । ସକାଳୁ ଯିବାବେଳେ ବାପା ପାଇଖାନାର ତାଲାକୁ ନିଜେ ସାଙ୍ଗରେ ନେଇଯିବାକୁ ଚାହୁଁଥିଲେ । କିନ୍ତୁ ରଘୁବର ମା' ମନା କରିଦେଇଥିଲେ ।

ଯେତେବେଳେ ବୋହୂ ଆସି ମା'ର ଗୋଡ଼ ଛୁଇଁଲା ସେତେବେଳେ ମା' ନିଜ କାନରୁ ସୁନାର ଗୋଟିଏ କାନଫୁଲ ଖୋଲି ଦେଇ କହିଲା, ''ବୋହୂ ୟାକୁ ତୁ ରଖିଥା, ଗୋଟିଏ କାନରେ ପିନ୍ଧିନବ । ଆର କାନର ଫୁଲଟା ଛୋଟୁର କନିଆଁ ଲାଗି ଅଛି ।''

''ଯିବାକୁ ଇଚ୍ଛା ନ ଥିଲେ ତୁମେ ରହିଯାଅ ।'' ରଘୁବରର ବାପା କହିଲେ । ''ଚାଲ ।'' ମା କହିଲେ ।

ଛୋଟୁ ଭାଇ ଭାଉଜଙ୍କ ଗୋଡ଼ ଛୁଇଁଲା । ରଘୁବର ବାପା ଓ ମା'ଙ୍କର ଗୋଡ଼ ଛୁଇଁଲେ । ସୋନସୀ ବାପା ଓ ମାଙ୍କର ପୁଣିଥରେ ପାଦ ଛୁଇଁଲା ।

ବସ୍ ଛାଡ଼ିବା ପରେ ବି ରଘୁବର ପ୍ରସାଦ ସେଇଠି ପାଖାପାଖି ଜାଗାରେ ବୁଲାବୁଲି କଲେ । ତା'ପରେ କିଛି ସମୟ ପରେ ଘରକୁ ଫେରିଲେ ।

''ସୋନସୀ ତମେ ମା'ର କାନଫୁଲ କାନରେ ପିନ୍ଧିଲ ?''

''ନା'', ସୋନସୀ କାନରେ ରୂପାର ଗୋଲ ବାଲା ଥିଲା । ସେ ଗୋଟିଏ ବାଲା ଖୋଲିଦେଲା ଓ ସୁନାର କାନଫୁଲ ପିନ୍ଧିଲା ।

''ୟାକୁ ରଖିଦିଏ ।'' ସେ ଖୋଲିଥିବା ରୂପାର ବାଲାକୁ ଦେଖାଇ ପଚାରିଲା ।

''ଆର କାନରେ ୟାକୁ ବି ପିନ୍ଧିନିଅ ।''

''ଦୁଇଟା ରୂପା ବାଲା ଏକାଠେଇଁ ?''

''ହଁ ଏକାଠେଇଁ । ଗୋଟିକରେ ଦୁଇଟି ରୂପାବାଲା ଓ ଆରଟିରେ ମା' ଦେଇଥିବା ସୁନାର ଫୁଲ ।''

''ପାଉଝରୀ ପିନ୍ଧି ନେଇଛ ?''

''ହଁ ।'' ସୋନସୀ ରଘୁବର ପ୍ରସାଦକୁ ନିଜର ଦୁଇପାଦ ଦେଖାଇଲା ।

ଝରକାର ଚଉକାଠ ଉପରେ ଗୋଟିଏ ସାବନା ଝିଅ ଠିଆ ହୋଇଥିଲା । ସେ ଦୁଇ ହାତରେ ଚଉକାଠ ଧରି ଠିଆ ହୋଇଥାଏ । ସେ ଡିଆରି ହୋଇକରି ଆସିଛି । ଚଉକାଠ ଉପରେ ତା'ର ଦୁଇହାତରେ ଗୋଟିଏ ଲେଖାଁ କାଣି ଆଙ୍ଗୁଠିରେ ନେଲ୍‌ପଲିସ୍ ଲଗା ହୋଇଥିଲା । ସୋନସୀ ତା ପାଖକୁ ଆସିଲା ।

''ଭିତରକୁ ଆସିବୁ ?''

''ନା ।'' ସେ ଲାଜେଇଯାଇ କହିଲା ।

''ହଉ, ରହିଥାଅ ।'' ସୋନସୀ କହିଲା ।

ସୋନସୀ ନିଜର ବାକ୍ସ ଖୋଲିଲା । ଗୋଟିଏ ପୁରୁଣା ଟିଣଡବା ଭିତରେ ନେଲ୍‌ପଲିସ୍, କ୍ଲିପ୍, ବିନ୍ଦି, ରବରବ୍ୟାଣ୍ଡ୍ ଓ ଯୋଡ଼ିଏ ଲାଲ୍ ଫିତା ଥିଲା । ସୋନସୀ ନେଲ୍‌ପଲିସ୍ ନେଇ ଝରକା ପାଖକୁ ଗଲା । ସେ ଆଣ୍ଠୁମୋଡ଼ି ବସିଗଲା । ହାତ ହଲେଇବୁ ନାହିଁ ମୁଁ ତୋର ସବୁ ଆଙ୍ଗୁଠିରେ ନେଲ୍‌ପାଲିସ୍ ତ ଲଗାଇଦେଉଛି ।'' କିନ୍ତୁ ଝିଅଟା ଉଙ୍କି ମାରି ତାର ଆଙ୍ଗୁଠିରେ ନେଲ୍‌ପାଲିସ୍ ଲାଗିବାଟା ଦେଖିବାକୁ ଚାହୁଁଥିଲା । ସୋନସୀ ତାର ଆଙ୍ଗୁଠିମାନଙ୍କରେ ନେଲ୍‌ପାଲିସ୍ ଲଗାଇଲା ।

‘‘ଗୋଡ଼ରେ ?’’

‘‘ଗୋଡ଼ରେ ଏଇଲେ ନୁହେଁ ।’’

ଝରକା ଆଡ଼କୁ ନୁହେଁ, ଆଢୁଆଳ ଲାଗି, ଠିଆ ରଖାଥିବା ଖଟିଆକୁ ବୁଲାଇଦେଲେ । ଖଟିଆ ଉଢ଼ାଳରେ ସେମାନେ ଭାଙ୍ଗ ହୋଇଥିବା ବିଛଣା ରଖିଥିଲେ । ଖଟିଆର ଏହି ଆଢୁଆଳ ତାଙ୍କର ବଖରାଟି ଭିତରେ ଅନ୍ୟ ବଖରା ଭଳି ଥିଲା । ରଘୁବର ପ୍ରସାଦଙ୍କର କଲେଜ ଯିବାକୁ ଇଚ୍ଛା ନ ଥିଲା । ହାତୀ ନ ଆସିଲେ ଭଲ । ଛୋଟୁ ଦିଅର ହାତୀରେ ବସି କଲେଜ ବୁଲି ଆସିଛି । ଗତ ଦି’ଦିନ ହେଲା ରଘୁବର ପ୍ରସାଦ କଲେଜରୁ ଜଲଦି ଆସି ଯାଉଥିଲେ । ଖଟିଆ ଆଢୁଆଳରେ ରଘୁବର ପ୍ରସାଦ ବସିଥିଲେ । ସୋନସୀ ବି ସେଠାକୁ ଆସି ଶୋଇପଡ଼ିଲେ ।

‘‘ଶୋଇପଡ଼ ।’’ ସୋନସୀ କହିଲା ।

‘‘ଏଇଲେ ହାତୀ ଆସିବାର ବେଳ ହେଲାଣି ।’’

‘‘ଯେତେବେଳେ ହାତୀ ଆସିବ, ତମେ ଉଠିଯିବ ।’’

‘‘ହଉ ।’’ କହି ରଘୁବର ପ୍ରସାଦ ଶୋଇପଡ଼ିଲେ ।

‘‘ଦିଦି ! ଦିଦି !’’ ଦୁଇ ତିନିଟି ପିଲାଙ୍କର ବଡ଼ ପାଟିରେ ଚିତ୍କାର ଶୁଣାଗଲା ।

‘‘କଥା କ’ଣ ?’’ ସୋନସୀ ଖଟିଆ ଆଢୁଆଳରୁ ଉଙ୍କିମାରି ପଚାରିଲା, ‘‘ମୋ ଆଙ୍ଗୁଠିରେ ବି ନେଲପଲିସ୍ ଲଗାଇଦିଅ ।’’ ତିନିଜଣଯାକ ଝିଅ କହିଲେ । ତିନିହେଁ ମୁହଁ ହାତ ଧୋଇ ଆସିଥିଲେ । ତାଙ୍କର ଆଙ୍ଗୁଠିଯାକ ଚଉକାଠ ଉପରେ ଏକାଠି ଜମା ହୋଇଥିଲା ।

‘‘ରୁହ, ଏଇ ଲାଗେ ଆସୁଛି ।’’ ସୋନସୀ ନେଲପଲିସ୍ ନେଇ ବସିଗଲା । ଏହା ଦେଖି ରଘୁବର ପ୍ରସାଦ ଖଟିଆ ଆଢୁଆଳରୁ ବାହାରି ଆସିଲେ । ସେ କଲେଜ ଯିବାକୁ ତିଆରି ହେବାକୁ ଆରମ୍ଭ କରିଦେଲେ । ଲୁଗାପଟା ପିନ୍ଧିନେଲେ ।

‘‘କ’ଣ ହେଲା ?’’

‘‘ଏଇଲେ କଲେଜ ଯାଉଛ ।’’ ସୋନସୀ ଜଲଦି ଜଲଦି ନେଲ୍‌ପଲିସ୍ ଲଗାଇ ଚାଲିଲା । ତୃତୀୟ ଝିଅର ଖାଲି ଗୋଟିଏ ହାତ ଚଉକାଠ ଉପରେ ।

‘‘ତୋର ବି ଆର ହାତଟା ଦେ ।’’ ତୃତୀୟ ଝିଅକୁ ସୋନସୀ କହିଲା ।

‘‘ନାହିଁ ସେଇଟା ।’’ ଝିଅଟି କହିଲା । ସୋନସୀ ଠିଆ ହୋଇ ଦେଖିଲା ଯେ କହୁଣୀ ପାଖରୁ ତାର ହାତ କଟା ହୋଇଥିଲା ।

‘‘ମୁଁ ତୋ ମଥାରେ ବିନ୍ଦି ଲଗେଇଦେଉଛି ।’’ ସୋନସୀ ତା’ ମଥାରେ ଗୋଟିଏ ବିନ୍ଦି ଲଗାଇଦେଲା ।

‘‘ଆହା, କେଡ଼େ ଥଣ୍ଡା ।’’ ସେ ଝିଅ ଖୁସି ହୋଇ କହିଲା ।

ହାତୀ ଆସିଲା । ପଦାରୁ ଶବ୍ଦ ଶୁଣାଯାଉଥିଲା । ରଘୁବର ଦରଜା ଖୋଲିଲେ । ହାତୀ ଦୂରରେ ଥିଲା । ‘‘ମୁଁ ଯାଉଛି ।’’ କହି ହାତରେ ଜୋତାକୁ ଧରି ନିମ୍ବ ଗଛ ମୂଳେ ଯାଇ ଠିଆ ହୋଇଗଲେ । ହାତୀ ଆସିଲା । ରଘୁବର ପ୍ରସାଦ ଜୋତା ଧରି ହାତୀ ଉପରେ ବସିପଡ଼ିଲେ । ହାତୀ ଚାଲିଯିବା

ପରେ ସୋନସୀ ଉଦାସିଆ ହୋଇଗଲା । ସେ ଘରକାମ କରିବାକୁ ଲାଗିଲା । ଯେତେ ବେଳଯାକେ ରଘୁବର ପ୍ରସାଦ ଘରେ ଥିବେ ସୋନସୀର କାମଯାକ ଅଟକି ଯାଇଥାଏ । ସେ ରଘୁବର ପ୍ରସାଦଙ୍କ ଆସିବା ଆଗରୁ ସବୁକାମ କରିଦେବାକୁ ଚାହୁଁଥିଲା ।

ସନ୍ଧ୍ୟାବେଳେ ରଘୁବର ପ୍ରସାଦ ଯେତେବେଳେ ଫେରିଲେ ସେ ସାଧୁକୁ ଚାହା ପିଇକରି ଯିବାକୁ କହିଲେ । ରଘୁବର ପ୍ରସାଦ ଭିତରକୁ ଆସିଗଲେ । କିଛି ସମୟ ପରେ ସାଧୁକୁ ଦେଖିବାକୁ ପଦାକୁ ଆସି ଦେଖିଲେ ସାଧୁ ନାହିଁ । ହାତୀ ସେଇଠି ଶୁଣ୍ଢକୁ ହଲେଇ ଝୁଲେଇ ଠିଆ ହୋଇଥାଏ । ଯେଣୁ ସେ ହାତୀକି ଛାଡ଼ିକରି ଚାଲିଯାଇଛି ତା'ର ପାଖ ଆଖରେ ହିଁ କେଉଁଠି ଥିବାର କଥା । ଜଲ୍‌ଦି ଆସିଯିବ । ହାତୀ ବନ୍ଧା ହୋଇ ନ ଥିଲା । ହାତୀର ପାଖ ଜାଗାରେ ଜଣେ ଦି'ଜଣ ପିଲା ଓ ବଡ଼ ମଣିଷ ଜମା ହେଉଥିଲେ । ରଘୁବର ପ୍ରସାଦ ସେମାନଙ୍କୁ ହୁସିଆର ହେବାକୁ କହିଲେ, ''ହାତୀ ଖୋଲା ଅଛି । ଦୂରେଇ ରହିବ ।'' ପାଖ ଆଖରେ ଠିଆ ହେଇଥିବା ଲୋକମାନେ ଦୂରକୁ ଚାଲିଗଲେ । ହାତୀ ନିମ୍ବଡାଳକୁ ଶୁଣ୍ଢରେ ଧରି ଭାଙ୍ଗିବାକୁ ଚେଷ୍ଟା କରୁଥାଏ । ରଘୁବର ପ୍ରସାଦ ହାତୀକୁ ଚାହିଁକରି ବସିଥିଲେ । ହାତୀ ଆଗ ସେଇଠାରେ ଏପଟ ସେପଟ ହେଉଥିଲା । ତା' ପରେ ଟିକିଏ ଆଗପଛ ଚାଲିବାକୁ ଲାଗିଲା । ରଘୁବର ପ୍ରସାଦଙ୍କୁ ଭୟ ଲାଗୁଥାଏ । ପଡ଼ିଶାମାନଙ୍କୁ ବି ଡର ମାଡୁଥାଏ । କିଛି ଘଟିଥିଲେ ଦାୟିତ୍ୱଟା ରଘୁବର ପ୍ରସାଦଙ୍କର ହୋଇଥାନ୍ତା । ରଘୁବର ପ୍ରସାଦ ଭାବୁଥିଲେ ଯେ ସେ ଆଉ କେବେହେଲେ ହାତୀରେ ବସିବେ ନାହିଁ । ହାତୀରେ ନ ଗଲେ ହାତୀ ଏଠିକି ଆସିବ ବି ନାହିଁ । କମ୍‌ରେ ଏମିତିକା ବିପଦ ତ ହେବନାହିଁ । ସୋନସୀ ଦରଜା ପାଖରେ ଠିଆ ହୋଇଥିଲା । ''ସୋନସୀ ତୁମେ ଭିତରକୁ ଯାଅ, ଦରଜା ଭିତରୁ ବନ୍ଦ କରିଦେବ ।'' ରଘୁବର ପ୍ରସାଦ କହିଲେ । ସୋନସୀର ଭିତରକୁ ଯିବାର ଇଚ୍ଛା ନଥିଲା । ସେ ରଘୁବର ପ୍ରସାଦଙ୍କ ପାଖରେ ଠିଆ ହେବାକୁ ଚାହୁଁଥିଲା ।

''ସୋନସୀ ଦରଜା ବନ୍ଦ କରିଦିଅ । ଝରକାରୁ ପବନ ଆସୁଛି ।''

''ମୁଁ ତୁମ ପାଖରେ ରହିବି ।''

''ଆଚ୍ଛା, ଘରେ କ'ଣ ବାଡ଼ି ଅଛି ?'

''ବାଡ଼ି କ'ଣ କରିବ ?''

''ଘର ଆଡ଼କୁ ହାତୀ ଆସିଲେ ତାକୁ ହଟ୍ ହଟ୍ କରି ତଡ଼ି ତ ପାରିବା । ସେଥିରେ ସେ ଡରିଯାଇପାରେ ।''

''ହାତୀ ବାଡ଼ିକୁ ଡରିବ ?'' ସୋନସୀ ପଚାରିଲା ।

''ଆଉ କ'ଣ କରିପାରିବା ?'' ତମେ ବାଡ଼ି ନେଇଆସ ତ। ଡରିଯାଇପାରେ । ଛୋଟୁର ଖେଳିବାର ଗୋଟିଏ ସାନ ବାଡ଼ି ପଡ଼ିଥିଲା, ତାକୁ ନେଇ ଆସି ସେ କହିଲା, ''ଏଇଟା ଅଛି ।''

''ଆଉ ବଡ଼ କିଛି ନାହିଁ ?''

''ନାଇଁ ଏଇ ଗୋଟିକ ଅଛି ।''

''ଠିକ୍ ଅଛି, ଏଇଥିରେ କାମ ଚଳାଇବା ।''

''ତମେ ଯାଇ ପାଖ ଆଖରେ ଦେଖ ସାଧୁ କେଉଁଠି ବସିଥିବ ।''

''ହଠାତ୍ କୁଆଡ଼େ ଚାଲିଯାଇନି ତ ?''

''ଏମିତି ହେଲେ ତ ଧୋକା ଦେଇ ଯିବା କଥା ହେଲା ।''

''ହଠାତ୍ ଧୋକା ଦେଇକରି ।'' ସ୍ତ୍ରୀ କହିଲା ।

''ତମେ କବାଟ କିଳିଦେବ ।''

''ହଁ, ମୁଁ କବାଟ କିଳିନେବି ।''

ରଘୁବର ପ୍ରସାଦ ସାଧୁକୁ ଖୋଜି ବାହାରିଲେ । ସ୍ତ୍ରୀ ଦରଜା ବନ୍ଦ କରି ପଦାକୁ ଆସିଲା । ସେ ରଘୁବର ପ୍ରସାଦଙ୍କୁ ଦେଖିବାକୁ ଚାହୁଁଥିଲା । ରଘୁବର ପ୍ରସାଦଙ୍କୁ ଯାଉଥିବାର ହାତୀ ବି ଦେଖିଲା । ହାତୀ ରଘୁବର ପ୍ରସାଦଙ୍କ ପଛେ ପଛେ ଚାଲିବାକୁ ଲାଗିଲା । ଏତେ ଦିନ ଭିତରେ ହାତୀ ରଘୁବର ପ୍ରସାଦଙ୍କୁ ଚିହ୍ନି ପାରିଲାଣି । ରଘୁବର ପ୍ରସାଦଙ୍କୁ ସାବଧାନ କରିବାକୁ ସୋନସୀ ଦଉଡ଼ିଗଲା । ହାତୀ ଧୀରେ ଧୀରେ ଯାଉଥିଲା । ହାତୀ ପଛେ ପଛେ ଚାଲୁଥିବା ଭିଡ଼ଟି ଡରିଯାଇ ଅଟକି ଯାଇଥିଲା । ସୋନସୀ ରଘୁବର ପ୍ରସାଦଙ୍କ ପାଖରେ ପହଞ୍ଚିଲା । ସେ କହିଲା, ''ତୁମ ପଛେ ପଛେ ହାତୀ ଆସୁଛି ।'' ସୋନସୀ ରଘୁବର ପ୍ରସାଦଙ୍କୁ ଭିଡ଼ିନେଇ ଅଦୃଶ୍ୟ କରିଦେବାକୁ ଚାହୁଁଥିଲା ।

''କ'ଣ ହେଲା କି ?'' ଚମକି ପଡ଼ି ରଘୁବର ପ୍ରସାଦ ସୋନସୀକୁ ପଚାରିଲେ ।

''ତୁମ ପଛରେ ହାତୀ ଆସୁଛି ।'' ସୋନସୀ ରଘୁବର ପ୍ରସାଦଙ୍କୁ ଧରିକରି କହିଲା ।

''ସେ ତ ଆସିଗଲାଣି ।'' ସୋନସୀର ମଥାରୁ ଅଡୁଆବାଳକୁ ଠିକ୍ କରୁ କରୁ ରଘୁବର ପ୍ରସାଦ କହିଲେ ।

ସୋନସୀକୁ କୁଣ୍ଢାଇ ଧରି ସେ ଭୟହୀନ ହୋଇଥିଲେ । ହାତୀ ତାଙ୍କ ପାଖରେ ଠିଆ ହୋଇଥିଲା । ଦୁହେଁ ଦେଖିଲେ ଏଇଲେ ରାସ୍ତାରେ କେହି ନାହିଁ । ରାସ୍ତା ଖାଲି ହୋଇଯାଇଛି । କବାଟଯାକ ବନ୍ଦ ଥିଲା । ଶିରୀଷ ଗଛ ଉପରେ ଗୋଟିଏ ବାର ତେର ବର୍ଷର ବାଳକ ବସିଥିଲା । ସେ ଗଛ ଉପରେ ବସିଯାଇ ବିଡ଼ି ଟାଣୁଥିଲା । ସେ କିନ୍ତୁ ହାତୀକୁ ଡରିଯାଇ ଗଛ ଉପରେ ବସି ନ ଥିଲା । ଲୁଚାଇକରି ବିଡ଼ି ଟାଣିବାକୁ ସେ ଗଛ ଉପରେ ବସିଥିଲା । ସେଠାରେ ହାତୀଠାରୁ ସୁରକ୍ଷିତ ସ୍ଥାନରେ ବସି ବିଡ଼ି ଟାଣିବାକୁ ତାକୁ ଭଲ ଲାଗୁଥିଲା । ସେ ଶିରୀଷର ଗୋଟିଏ ଡାଳ ଭାଙ୍ଗିଲା ଓ ହାତୀ ଆଡ଼କୁ ପକାଇଲା । ହାତୀ ଶୁଣ୍ଢକୁ ବଢ଼ାଇ ସେ ଡାଳକୁ ଧରିଲା ଏବଂ ଏକଡ଼ ସେକଡ଼ ଝୁଲାଇନେଇ ଛାଡ଼ିଦେଲା । ରଘୁବର ପ୍ରସାଦ ଯିବାକୁ ଉଦ୍ୟତ ଥିଲେ ।

''ଆସ ଯିବା ।'' ରଘୁବର ପ୍ରସାଦ କହିଲେ । ରଘୁବର ପ୍ରସାଦ ଓ ସୋନସୀଙ୍କୁ ଫେରିବାର ଦେଖି ହାତୀ ଜୋର୍ ଜୋର୍ ମୁଣ୍ଡ ହଲାଇଲା । ତା ପରେ ସେମାନଙ୍କ ପଛେ ପଛେ ଚାଲିଲା । ରଘୁବର ପ୍ରସାଦ ସୋନସୀକୁ ଘର ଭିତରକୁ ନେଇଗଲେ । ହାତୀ ଗଛ ପାଖରେ ଠିଆ ହୋଇଗଲା । ଭଲ ହେଲା । ସେଇଠି ଅଟକିଗଲା । ପଛେ ପଛେ ଘର ଭିତରକୁ ଆସିପାରିଥାନ୍ତା । ରଘୁବର ପ୍ରସାଦ ଦରଜାକୁ କିଳିଦେଇଥିଲେ । କିଛି ସମୟ ସେ ସୋନସୀ ସାଙ୍ଗରେ ଖଟିଆ ଆଢୁଆଳରେ କୁଣ୍ଢାଇ ଶୋଇ ରହିଲେ, ତା'ପରେ ଉଠିଲେ ।

''କୁଆଡ଼େ ଯାଉଛ ?''

''ହାତୀକୁ ଦେଖିବାକୁ, କେଜାଣି ସେଠି ଅଛି କି ନାହିଁ । ସାଧୁ ଆସି ତାକୁ ନେଇଯାଇଥିବ ।''

''କିଏ ଘର ଆଗରେ ହାତୀକୁ ଛାଡ଼ି ଚାଲିଗଲେ ଆମେ କ'ଣ କରିବା ?'' ସୋନସୀ କହିଲା । ରଘୁବର ପ୍ରସାଦ ଦରଜା ଖୋଲିଲେ । ହାତୀ ସେଠି ନଥିଲା । ''ହାତୀ ନାହିଁ ।'' ତାଙ୍କ ମୁହଁରୁ ବାହାରିଗଲା । ସୋନସୀ ଉଠିକରି ଆସିଲା ।

''ସାଧୁ କ'ଣ ଆସି ନେଇଗଲା ?''

''ହୋଇଥିବ ।'' ରଘୁବର ପ୍ରସାଦ କହିଲେ ।

''ହାତୀ ନିଜେ ନିଜେ ଚାଲିଯାଇଥିବ । ତମେ ବି ନ ଥିଲ, ଦରଜା ବି ବନ୍ଦ ଥିଲା । ହାତୀ ଏକୁଟିଆ ହୋଇଗଲା ଆଉ ସେ ଚାଲିଗଲା ।''

''ହଁ ! ହାତୀ ସାଙ୍ଗରେ ସମ୍ମାନ କରି ବ୍ୟବହାର କରିବା ଉଚିତ ଥିଲା । ହାତୀକୁ ଯେବେ କହିଥାନ୍ତେ ତୁ କୁଆଡ଼ିକି ଯିବୁ ନାହିଁ, ଆମେ ଆସୁଛୁ । ତା'ହେଲେ ବୋଧେ ସେ ଆମ କଥାଟା ବୁଝିଯାଇଥାନ୍ତା ଓ ଯିବା ଆଗରୁ ଆମକୁ ଅନିସା କରିଥାନ୍ତା ।''

''ସାଧୁ ହାତୀ କଥା ପଚାରିଲେ କ'ଣ ଜବାବ ଦେବା ?''

''ଆମର ଦୋଷ ନାହିଁ । ସେଇ ତ ଛାଡ଼ିକରି ଯାଇଥିଲା । ତା'ର ଦାୟିତ୍ୱ ସେ । ମୁଁ କାହାରିକି ପଚାରୁଛି ଯେ ହାତୀ ଏକୁଟିଆ ଯାଇଛି ନା ତାକୁ କେହି ସାଙ୍ଗରେ ନେଇଯାଇଛି । କେହି ତ ଦେଖିଥିବ ।

''ରାସ୍ତା ତ ଶୂନ୍‌ଶାନ୍ । କାହାରି ଦେଖାନାହିଁ ।''

''ତଥାପି ଦେଖେଁ । କେହି ନା କେହି ତ ଥିବ ।''

ରଘୁବର ପ୍ରସାଦଙ୍କୁ କେହି ମିଳିଲେ ନାହିଁ । ସଡ଼କ କଡ଼େ ଗଛ ଉପରେ ଲୁଚି କରି ବିଡ଼ି ଟାଣିବାର ପିଲାଟା ଗଛ ଉପରେ ବସିଛି ।

''ହାତୀକୁ ଦେଖିଛୁ କି, କୁଆଡ଼େ ଗଲା ?'' ରଘୁବର ପ୍ରସାଦ ଗଛରେ ବସିଥିବା ପିଲାକୁ ପଚାରିଲେ ।

''ଏଇ ଆଡ଼କୁ ଯାଇଛି ।'' ତାର ବିଡ଼ିକୁ ଲୁଚାଇ ପିଲାଟି ଗଛ ଉପରୁ ହାତରେ ଦେଖାଇଦେଲା । ଗଛର କୋରଡ଼ ଭିତରେ ବିଡ଼ି ଓ ଦିଆସିଲି ସେ ଲୁଚାଇ ରଖୁଥିଲା ।

''ହାତୀ ଏକୁଟିଆ ଥିଲା ?''

''ନା, ଗୋଟିଏ ସାଧୁ ଥିଲା ।'' ଗଛ ଉପରୁ ସେ କହିଲା ।

ସାଧୁ ହାତୀକୁ ନେଇଗଲା । ଚାହା ପିଇବାକୁ ଆସିଲା ନାହିଁ । କହିକରି ବି ଗଲାନାହିଁ । ବୋଧହୁଏ ସାଧୁ ହଠାତ୍ କରି ଚାଲିଯିବ ନାହିଁ । ଧୀରେ ଧୀରେ ହଠାତ୍ କରି ଯିବ । ପ୍ରଥମେ ଅଧଘଣ୍ଟା ଲାଗି । ତା' ପରେ ଚାରିଘଣ୍ଟା ଲାଗି । ଦଶଘଣ୍ଟା ଲାଗି ତା'ପରେ ଦଶ କୋଡ଼ିଏ ବର୍ଷ ଲାଗି । କୋଡ଼ିଏ ବର୍ଷ ପରେ ପୁଣି ଜୀବନ କେତେ ବଳିବ । ଆଜୀବନ ଚାଲିଯିବ । ଯିଏ ଆଜୀବନ ଚାଲି ଯାଇଥିବ, କୌଣସି ଖୋଜ ଖବର ନ ଥିବ, ମୃତ୍ୟୁର ସମ୍ବାଦ ବି ନ ଥିବ ତେବେ ତା'ର ଚାଲିଯିବାରେ ସେ

ସଦାବେଳେ ଜୀବିତ ରହିଥିବ । ଗୋଟିଏ ଦୁଇଟି ପ୍ରଜନ୍ମ ଯଦି ପାଶୋର ନ ଯିବ ତେବେ ତା'ର ଫେରି ଆସିବାର ଆଶାଟି ଗୋଟିଏ ଦୁଇଟି ପ୍ରଜନ୍ମ ଯାକେ ରହିଥିବ । ଠିକ୍ ଯେଉଁଦିନ ତା'ର ମୃତ୍ୟୁ ହୋଇଯାଇଛି ବୋଲି ଜଣାପଡ଼ିବ, ସାଙ୍ଗେ ସାଙ୍ଗେ ସେହିଦିନ ତାର ଫେରିବାର ଅନନ୍ତ କାଳର ପ୍ରତୀକ୍ଷାଟି ଶେଷ ହୋଇଯାଇଥିବ ।

ସଡ଼କ ଉପରେ ଜଣେ ଦିଜଣ ଲୋକ ଏବେ ଦିଶିବାକୁ ଆରମ୍ଭ କରିଛନ୍ତି । ଗୋଟିଏ ସାଇକେଲ ଦେଖାଗଲା । ତା'ପରେ ଧୀରେ ଧୀରେ ଚାଲୁଥିବା ଶଗଡ଼ ଗାଡ଼ି ଆସିଲା । ଯିବା ଆସିବାର ଯେଉଁ ଦୃଶ୍ୟଟି ଅଟକି ରହିଥିଲା ତାହା ଆରମ୍ଭ ହେଉଥିଲା । ଏହା ଯା' ଆସର ଦୃଶ୍ୟର ଆରମ୍ଭ ଥିଲା । ଜଣେ ଦିଜଣ ଲୋକ ହିଁ ଯା ଆସ କରୁଥିବାର ଦିଶୁଥିଲେ । ଏହି ଆରମ୍ଭଟି ବହୁତ ବେଳ ଆରମ୍ଭ ହୋଇ ରହିଯାଇଛି । ଯେଉଁଠି ଗୋଟିଏ ସ୍ୱାଧୀନ ହୋଇଥିବା ହାତୀ ଅଙ୍କୁଶ ବଳରେ ବହୁତ ଆଗରୁ କାବୁ ହୋଇସାରିଛି । ଯେତେବେଳେ ସେ ସ୍ୱାଧୀନ ଥିଲା ସେତେବେଳେ ହାତୀ ନିଜର ପାଳିତ ଅବସ୍ଥାରେ ଏକୁଟିଆ ହୋଇଯାଇଥିଲା । ଏହି ବସ୍ତି ମଧ୍ୟରେ ସେ ଗୋଟିଏ ସାଧାସିଧା ବିଶାଳ ଶାକାହାରୀ ପ୍ରାଣୀ ଥିଲା । ସେ ଏତେ ସାଧାସିଧା ଥିଲା ଯାହାକି ଗୋଟିଏ ହରିଣ ଜଙ୍ଗଲ ମଧ୍ୟରେ ହୋଇପାରେ ।

ଗଛମାନଙ୍କର ସବୁଜିମାର ଧ୍ୱନି ମଧ୍ୟରେ
ପକ୍ଷୀଙ୍କର କିଚିରି ମିଚିରି ଧ୍ୱନି ବସିଥିଲା ।

ରଘୁବର ପ୍ରସାଦ ନିଦରୁ ଉଠିଲା ପରେ ଭୁଲିଯାଇଥିଲେ ଯେ ଏଇଟି କି ବାର ଥିଲା । ସାତ ଦିନର ସପ୍ତାହ ମଧ୍ୟରେ ଗୋଟେ ଅଧେ ଦିନ କି ବାର ହୋଇ ଯାଉଥିଲା । ଏହି କି ବାର କେବେ ଅଳ୍ପ କେବେ ପୂରା ବିତି ଯାଉଥିଲା । ଆଜି ମଙ୍ଗଳବାର କି ଗୁରୁବାର ସେକଥା ଜଣାନଥିଲେ ବି ସବୁକାମ ହୋଇଯାଉଥିଲା । ଯଦ୍ୟପି ଏହି କି ବାରଟି ଯେକୌଣସି ଦିନ ପରି ଥିଲା ତଥାପି ଆଜିର ଦିନ ଥିଲା । ଏହି କି ବାରର ଦିନର ଆଜିର ସକାଳ ଥିଲା । କି ବାରର ଆଜିର ଗଛ ଥିଲେ । କିନ୍ତୁ ଆଜିର ଗଛ ସେହି ପୂର୍ବର ଗଛ ଥିଲେ । ସବୁ କିଛି ସେଇମିତି ଥିଲା ଓ ବାର ଜଣାନଥିଲା ।

ଝରକାରୁ ଯେଉଁ ପବନ ତାଙ୍କୁ ଲାଗିଥିଲା ସେ ପବନ କେଉଁ କୋଣରୁ ଆସିଥିବ । ପବନର ସାଗରରେ ବୁଡ଼ି ରହିଥିଲେ ତଥାପି ପବନର ଗୋଟିଏ ଭିତିରିଆ ଲହଡ଼ିର ଦମକା ରଘୁବର ପ୍ରସାଦଙ୍କୁ ବୋଧହେଲା । ରଘୁବର ପ୍ରସାଦ ପବନର ସ୍ପର୍ଶ ପାଇ ଉଠିଥିଲେ । ପବନ ତାଙ୍କୁ ଦୋହଲାଇ ସ୍ପର୍ଶ କରିଥିଲା ।

କଲେଜ ଯିବା ବେଳକୁ ରଘୁବର ପ୍ରସାଦ ବିରକ୍ତ ଥାନ୍ତି । ହାତୀ ଆସିବାର ସମୟ ପାଖେଇ ଆସିବା ହେତୁରୁ ତାଙ୍କର ବିରକ୍ତି ବଢ଼ି ଯାଉଥିଲା । ତାଙ୍କର ହାତୀରେ ବସି ଯିବାକୁ ଇଚ୍ଛା ହେଉନଥିଲା । ଯଦି କେହି ତାଙ୍କୁ ଏତକ ଖବର ଦେଇଥାନ୍ତା ଯେ ହାତୀ ଆଜି ଆସିବ ନାହିଁ ସେ ମୁକ୍ତି ପାଇଯାଇଥାନ୍ତେ । ନିଜ ଇଚ୍ଛାମତେ କେଉଁ ଗୋଟିଏ ଟେମ୍ପୋରେ ଭଲ ଜାଗା ଦେଖିକରି ବସିଯାଇଥାନ୍ତେ ।

''ଏଯାକେ ହାତୀ ଆସିନାହିଁ ?'' ରଘୁବର ପ୍ରସାଦ କହିଲେ ।

''ଏଇଲେ ତ ସମୟ ଅଛି । କିଛି ସମୟ ଅପେକ୍ଷା କରିନିଅ ।'' ସୋନସୀ କହିଲା ।

''ମୁଁ ଟେମ୍ପୋରେ ଚାଲିଯାଏ ।''

''ଭାତ ହୋଇଗଲାଣି । ଖାଇକରି ଯାଅ । ସେତେବେଳକୁ ହାତୀ ଆସିଯିବ ।''

''ମୋତେ ଭୋକ ନାହିଁ ।'' ରଘୁବର ପ୍ରସାଦଙ୍କର ସତରେ ଭୋକ ନାହିଁ । କିନ୍ତୁ ତଥାପି ସେ କିଛି ଭାତ ଖାଇ ପାରିଥାନ୍ତେ । ସେ ଘରୁ ବାହାରି ଯିବାକୁ ଚାହୁଁଥିଲେ ।

''ଯଦି ହାତୀ ଆସିଯାଏ ତେବେ କ'ଣ ମୁଁ ହାତୀରେ ଖାଇବାକୁ ନେଇ ଚାଲିଯିବି ?'' ସୋନସୀ ଯାଉଥିବା ରଘୁବର ପ୍ରସାଦଙ୍କୁ ପଚାରିଲା ।

''ଭୋକ ହେଲେ ମୁଁ ସେଇ ଗାଁରେ ଟୋକେଇବାଲିଠାରୁ ଚଣାନେଇ ଖାଇନେବି ।'' ରଘୁବର ପ୍ରସାଦ କହିଲେ ।

କିନ୍ତୁ ସୋନସୀ ଶୁଣିଲା, ''ଭୋକ ତ ହେବ । ଭାତ ନେଇ ଆସିଲେ ମୁଁ ସେଠି ଖାଇନେବି ।''

ଟେମ୍ପୋ ଲାଗି ଯେତେବେଳେ ଠିଆ ହୋଇଥିଲେ ସେତେବେଳେ ଚାରି ତାଳଗଛକୁ ସେ ଦେଖିପାରିଲେ । ପ୍ରତୀକ୍ଷାର ଧୈର୍ଯ୍ୟର ଗଛ ଭଳି ସେ ତାଳଗଛ ଥିଲା । ଅଙ୍କୁରିତ ବୀଜରୁ ଗୋଟିଏ ପ୍ରଥମ ଗଜା ବାହାରିଥିବ । ଗଜାଟି ଦୃଢ଼ ହୋଇଥିବ । ସେତେବେଳଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଏପରି ଗଛ । କାଲି ଶେଷ ହେବାଯାକେ ବି ଏହିପରି ଗଛ ଥିବ । ଏହି ଚାରି ତାଳଗଛକୁ ଚାହିଁ ରଘୁବର ପ୍ରସାଦ ହାତୀର ପ୍ରତୀକ୍ଷା କରୁନଥିଲେ । ଆଗପରି ହାତୀ ଆସୁଥିବାର ଦେଖାଯିବାର ଏକ ସ୍ଥାୟୀ ଭଳି ଦୃଶ୍ୟ ଏଯାକେ ଦିଶୁନଥିଲା । ସେ ଦୃଶ୍ୟଟି ହାତୀକୁ ଅପେକ୍ଷା କରୁଥିଲା ଯେ ହାତୀ ଆସିଲେ ସେ ଆସୁଥିବା ହାତୀର ଦୃଶ୍ୟ ରୂପେ ଦେଖାଯାଇପାରିବ ।

ରଘୁବର ପ୍ରସାଦ ଜଲଦି ବାହରି ଆସିଥିଲେ । ଯେବେ ରୋଜ ଆସିବାର ସମୟରେ ବାହାରିଥାନ୍ତେ ତେବେ ଏଥର ବୋଧେ ହାତୀର ଯାଉଥିବାର ଦୃଶ୍ୟ ସାଙ୍ଗରେ ସେ ସ୍ତ୍ରୀକୁ ବି ହାତୀ ଉପରେ ବସିଥିବାର ଦେଖି ପାରିଥାନ୍ତେ । ତାଙ୍କୁ ଗୋଟିଏ ଖାଲି ଟେମ୍ପୋ ମିଳିଯାଇଥିଲା ।

ସୋନସୀ ହାତୀର ଚିଁଘାଡ଼ ଶୁଣିଥିଲା । କବାଟ ଖୋଲି ସେ ଦେଖିଲା ଯେ ହାତୀ ଠିଆ ହୋଇଛି । ସୋନସୀ ଶୀଘ୍ର ପିତ୍ତଳର ଗୋଟିଏ କଲେଇକରା ଡବା ଭିତରେ ଭାତ, ଭାତ ଉପରେ କିଛି ଭଜା ଆଉ ଆଚାର ଦେଇ ଡବାକୁ ବନ୍ଦ କଲା । ସେ ଗାଧୋଇ ସାରିଥିଲା, କିନ୍ତୁ ମୁଣ୍ଡ କୁଣ୍ଡାଇ ନ ଥିଲା । ଡବା ଧରି ସେ ବାହାରକୁ ଆସିଲା । ସେ ତାଲା ଲଗାଇଲା ।

ହାତୀ ପାଖକୁ ଆସି ସେ ମୁଣ୍ଡକୁ ଉପରକୁ ଟେକି ସାଧୁକୁ କହିଲା, ''ଡେରି ହୋଇଗଲାରୁ ସେ ଚାଲିଗଲେ । ଭାତ ବି ଖାଇକରି ଯାଇନାହାନ୍ତି । ଡବାରେ ଅଛି ।

''ଡେରି ତ ହୋଇନାହିଁ । କାଲି ଅପେକ୍ଷା ମୁଁ ଆଜି ଜଲଦି ଆସିଛି । ଡବା ଦେଇଦିଅ, ମୁଁ ପହଞ୍ଚେଇ ଦେବି ।''

''ମୁଁ ତମ ସାଙ୍ଗରେ ଯାଉଛି ।'' ଏହା ଶୁଣି ସାଧୁ ହାତୀକୁ ବସାଇଲା । ସୋନସୀ ହାତୀ ଉପରେ ଚଢ଼ିଗଲା । ''ଯିବା ?'' ସାଧୁ ପଚାରିଲା ।

''ହଁ ଚାଲ ।'' ସୋନସୀ କହିଲା । ସୋନସୀ ଗୋଟିଏ ହାତରେ ଡବାକୁ କୋଳ ଉପରେ ଧରି ରଖିଥିଲା । ଗୋଟିଏ ପଟକୁ ଦୁଇ ଗୋଡ଼ ରଖି ସେ ବସିଥିଲା । ତା'ର ଭଣ୍ଡାଯାକେ ଶାଢ଼ି ଉଠିଯାଇଥିଲା । ଗୋଡ଼ରେ ରୂପାର ପାଇଝରୀ ଥିଲା । ଟେମ୍ପୋ ରହିବା ଜାଗାରେ ସାଧୁ ହାତୀକୁ ଅଟକାଇଲା । ସୋନସୀର ପିଠି ଦୋକାନ ଆଡ଼କୁ ଥିଲା । ତା'ର ମନେହେଲା ଯେବେ ରଘୁବର ପ୍ରସାଦଙ୍କୁ ଟେମ୍ପୋ ମିଳିନଥିବ ତେବେ ସେ ବି ହାତୀ ଉପରେ ବସିପଡ଼ନ୍ତେ । ସାଧୁ ଓହ୍ଲାଇଲା । ସେ ଦେଖିପାରୁ ନଥିଲା ଯେ ସାଧୁ କ'ଣ କରୁଛି । ବୋଧେ ଚାହା ପିଉଥିବ । ଗୋଟିଏ ଟ୍ରକ୍ ଆସୁଥିଲା, ହାତୀ ତା' ମୁଣ୍ଡକୁ ହଲାଇ ଠିଆ ହୋଇଥିଲା!, ପାଦେ ଦି ପାଦ ସେ ଆଗ ପଛକୁ ବି ଚାଲିଯାଉଥାଏ । ଗୋଟିଏ ଟେମ୍ପୋ ପାଖରେ ଆସି ରହିଲା ଯେ ତା'ର ମନକୁ ଆସିଲା ସେ କ'ଣ ଡବାକୁ ସମ୍ଭାଳି କରି ଡେଇଁ ପାରିବ ? ଯେବେ ଡେଇଁ ପାରନ୍ତା ତେବେ ଟେମ୍ପୋରେ ବସି ଚାଲି ଯାଆନ୍ତା । ଯଦି ସେ ହାତୀକୁ ଚାଲିବାକୁ କହିବ ତେବେ କ'ଣ ହାତୀ ତା' କଥା ମାନିବ ? ସାଧୁ ଆସିଯାଇଛି । ଯେବେ ରଘୁବର ଆସି ପାଖରେ ବସିଥାନ୍ତେ, ତେବେ ସେ ବାଟରେ ଥରଟିଏ ନିଶ୍ଚୟ ପଚାରିଥାନ୍ତା ''ଭୋକ ହେଉଛି କି ଭାତ ଦେବି ?''

''ଏଠି ହାତୀ ଉପରେ ବସି ଖାଇବା କ'ଣ ଉଚିତ୍ ?''

''ହଁ, ସେଥିରେ କ'ଣ ଅଛି ?''

''ଖାଉ ଖାଉ ପଡ଼ିଯିବି ନାହିଁକି ?''

''ମୁଁ ଖୁଆଇ ଦିଏ ?''

''ଖୁଆଉ ଖୁଆଉ ତୁମେ ପଡ଼ିଯିବ ।'' ରଘୁବର ପ୍ରସାଦ କହିବେ । ବସ୍‌ରେ ବସି ବସି ଭାତ ଖାଇ ହୋଇପାରିଥାନ୍ତା । ହାତୀ ଉପରେ ପୁରିର ଖିଲ ଠିକ୍ ହୁଅନ୍ତା । ରଘୁବର ପ୍ରସାଦଙ୍କ ପାଇଁ ଖାଇବାକୁ ନେଇ ଯିବାରେ ସୋନସୀ ଖୁସି ଥିଲା । ସେ ନିଜ ଘର ଠାରୁ କଲେଜ ଯାକେ । ଆଠକିଲୋ ମିଟରର ଯାତ୍ରା କରୁ ନ ଥିଲା । ସେ ନିଜର ଗୋଟିଏ ଏକାନ୍ତର ଯାତ୍ରା କରୁଥିଲା । ଯାହାର ଶେଷରେ ରଘୁବର ପ୍ରସାଦ ଥିଲେ । ଯାହାର ଦୂରତ୍ୱ ଥିଲା ଆଠ କିଲୋମିଟର । ସେ ଏକୁଟିଆପଣର ଯାତ୍ରା କରୁଥିଲା । ରଘୁବର ପ୍ରସାଦଙ୍କର ଭେଟ ହେବା ପରେ ପରେ ଏ ଯାତ୍ରା ଶେଷ ହୋଇଯାଆନ୍ତା । ଏହି ମନେ ମନେ ଯାତ୍ରାରେ ଆକସ୍ମିକ ଭାବେ ସତସତିକା ହାତୀ ମିଳିଯାଇଛି ।

କଲେଜ ସାମନାରେ କାଠଗଡ଼ାର ଜାଗା ପାଖରେ ହାତୀ ରହିଲା । ହାତୀ ସେଇଠି ଆସି ଅଟକେ । ଦୁଇ ତିନିଦିନ ତଳର ହାତୀର ଲଣ୍ଡ ସେଠି ପଡ଼ିଥିଲା । ସୋନସୀ ଡବାକୁ ଧରି ହୁସିଆର ହୋଇ ଓହ୍ଲାଇଗଲା ।

''ମୁଁ ତାଙ୍କୁ ଖାଇବାକୁ ଦେଇ ଟେମ୍ପୋ ନେଇ ଘରକୁ ଫେରିଯିବି । ତମେ ରହିବା ଦରକାର ନାହିଁ ।'' ସେ ସାଧୁକୁ କହିଲା । ସେ ଯାଉ ଯାଉ ସାଧୁ ସୋନସୀକୁ 'ପ୍ରଣାମ' କହିଲା ।''

ଶ୍ରେଣୀ ମଧ୍ୟରୁ ପାଠ ପଢ଼ାଉଥିବା ଅବସ୍ଥାରେ ରଘୁବର ପ୍ରସାଦ ସୋନସୀକୁ ଦେଖି ନେଇଥିଲେ, ସେତେବେଳେ ବିଭାଗାଧ୍ୟକ୍ଷ ବି ନିଜ ବଖରାରୁ ବାହାରିଥିଲେ । ହାତୀରୁ ଓହ୍ଲାଇବାବେଳେ ସୋନସୀକୁ

ସେ ଚିହ୍ନି ପାରିଥିଲେ । ସୋନସୀ ପାଇଁ ସେ ଅଟକି ରହିଥିଲେ । ସୋନସୀ ବିଭାଗାଧ୍ୟକ୍ଷଙ୍କ ଆଡ଼କୁ ଚାହିଁଲା । ପାଖକୁ ଆସି ସେ ବିଭାଗାଧ୍ୟକ୍ଷଙ୍କୁ ପ୍ରଣାମ କଲା ।

ଗଛମୂଳେ ଟୋକେଇ ନେଇ ଚଣା ମୁଢ଼ିବାଲି ମାଇପିଟି ବସିଥିଲା । ବୁଢ଼ୀ 'ବେରକୁଟ' ନେଇ ବସିଥିଲା । କଲେଜର ପିଲାମାନେ ବେଶୀ ଚଣା ମୁଢ଼ି ଖାଆନ୍ତି । ପ୍ରାଥମିକ ସ୍କୁଲର ପିଲାଏ ବେରକୁଟ ନିଅନ୍ତି । ସୋନସୀ ଭାବିଲା ଯେ ସେ ଯେବେ ଖାଇବାକୁ ନେଇ ଆସି ନ ଥାନ୍ତା ରଘୁବର ପ୍ରସାଦ ଚାରି ଅଣାର ଚଣା ମୁଢ଼ି ନେଇଥାନ୍ତେ ଓ ହ୍ୟାଣ୍ଡପମ୍ପରୁ ପାଣି ପିଇଥାନ୍ତେ ।

"କ'ଣ ହେଲା ?" ବିଭାଗାଧ୍ୟକ୍ଷ ପଚାରିଲେ ।

"ସେ ଖାଇକରି ଆସି ନାହାନ୍ତି ସାର୍ ।"

"କାହିଁକି ? ଝଗଡ଼ା ହୋଇଥିଲା ନା କ'ଣ ?"

"ଖାଇବାକୁ ହୋଇ ନଥିଲା । ଡେରି ହୋଇଯାଇଥିଲା ।" ଝଗଡ଼ା କାହିଁକି ହେବାର ଆଶ୍ଚର୍ଯ୍ୟ ନେଇ ସୋନସୀ ବିଭାଗାଧ୍ୟକ୍ଷଙ୍କୁ କହିଥିଲା ।

"ଡବା ଦେଇଦିଅ ।" ବିଭାଗାଧ୍ୟକ୍ଷ କହିଲେ ।

"ମୁଁ ରହିବି ।" କହି ସେ ଗୋଟିଏ ଗଛମୂଳ ଆଡ଼କୁ ଆଗେଇଲା ।

"ରୁମ୍‌ରେ ବସିଯାଅ ।" ବିଭାଗାଧ୍ୟକ୍ଷ କହିଲେ । କିନ୍ତୁ ସୋନସୀ ଶୁଣି ନ ଥିଲା ।

ନିକଟରେ ଗୋଟିଏ ବରଗଛ ଥିଲା । ସେହି ଗଛର ଚେରସବୁ ମାଟି ଉପରକୁ ବାହାରି ରହିଥିଲା । ଗୋଟିଏ ମୋଟା ଚେର ଉପରେ ସେ ବସିଗଲା । ବସି ବସି ସେ ପୂରା କଲେଜକୁ ଚାହିଁଥିଲା । ରଘୁବର ପ୍ରସାଦ କେଉଁଠୁ ହେଲେ ବାହାରିଲେ କେହି ଦେଖିବା ଆଗରୁ ସେ ଦେଖିପାରିବ । ଏହାରି ଭିତରେ ପ୍ରାଥମିକ ସ୍କୁଲ ପିଲାଙ୍କର ପାଣି ପରିସ୍ରାର ଛୁଟି ହେଲା । ଦଳ ଦଳ ହୋଇ ପିଲାମାନେ ଓଠରେ ଆଙ୍ଗୁଠି ଥୋଇ ବାହାରିଲେ । କିଛି ପିଲା ଦଉଡ଼ି ଦଉଡ଼ି ବେରକୁଟବାଲି ବୁଢ଼ୀ ଆଉ ଚଣା ମୁଢ଼ୀବାଲି ମାଇପି ପାଖକୁ ପଳେଇ ଆସିଲେ । ସୋନସୀର ଧ୍ୟାନ ପିଲାଙ୍କ ସକାଶେ ଅନ୍ୟ ଆଡ଼କୁ ଚାଲିଯାଇଥିଲା । ସେହି ଅନ୍ୟ ଆଡ଼େ ଥିବା ଧ୍ୟାନ ମଧ୍ୟରୁ ରଘୁବର ପ୍ରସାଦ ସୋନସୀ ଆଗକୁ ଆସିଗଲେ । ଯେତେବେଳେ ସୋନସୀର ଧ୍ୟାନ ଫେରିଲା ସେତେବେଳକୁ ସେ ସୋନସୀ ପାଖରେ ବସି ଯାଇଥିଲେ ।

"କେତେବେଳେ ଆସିଲ ?" ସୋନସୀ ଆଗ ପଚାରିଲା ।

"ଖାଇବାକୁ ଆଣିଛ ପରା !"

"ନିଅ ଖାଇଦିଅ ।"

"ଏଠି ନୁହେଁ । ଏଇଲେ ତ ସମୟ ଅଛି ।"

"ମୁହଁ ହାତ ଧୋଇ ପକାଅ । ଚକ୍ ଲାଗିଛି ।"

ଦୁହେଁ ହ୍ୟାଣ୍ଡପମ୍ପ ପାଖେ ଗଲେ । ଗୋଟିଏ ଛୋଟ ପିଲା ପାଣି ପିଉଥିଲା ଓ ଗୋଟିଏ ଛୋଟ ଝିଅ ପିଲା ଉପରକୁ କୁଦି କୁଦି ହ୍ୟାଣ୍ଡପମ୍ପ ଚଳାଉଥିଲା । ରଘୁବର ପ୍ରସାଦଙ୍କୁ ଦେଖି ପିଲା ଦୂରେଇ ଗଲା ।

''ପାଣି ପିଇନେଇଛୁ ?'' ରଘୁବର ପ୍ରସାଦ ପଚାରିଲେ । ଏହା ଶୁଣି ସେ ଦଉଡ଼ିଯାଇ ନିଜ ଦଳରେ ମିଶିଗଲା । ଛୋଟ ଝିଅର ହ୍ୟାଣ୍ଡପମ୍ପ ଚଳେଇବାଟା ବନ୍ଦ ହୋଇନଥିଲା କାରଣ ଏମାନେ ବି ପାଣି ପିଇନିଅନ୍ତୁ ।

''ମୁଁ ଚଲଉଚି ତୁ ପାଣି ପିଇଦେ ।'' ସୋନସୀ ସେ ଝିଅଟିକୁ କହିଲା । ଏହା ଶୁଣି ଝିଅଟା ଦଉଡ଼ି ପଳାଇଲା । ଦଉଡ଼ିଲା ବେଳେ ସେ ଓଠରେ ଆଙ୍ଗୁଠି ଥୋଇ ଦେଇଥିଲା । ସୋନସୀ ହ୍ୟାଣ୍ଡପମ୍ପ୍ ଚଲାଇଲା । ରଘୁବର ପ୍ରସାଦ ଭଲକରି ମୁହଁ ହାତ ଧୋଇଲେ, ପୁଣି ପାଣି ପିଇଲେ । ପ୍ରିନ୍ସିପାଲ୍ ଓ ଅଫିସର ଅନ୍ୟ ଲୋକ ବାରଣ୍ଡାରେ ଠିଆ ହୋଇଥିଲେ । ସୋନସୀ ହାତ ପୋଛିବାକୁ ନିଜର କାନି ବଢ଼େଇ ଦେଇଥିଲା କିନ୍ତୁ ରଘୁବର ପ୍ରସାଦ ପୋଛି ନ ଥିଲେ ।

ଦୁହେଁ କଲେଜ ଠାରୁ ଟିକେ ଦୂରରେ ଗୋଟିଏ ପୋଖରୀ କୂଳରେ ଗୋଟିଏ ପଥୁରିଆ ଜାଗାରେ ବସିଗଲେ । ସେଠି ବି ଗଛର ଛାଇ ଥିଲା । ପୋଖରୀରେ ସାନ ସାନ ଚାରିପାଞ୍ଚଟା କଇଁର ପତ୍ର ଥିଲା । ପୋଖରୀ କୂଳରେ ଠାଏ ସାରୁ ଫଳିଥିଲା । ସାଗୁଆ ସାଗୁଆ ଛୋଟ ପତ୍ର ଥିଲା । ସୋନସୀ ଡବା ଖୋଲିଲା ।

''ନାଲି ଭଜା ହେଇଛି ।''

''ହଁ, ଭାତ ସାଙ୍ଗରେ ଭଲ ଲାଗିବ ।''

ଖାଇସାରି ରଘୁବର ପ୍ରସାଦ ପୋଖରୀର ପାଣିରେ ହାତ ଧୋଇଗଲେ । ସୋନସୀ ପଥୁରିଆ ଜାଗାରେ ପଡ଼ିଥିବା ଅଇଣ୍ଠାକୁ ଉଠେଇ ନେଇଥିଲା । ଟିକିଏ ମାଟି ନେଇକରି ଶୀଘ୍ର ଶୀଘ୍ର ସେ ଡବାକୁ ମାଜିଦେଲା । ହାତରେ ପାଣି ନେଇକରି ପଥୁରିଆ ଜାଗାର ଅଇଣ୍ଠା ଜାଗାକୁ ଛିଞ୍ଚିଦେଇ ତାକୁ ଲିପିନେଲା । ରଘୁବର ପ୍ରସାଦ ସ୍ତ୍ରୀର କାନିରେ ମୁହଁ ହାତ ପୋଛିଲେ ।

''ତୁମ ଶାଢ଼ିରୁ ଘିଅ ଗନ୍ଧ ବାହାରୁଛି ।''

''ଘିଅର ଗନ୍ଧ ? କେଜାଣି କୋଉଠୁ ଆସିଲା ? ସୋନସୀ କହିଲା ।

''ତୁମେ ଆଉ ଗୋଟେ ଶାଢ଼ି ପାଲଟି ଆସିଲ ନାହିଁ ।

''ସଫା କଚା ହୋଇଛି ତ ।'' ଘରକରଣାର ଏତେ ଦିନ ବି ତ ହୋଇନି ଯେ ସବୁଦିନିଆ ପିନ୍ଧା ଶାଢ଼ି ପୁରୁଣା ହୋଇଯିବ ।

ଦୁହେଁ ହ୍ୟାଣ୍ଡପମ୍ପ୍ ଯାକେ ଆସିଲେ । ସୋନସୀ ହ୍ୟାଣ୍ଡପମ୍ପ ଚଲାଇଲା । ରଘୁବର ପ୍ରସାଦ ପାଣି ପିଇଲେ ।

''ମୁଁ ବି ପିଇବି ।'' ସୋନସୀ କହିଲା ।

ରଘୁବର ପ୍ରସାଦ ହ୍ୟାଣ୍ଡପମ୍ପ୍ ଚଲାଇଲେ । ସୋନସୀ ମୁହଁ ଧୋଇଲା ଓ ଗୋଡ଼ ଧୋଇଲା ।

''ଆଜି ତମେ ମୁଣ୍ଡ କୁଣ୍ଡାଇନାହଁ ?'' ରଘୁବର ପ୍ରସାଦ ସୋନସୀର ବିଛେଇ ରହିଥିବା ବାଳକୁ ଦେଖି ପଚାରିଲେ ।

ବନ୍ଧା ଜୁଡ଼ାରେ ଯେବେ ପାନିଆକୁ ଚଳେଇ ଦିଆଯାଏ ତେବେ କାମ ଚଳିଯାଏ । ଆଜି ତରତରରେ ପାନିଆ ଚଳାଇବାକୁ ଭୁଲିଗଲି ।

କ୍ଲାସ ଆଡ଼କୁ ଯାଉ ଯାଉ ଆଠ ଦଶ ଜଣିଆ ଛୋଟ ପିଲାଙ୍କ ଦଳ ଓଠରେ ଆଙ୍ଗୁଠି ରଖି ପାଖ ଦେଇ ଚାଲିଯିବାର ଦେଖାଗଲା ।

''ସାରୁପତ୍ର ନେବାକୁ ଭୁଲିଗଲି । ଯିବା ବାଟରେ ଛିଣ୍ଡେଇନେବି ।''

''ହଉ ଛିଣ୍ଡେଇ ନବ ।'' ରଘୁବର ପ୍ରସାଦ କହିଲେ ।

''ମୁଁ ଯାଏଁ ?''

''ମୁଁ ତମକୁ ସଡ଼କଯାକେ ଛାଡ଼ି ଦେଇଆସେ ।''

''ନାଇଁ ତୁମେ ଯାଅ ।''

''ଜଲ୍‌ଦି ଆସିବ ।'' ବଢ଼ ପାଟିରେ ସୋନସୀ କହିଲା ।

ଯାଉଯାଉ ରଘୁବର ପ୍ରସାଦ ବୁଲି ପଡ଼ିଥିଲେ ।

''ହଁ ଜଲ୍‌ଦି ଆସିବି ।'' ରଘୁବର ପ୍ରସାଦ ଆସ୍ତେ କରି କହିଲେ ।

''ଜଲ୍‌ଦି ଆସିବ ।'' କହିବା ମାତ୍ରକେ ସୋନସୀର ମନେ ହୋଇଥିଲା ଯେ ସେ ବଢ଼ ପାଟିରେ କହିବାର ଭୁଲ୍‌ଟା କରିଛି । ସେ ନିଜର ମୁରୁକି ହସର ଓଠ ଉପରେ ଆଙ୍ଗୁଠି ଥୋଇ ଦେଇଥିଲା ।

ସାରୁ ପତ୍ର ଛିଣ୍ଡେଇବା ଲାଗି ସେ ପୋଖରୀ ଯାକେ ଗଲା । ବଢ଼ ବଢ଼ ଆଠ ଦଶଟି ପତ୍ର ସେ ଛିଣ୍ଡେଇଲା । ସେ ସଡ଼କକୁ ଆସିଗଲା । କିଛି ସମୟ ଠିଆ ହୋଇ ସେ ଟେମ୍ପୋ ଲାଗି ଅପେକ୍ଷା କଲା । ତା'ପରେ ଚାଲି ଚାଲି ଘରଆଡ଼କୁ ଯିବାକୁ ଲାଗିଲା ।

ବିଭାଗାଧ୍ୟକ୍ଷ ରଘୁବର ପ୍ରସାଦଙ୍କୁ ପଚାରିଲେ, ''ଆପଣଙ୍କ ସ୍ତ୍ରୀ ଚାଲିଗଲେଣି ?''

''ଆଜ୍ଞା ସାର୍ ।''

''କ'ଣ ଖାଇଲେ ?''

''ଭାତ ଆଉ ନାଲି ଭଜା ।''

''ସେ କ'ଣ ହାତୀରେ ବସି ଫେରିଗଲେ ?''

''ନା, ସାର୍ । ହାତୀ ସନ୍ଧ୍ୟାବେଳକୁ ଫେରିବ । ସେ ଟେମ୍ପୋରେ ଚାଲିଯିବ । ଏତେବେଳକୁ ଟେମ୍ପୋ ମିଳିଯାଇଥିବ ।''

''ଯଦି ନ ମିଳିଥିବ ତୁମେ ବର୍ତ୍ତମାନ ଗଲେ ସେ ରାସ୍ତାରେ ଠିଆ ହୋଇଥିବାର ଦେଖି ପାରିବ ।''

''ନା, ସାର୍ ସେ ଟେମ୍ପୋକୁ ଚାହିଁ ଚାହିଁ ଘର ଆଡ଼କୁ ଚାଲିଯିବଣି ।''

''ସାଇକେଲରେ ଗଲେ ଦେଖା ପାଇଯିବ ।''

''ଟେମ୍ପୋ ପାଇଯାଇଥିଲେ ସେ ଘରେ ପହଞ୍ଚୁଥିବ ।''

''ଟେମ୍ପୋ ମିଳି ନ ଥିବ ।'' ବିଭାଗାଧ୍ୟକ୍ଷ କହିଲେ ।

''ଏଇଲେ ତୃତୀୟ ବର୍ଷର କ୍ଲାସ୍ ବାକି ଅଛି ।''

''ମୁଁ ପଢ଼େଇଦେବି । ତମେ ନିଜ ସ୍ତ୍ରୀକୁ ଘରେ ପହଞ୍ଚାଅ ରଘୁବର ପ୍ରସାଦ ।'' ବିଭାଗାଧ୍ୟକ୍ଷ ଜୋର୍ ଦେଇ କହିଲେ ।

''ଆଚ୍ଛା ସାର୍ ।''

ପ୍ରିନ୍ସିପାଲ ନ ଥିଲେ । ଘରକୁ ଚାଲିଯାଇଥିଲେ । ତେବେ ସୁଦ୍ଧା ରଘୁବର ପ୍ରସାଦ ସେ ସମ୍ଭାବନାରୁ ରକ୍ଷା ପାଇବାକୁ ଚାହୁଁଥିଲେ ।

''ଏଇଟା କାହାର ସାଇକେଲ ସାର୍ !''

''ଯାହାର ବି ହଉ ରଘୁବର ପ୍ରସାଦ ତମେ ନେଇଯାଅ । କାଲି ଶୀଘ୍ର ନେଇ ଆସିବ । ଯାହାର ସାଇକେଲ ହୋଇଥାଉ କହିଦେବି ।''

''କାଲି ଯଦି ଠିକ୍ ସମୟରେ ହାତୀ ଆସିଯାଏ, ତା'ହେଲେ ସାର୍ !''

''ହାତୀ ଉପରେ ସାଇକେଲ ଲଦି ବସିବ ନାହିଁ ରଘୁବର ପ୍ରସାଦ । ହାତୀ ଆସିବା ଆଗରୁ ଠିକ୍ ସମୟରେ ସାଇକେଲରେ ଆସିଯିବ ।''

''ହଉ, ସାର୍ ।''

ରଘୁବର ପ୍ରସାଦ ସାଇକେଲ ନେଇ ଜୋର୍‌ରେ ଚଲାଇଲେ । ସୋନସୀକୁ ଯେବେ ଟେମ୍ପୋ ମିଳି ନ ଥିବ ତେବେ ତାକୁ ସାଇକେଲ୍‌ରେ ବସାଇ ନେବେ । ଘରେ ପହଞ୍ଚି ଯାଇଥିଲେ ସେ ବି ଘରେ ପହଞ୍ଚି ଯିବେ ।

ସୋନସୀ ଆଗକୁ ବାହାରି ଯାଇଥିଲା । ରଘୁବର ପ୍ରସାଦ ଜୋର୍ ଜୋର୍ ସାଇକେଲ ଚଲାଉଥିଲେ । ତାଙ୍କର ମନେ ହେଲା କିଛି ଦୂରରେ ସାମନାରେ ସୋନସୀ ଯାଉଛି । ପବନ ଜୋର୍‌ରେ ବହୁଛି । ଶାଢ଼ି ଫଡ଼ ଫଡ଼ ଉଡୁଥିବାରୁ ଆକୃତିକୁ ଚିହ୍ନିବା କଠିନ ହେଉଛି । ଏତିକି ବେଳେ ଆଗ ଆଡ଼ର ଅଧା ଆକାଶରେ କଳା ମେଘ ଘୋଟିଗଲା । ରଘୁବର ପ୍ରସାଦ ବେଶ୍ ଖରାରେ ସାଇକେଲ ଚଲାଉଛନ୍ତି । ତାଙ୍କୁ ଆଗରେ ବାଦଲର ଛାଇ ଯାକେ ପହଞ୍ଚିବାକୁ ହେବ । ସେ କିଛି ନିକଟକୁ ଆସୁଥିବେ । ବୋଧହୁଏ ସୋନସୀ ହୋଇଥିବ । ବାଦଲ ମଝିରେ ଟିକିଏ ଉଜ୍ଜ୍ୱଳ ଖରା ବାହାରିପଡ଼େ ସେହିଭଳି ମେଘୁଆ ପାଗରେ ସଡ଼କରେ ଯାଉଥିବା ସୋନସୀର ପାଖ ଆଖରେ ବେଶ୍ ଉଜ୍ଜ୍ୱଳ ଖରାର ଆଲୁଅ ଦେଖାଯାଉଛି ।

''ସୋନସୀ ରୁହ ।'' ରଘୁବର ପ୍ରସାଦ ଜୋର୍ ପାଟିରେ କହିଲେ ।

ସୋନସୀ ଫେରିପଡ଼ିଲା ସେ ଖରାରେ ଚକ୍ ଚକ୍ ହୋଇ ଠିଆ ହୋଇଛି । ଖରା ବି ଅଟକି ଯାଇଥିଲା । ଧଇଁ ସଇଁ ହୋଇ ରଘୁବର ପ୍ରସାଦ ସାଇକେଲରୁ ଓହ୍ଲାଇଲେ । ପୁଣି ଏକା ସାଙ୍ଗରେ ଚାଲିଲେ । ''ବହୁତ ଜୋର୍‌ରେ ଚାଲୁଛ ।'' ରଘୁବର ପ୍ରସାଦ କହିଲେ ।

''ନା ତ ! ତମେ କାହିଁକି ଚାଲିଆସିଲ ?''

''ବିଭାଗାଧ୍ୟକ୍ଷ ମୋତେ ଛୁଟି ଦେଇଦେଲେ ।''

''କାହିଁକି ?''

''ତମକୁ ପହଞ୍ଚାଇବାକୁ । ସାଇକେଲ ବି ଦେଲେ ଯେମିତି ମୁଁ ତମକୁ ବାଟରେ ପାଇଯିବି । ଆସ ସାଇକେଲରେ ବସିପଡ଼ ।'' କ୍ୟାରିଅର୍ ଆଡ଼କୁ ଇଙ୍ଗିତ କରି ରଘୁବର ପ୍ରସାଦ କହିଲେ ।

''ମୁଁ ପଛଆଡ଼େ କ୍ୟାରିଅର୍ ଉପରେ ବସି ପାରିବିନି ।'' ବାଆଁ ହାତରେ ସାରୁ ପତ୍ରକୁ ଧରି ସେ ସାଇକେଲର ସାମନାରେ ବସିପଡ଼ିଲା । ରଘୁବର ପ୍ରସାଦ ବେଶ୍ ଧୀରେ ସୁସ୍ଥେ ସାଇକେଲ

ଚଳାଉଥାନ୍ତି । ଘର ଏଠୁ ଦୂର ଅଛି । ଆଖ ପାଖରେ ବିଲ ଅଛି ଯହିଁରେ ଧାନ ହୋଇଛି । ସୋନସୀର ବାଳ ସକାଶେ ରଘୁବର ପ୍ରସାଦଙ୍କ ନାକରେ ବହୁତ ସଲ ସଲ ଲାଗିଲା ଏବଂ ଛିଙ୍କ ହୋଇଗଲା । ଛିଙ୍କ ହେବାରୁ ସାଇକେଲ ଟଳମଳ ହୋଇଗଲା ।

"କ'ଣ ହେଲା ?" ସୋନସୀ ପଚାରିଲା ।

"ତୁମ ବାଳ ବାଜି ନାକ ସଲ ସଲ ହେଲା ଆଉ ଛିଙ୍କ ହୋଇଗଲା ।"

ସୋନସୀ ଡାହାଣ ହାତରେ ମଥାରେ ଲୁଗାକାନି ଦେଇଦେଲା ଯେମିତି ବାଳ ତକ ଘୋଡ଼େଇ ହୋଇଯାଏ ।

"ଏଇଲେ ଠିକ୍ ଅଛି ?"

"ଛିଙ୍କ ହେବାରୁ ଭଲ ଲାଗୁଥିଲା । ଆଉ ଥରେ ଆସିଥିଲେ ଭଲ ହୋଇଥାନ୍ତା ।"

ଗୋଟିଏ ହାତରେ ରଘୁବର ପ୍ରସାଦ ସୋନସୀର କାନିକୁ ଖସାଇଦେଲା । ସୋନସୀର ବାଳ ଲାଗି ରଘୁବର ପ୍ରସାଦଙ୍କ ନାକରେ ପୁଣି ସଲ ସଲ ହେଲା । ଏଥରକ ବହୁତ ଜୋର୍‌ରେ ଛିଙ୍କିଲେ । ସାଇକେଲ ଜୋରରେ ଟଳମଳ ହେଲା । ସେ ଡେଙ୍ଗା ବୋଲି ଗୋଡ଼ଦେଇ ସାଇକେଲ ସମ୍ଭାଳିପାରିଲେ ।

"ଏଇଲେ ପଡ଼ିଯାଇଥାନ୍ତେ ।" ମୁଣ୍ଡକୁ ଢାଙ୍କି ସୋନସୀ କହିଲା ।

"କେମିତି ପଡ଼ିଯାଇଥାନ୍ତେ ।" ରଘୁବର ପ୍ରସାଦ କହିଲେ ।

କଲେଜ ବନ୍ଦ ହେବାବେଳକୁ ସାଧୁ ରଘୁବର ପ୍ରସାଦଙ୍କୁ ନେବାକୁ ଆସିଯାଇଥିଲା । କଲେଜ ବନ୍ଦ ହେଲା କିନ୍ତୁ ରଘୁବର ପ୍ରସାଦଙ୍କର ଦେଖାନାହିଁ । ରଘୁବର ପ୍ରସାଦ କଲେଜକୁ ତ ଆସିଥିଲେ । କ'ଣ ଶୀଘ୍ର ଫେରିଗଲେ କି ? ବିଭାଗାଧ୍ୟକ୍ଷ ହାତୀ ଆଡ଼କୁ ଆସୁଥିଲେ । ହାତୀର ପାଖ ଆଖରେ କିଛି ଛାତ୍ର ସବୁଦିନ ପରି ଜମା ହୋଇଯାଇଥିଲେ । ବିଭାଗାଧ୍ୟକ୍ଷ ଛାତ୍ରମାନଙ୍କୁ ହାତୀଠାରୁ ଦୂରରେ ରହିବାକୁ କହୁଥିଲେ । ପ୍ରାଥମିକ ଶ୍ରେଣୀର ଛୁଟି ଆଗ ହୋଇଯାଏ । ତା' ନୋହିଲେ ଭିଡ଼ଟା ବଢ଼ିଯାଇଥାନ୍ତା ।

"ରଘୁବର ପ୍ରସାଦ ତ ଚାଲିଗଲା ।" ବିଭାଗାଧ୍ୟକ୍ଷ ସାଧୁକୁ କହିଲେ ।

ଟେମ୍ପୋରେ ଗଲେ ?

"ନାଇଁ ସାଇକେଲରେ ଗଲେ ।"

"ମୁଁ ତ ଠିକ୍ ସମୟରେ ଆସିଥିଲି ।" ଉଦାସ ଭାବେ ସାଧୁ କହିଲା ।

"କାଲିକି ସାଇକେଲରେ ଆସିବେ ।" ବିଭାଗାଧ୍ୟକ୍ଷ କହିଲେ ।

"ସେ କ'ଣ ସାଇକେଲ ଖର୍ଦ୍ଦି କରିଛନ୍ତି କି ?"

"ଖର୍ଦ୍ଦି କରି ନାହାନ୍ତି । ମାଗିକରି ନେଇଯାଇଛନ୍ତି । କାଲି ଫେରାଇଦେବେ ।"

"ଆଚ୍ଛା ନମସ୍କାର ।" ସାଧୁ ବିଭାଗାଧ୍ୟକ୍ଷଙ୍କୁ କହିଲା । ସେ ଫେରିଗଲା ।

ହାତୀ ଚାଲିଯାଇଛି । ତଥାପି ଛାତ୍ରଯାକ ସେଇଠି ଠିଆ ହୋଇଛନ୍ତି । ସେମାନେ ସମସ୍ତେ ବିଭାଗାଧ୍ୟକ୍ଷଙ୍କ ଆଡ଼କୁ ଚାହିଁରହିଛନ୍ତି । ଛାତ୍ରମାନେ ମନେକରୁଛନ୍ତି ଯେ ବିଭାଗାଧ୍ୟକ୍ଷ ତାଙ୍କୁ କିଛି

କହିବେ । ବିଭାଗାଧ୍ୟକ୍ଷ ଛାତ୍ରମାନଙ୍କୁ ନିଜ ଆଡ଼କୁ ଉନ୍ମୁଖ ହୋଇ ଠିଆ ହୋଇଥିବାର ଦେଖିଲେ । ସେତେବେଳେ ତାଙ୍କର ମନ ହେଉଥିଲା ଯେ ସେ କହନ୍ତେ– ଛାତ୍ରମାନେ, ରଘୁବର ପ୍ରସାଦଙ୍କର ଅଜବ କାଣ୍ଡ ଦେଖ । ତାଙ୍କୁ ନିୟମିତ ଗୋଟିଏ ହାତୀ ନବା ଆଣିବା କରେ । ତାଙ୍କ ବଖରା ଭିତରେ ଝରକା ବାଟେ ଗୋଟିଏ ରାସ୍ତା ଯାଇଛି । ସେଠି ଗୋଟିଏ ସୁନ୍ଦର ନଦୀ ବହୁଛି । ଯେଉଁମାନେ ସେଠିକି ଯିବାକୁ ଚାହିଁବେ ନିଶ୍ଚୟ ଯାଆନ୍ତୁ ।

''ତମେମାନେ ଘରକୁ ଯାଅ ।'' ଖାଲି ଏତିକି ବିଭାଗାଧ୍ୟକ୍ଷ କହିଲେ ।

ଅଧା ମେଘୁଆ, ଅଧା ଖରା ପାଗ ହୋଇଛି । ଖାଲି ଯେବେ ଅଧା ମେଘୁଆ ଆଉ ଅଧା ଖରା ହୋଇଥାନ୍ତା ତେବେ ବି ଭଲ ହୋଇଥାନ୍ତା । କିନ୍ତୁ ଖାଲି ମେଘୁଆ ହୋଇଯାଏ ପୁଣି ଖାଲି ଖରା, ଟିକେ ପରେ ପରେ ଏଇମିତି ହେଉଥାଏ । ଏଠିକି ଗୋଟିଏ ହାତୀ ଆସିଲା ଆଉ ଚାଲିଗଲା । ହାତୀ ଧୂଳି ଉଡ଼ାଇ ଆସି ନ ଥାଏ କି ଧୂଳି ଉଡ଼ାଇ ଯାଇ ନ ଥାଏ । ପ୍ରାଥମିକ ଶ୍ରେଣୀରେ ପିଲାମାନଙ୍କୁ ରଘୁବର ପ୍ରସାଦଙ୍କର ହାତୀରେ ବସି ଆସିବାର ଦୃଶ୍ୟ ଭଲଲାଗେ । ଶ୍ରେଣୀର ଛାତ୍ର ଯେବେ ହାତୀର ଚିତ୍ର ଆଙ୍କିବେ ତେବେ ଖାଲି ହାତୀର ଚିତ୍ର ଆଙ୍କନ୍ତି ନାହିଁ । ତାହା ଉପରେ ସାଧୁକୁ ବି ଆଙ୍କୁଥିଲେ । ପୁଣି ରଘୁବର ପ୍ରସାଦ ତାହା ଉପରେ ବସିଥିବେ । ଏବେ ତ ସୋନସୀ ବି ତାହା ଉପରେ ବସିଥିବ । ପ୍ରାଥମିକ ଶ୍ରେଣୀ ଆଉ କଲେଜର ଛାତ୍ର ଭଲ ଚିତ୍ରକାର ହୋଇଥିଲେ ଯେବେ କୌଣସି ପୁରୁଷର ଚିତ୍ର ଆଙ୍କନ୍ତି ସେଇଟି ରଘୁବର ପ୍ରସାଦଙ୍କ ଭଳି ଦେଖାଯାଏ । ଯେବେ ଝିଅର ଚିତ୍ର ଆଙ୍କନ୍ତେ ତେବେ ସୋନସୀ ଭଳିଆ ହେବ । ସବୁ ପିଲା ଦେଖିଥିଲେ ଯେ ହାତୀ ଓ ସାଧୁ ରଘୁବର ପ୍ରସାଦଙ୍କର ସାଇକେଲରେ ଚାଲିଯିବା ହେତୁରୁ ମନ ଖରାପ କରିଥିଲେ । ସେଇଥିପାଇଁ ପିଲାଏ ଓଠରେ ଆଙ୍ଗୁଠି ଥୋଇ ତାଙ୍କର ଉଦାସ ଭାବକୁ ଚୁପ୍ ଚାପ୍ ଚାହିଁରହିଥିଲେ ।

ଘରେ ପହଞ୍ଚିବା ମାତ୍ରେ ରଘୁବର ପ୍ରସାଦ ସୋନସୀକୁ କହିଲେ, ''କଲେଜ ଯିବା ଆସିବା ସକାଶେ ସାଇକେଲ ଭଲ ହେବ । ବାପାଙ୍କ ସାଇକେଲଟି ନେଇ ଆସିବା ଓ ମରାମତି କରାଇଦେବା ।''

''ହାତୀରେ କ'ଣ ଆଉ କୋଉ ଜାଗାକୁ ବୁଲିଯିବା ?''

''ଆଉ କୋଉଠିକୁ ଚାଲିକରି ବୁଲିଯିବା ।'' ରଘୁବର ପ୍ରସାଦ କହିଲେ ।

କଲେଜ ଆଠ କିଲୋମିଟର ଦୂରରେ ଅଛି, ସେଠିକି ଯିବାକୁ ହାତୀ ବା ଟେମ୍ପୋ ଦରକାର । ବୁଲାବୁଲି ଲାଗି ସୋନସୀ ଓ ରଘୁବର ପ୍ରସାଦଙ୍କର ଆଉ କୋଉ ଜାଗା ବେଶୀ ଦୂର ନୁହେଁ । ପାଖ ଆଖ ଜାଗା, ଆଉ କୋଉଠିକୁ ଚାଲି ଚାଲି ଯାଇହେବ ।

ସାଇକେଲଟିକୁ ରଘୁବର ପ୍ରସାଦ ବଖରା ଭିତରେ ରଖିଲେ । ସାଇକେଲରେ ତାଲା ଲଗା ହୋଇଛି । ଖଟିଆକୁ ଘୁଞ୍ଚାଇ ଦେଇ ସାଇକେଲ ଲାଗି ଜାଗା କରାଯାଇଛି ।

ରଘୁବର ପ୍ରସାଦ ଭାବୁଥିଲେ ସାଇକେଲ୍ କ'ଣ ଝରକା ବାଟେ ସେକଡ଼କୁ ଯାଇପାରେ । ସେ ସାଇକେଲକୁ ଉଠାଇ ଝରକା ବାଟେ ସାଇକେଲକୁ ବାହାର କରିବାକୁ ଚେଷ୍ଟା କଲେ ।

''କ'ଣ କରୁଛ କି ? ସୋନସୀ ପଚାରିଲା ।

"ମୁଁ ଦେଖୁଛି ସାଇକେଲଟା ଝରକା ବାଟେ ବାହାରି ପାରିବ କି ନାହିଁ । ସୋନସୀ ମଧ୍ୟ ହାଣ୍ଡଲକୁ ଧରି ଝରକା ବାଟେ ସାମନା ଚକଟା ବାହାର କରିବାକୁ ଚେଷ୍ଟା କରୁଥାଏ । ଚକଟା ଅଟକୁଥାଏ । ଝରକାଟା ଆଉ ଟିକିଏ ବଡ଼ ହୋଇଥିଲେ ସାଇକେଲ ବାହାରି ଯାଇଥାନ୍ତା ।

"ଝରକା ଆଉ ଟିକେ ବଡ଼ ହେବା ଉଚିତ୍ ଥିଲା ।" ରଘୁବର ପ୍ରସାଦ କହିଲେ ।

"ସନ୍ଧ୍ୟାବେଳେ ସାରୁପତ୍ରର ଶାଗ କରିଦେବି ।" ସୋନସୀ ସାରୁ ପତ୍ରକୁ ଟୋକେଇରେ ରଖୁ ରଖୁ କହିଲା ।

ସୋନସୀ ଗାଧୋଇବାକୁ ପୋଖରୀ ଆଡ଼କୁ ଗଲା । ବୁଢ଼ୀ ମାଆ ତଳ ଆଡ଼ର ନଈରେ ସୁନା କଣିକା ପାଇବାକୁ ବାଲିକୁ ଚାଲୁଣୀ ଚଲାଉ ଚଲାଉ ଠିଆ ହୋଇଥିଲା । ଯେତେବେଳେ ଝଡ଼ା ପହଁରା ଭଳି କିଛି କାମ ନଥାଏ ସେତେବେଳେ ସେ ତଳ ଆଡ଼ର ନଈକୁ କାଠୁଆ ଥାଳିଟି ନେଇଯାଏ ଓ ଠିଆ ହୋଇଯାଏ । କାଠୁଆ ଥାଳିରେ ବାଲି ଭର୍ତ୍ତି କରି ସେ ନଈର ଗଲା ପାଣିରେ ବାଲିକୁ ଧୋଇବ ଓ ଛାଣୁଥିବ । ନଇଁ ନଇଁ ଯେତେବେଳେ ଅଣ୍ଟା ପରାସ ହୋଇଯାଏ ସେତେବେଳେ ସେ ନଈରେ ବସିପଡ଼େ । ସେ ଯେତେବେଳେ ସୁନାର କଣିକା ଖୋଜୁଥାଏ ସେତେବେଳେ ନଈ କୂଳେ ମାଙ୍କଡ଼ଯାକ ଏଠି ସେଠି ଶୁଖିଲା ଜାଗାରେ ବସିଥିବେ । ବେଳେ ବେଳେ ଗୋଟେ ଦୁଇଟା ମାଙ୍କଡ଼ ବୁଢ଼ୀ ମାଆ ପାଖକୁ ଆସି ପାଣିରେ ବାଲି ଗୋଳିଆ କରନ୍ତି । ବୁଢ଼ୀ ମାଆ ପାଣିକୁ ଛିଡ଼ିକାଇ ବା ନଈରୁ ଟେକାପଥର ଗୋଟାଇ ମାଙ୍କଡ଼କୁ ତଡ଼ିଦିଏ । ବୁଢ଼ୀମାକୁ ଟେକାପଥର ଧରିବାର ଦେଖିଲେ ମାଙ୍କଡ଼ ସାଂଗେ ସାଂଗେ ପଳାଇଯାନ୍ତି । ବହୁତ ବାଲି ଅଣ୍ଡାଳିବା ପରେ ସୁନାର ଗୋଟିଏ କଣିକା ମିଳିଯାଏ । ବେଳେବେଳେ ଗହମ ଦାନା ଭଳି ସୁନାର ଟୁକୁଡ଼ା ମିଳିଯାଏ । ଯେତେବେଳେ ବୁଢ଼ୀ ମାଆକୁ ସୁନାର କଣିକା ମିଳିଯାଏ ସେତେବେଳେ ପାଖ ଆଖରେ ଗଛରେ ବସିଥିବା ଶୁଆ ଟେଁ ଟେଁ କରି ବୋବାଇ ଦିଅନ୍ତି । ସୁନାର କଣିକା ପାଇ ବୁଢ଼ୀ ମାଆ ଘରକୁ ଫେରିବା ବେଳେ ବି ଶୁଆ ଟେଁ ଟେଁ ବୋବାଇ । ତା' ସାଙ୍ଗେ ସାଙ୍ଗେ ଉପରେ ଉଡ଼ିଚାଲନ୍ତି । ସେମାନେ ବୁଢ଼ୀ ମାଆର ଘର ଛାତ ଉପରେ କିଛି ବେଳ ବସିରହନ୍ତି । ମାଙ୍କଡ଼ ବି ଖୁସିରେ ଡିଆଁଡେଇଁ କରି ଫେରନ୍ତି ।

"ବୁଢ଼ୀ ମାଆ ପାଣିରେ ବେଶୀ ବେଳ ଠିଆ ହୁଅନା ।" ସୋନସୀ ଯାଉ ଯାଉ କହିଲା ।

"ଗାଧୋଇ ସାରି ଘରକୁ ଆସିବୁ ।" ଥକିଲା ସ୍ୱରରେ ବୁଢ଼ୀ ମାଆ କହିଲା ।

"ହଁ ।" ସୋନସୀ କହିଲା ।

ସୋନସୀ ପାଖରେ ଧୋଇବା ଲାଗି ବେଶୀ ଲୁଗା ନ ଥିଲା । ପିନ୍ଧିବାର ଶାଢ଼ିଟିଏ ଥିଲା ଆଉ ରଘୁବର ପ୍ରସାଦଙ୍କର ଚଡ଼ିଟିଏ ଥିଲା । ଲୁଗାକୁ ଜଲ୍‌ଦି କାଢ଼ି ସେ ଗାଧୋଇଲା । ସେତିକି ବେଳେ ସେ ନଈ ଆଡ଼େ ଉଡୁଥିବା ଶୁଆଙ୍କର ଟେଁ ଟେଁ ଶୁଣିଲା । ବୁଢ଼ୀ ମାଆ ଏଇଲେ ଫେରୁଥିବ, ସୋନସୀ ଭାବିଲା, ଗାଧୋଇ ସାରି ସେ ବୁଢ଼ୀ ମାଆ ପାଖକୁ ଗଲା । ବୁଢ଼ୀ ମାଆ ଚାହା କରୁଥିଲା । ସୋନସୀ କଚା ଲୁଗାକୁ ଶୁଖିଲା ଜାଗାରେ ଥୋଇ ବୁଢ଼ୀ ମାଆକୁ ସାହାଯ୍ୟ କଲା । ଚାହା ପିଇ ପିଇ ସୋନସୀ ଦେଖିଲା ଯେ ଗୋଟିଏ କଳା ବିଛା ତା ନାହୁଡ଼ ଟେକି କଳା ହାଣ୍ଡି ପଛରେ ଲୁଚିଗଲା ।

''ବିଛା !'' ସୋନସୀ କହିଲା ।

''କୋଉଠି ?'' ବୁଢ଼ୀ ମାଆ ପଚାରିଲା ।

''ହାଣ୍ଡିଯାକଙ୍କ ପଛକୁ ଚାଲିଗଲା ''

''ଥାଉ, ଚାଲିଯିବ । ଆଗ ଚାହା ପିଇନେ ।'' ବୁଢ଼ୀ ମାଆ କହିଲା ।

ଚୁମୁଟା ନେଇ ସୋନସୀ ହାଣ୍ଡିଗୁଡ଼ାକୁ ଏକଡ଼ ସେକଡ଼ କରି ଖୋଜିଲା । ବିଛା କୋଣକୁ ଯାକି ବସିଥିଲା । ଚୁମୁଟା ଦେଇ ସେ ଡର ଯୋଗୁ ଧରି ପାରୁନଥାଏ । ସେଇଠୁ ବୁଢ଼ୀ ମାଆ ଖଡ଼ିକା ବଢ଼ିଣା ଦେଇ ବିଛାକୁ ପଦାକୁ ପହଁରି ଦେଲା ।

''ବିଛା ତ ଗଲାଣି । ଏବେ ଚାହା ପିଇଦେ ।''

ସୋନସୀ ଯେତେବେଳ ଯାଏ ପଥର ଉପରେ ଗୋଡ଼କୁ ଟେକି ବସି ଚାହା ପିଉଥିଲା, ବୁଢ଼ୀ ମାଆ ସୋନସୀକୁ ନିରେଖି ଚାହିଁ ରହିଥିଲା । ଚାହା ପିଇସାରି ସୋନସୀ କହିଲା, ''ମୁଁ ଯାଏଁ ।''

''ଟିକେ ରହିଥା ।'' ବୁଢ଼ୀ ମାଆ କହିଲା ।

ବୁଢ଼ୀ ମାଆ କଳା ଚିକିଟା କାଠ ବାକ୍ସକୁ ଲୁଗାପଟାରେ ବନ୍ଧା ହୋଇଥିବା ଗୋଟିଏ ପୁଟୁଳି ବାହାର କରି ସୋନସୀ ଆଗରେ ତଳେ ବସି ପଡ଼ିଲା । ସେ ପୁଟୁଳିଟି ଖୋଲିଲା । ଯୋଡ଼ାଏ ସୁନାର କଡ଼ା ଥିଲା । ବୁଢ଼ୀ ମାଆ ସୋନସୀକୁ କଡ଼ା ପିନ୍ଧାଇଲା । କଡ଼ା ପିନ୍ଧି ସାରି ଲୁଚାଇ ଲୁଚାଇ କଡ଼ାକୁ ଚାହୁଁ ଚାହୁଁ, ସୋନସୀ ପଚାରିଲା, ''ଏବେ ଯାଏଁ ?''

''ଯା !'' ଏହା ଶୁଣିବା ମାତ୍ରେ ଓଦା ଲୁଗା ଉଠାଇ ନେଇ ସୋନସୀ ଡେଇଁ ଡେଇଁକା ଦଉଡ଼ିଗଲା । ଚୁଡ଼ି ସାଙ୍ଗରେ ତାର କଡ଼ା ଖଡ଼ର ଖଡ଼ର ବାଜୁଥାଏ । ଠାଏ ବାଟରେ ଅଟକି ସୋନସୀ ଭଲକରି କଡ଼ାକୁ ନିରିଖିଲା । ସେଇ ଜାଗାରେ ବୁଦା ଉପରେ ସେ ଓଦା ଲୁଗାକୁ ମେଲାଇ ଦେଲା । ଦଉଡ଼ି ଦଉଡ଼ି ଆସିଗଲା ।

ରଘୁବର ପ୍ରସାଦ ଅନେକବେଳୁ ଉଠି ବସିଥିଲେ ଓ ବହି ପଢୁଥିଲେ । ସୋନସୀ କଡ଼ାକୁ ଲୁଚାଇ ଦେଇଥିଲା । ସେ ଭାବିଲା ଆଗ ସବୁ କାମ କରିନିଏଁ ତା'ପରେ ରଘୁବର ପ୍ରସାଦଙ୍କୁ କହିବି । କଡ଼ାକୁ କନାରେ ବାନ୍ଧି କରି ସେ କ୍ୟାଲେଣ୍ଡରର କଣ୍ଟାରେ ବାନ୍ଧିଦେଲା । ସେ ଜଲଦି ଜଲଦି ରୋଷେଇ କରିଦେଲା । ଖିଆ ପିଆ ସାରି ରଘୁବର ପ୍ରସାଦ ହାତୀ ଆସିବା ପୂର୍ବରୁ କଲେଜ ଚାଲିଗଲେ । ସାଇକେଲ ଚଲାଇବାକୁ ତାଙ୍କୁ ଭଲ ଲାଗୁଥିଲା । ଥକ୍କା ଜମାରୁ ଲାଗୁ ନ ଥିଲା । ସେ ଭାବିଲେ ବାପାଙ୍କ ସାଇକେଲଟା ସେ ନେଇ ଆସିବେ । ଆଗକୁ ଗଲେ ବାଟରେ ହାତୀକୁ ଭେଟିବାର ସମ୍ଭାବନା ମୋଟେ ନ ଥିଲା । ପଛପଟରୁ ବି ହାତୀ ଆସି ତାଙ୍କ ପାଖରେ ପହଞ୍ଚି ପାରିନଥାନ୍ତା ।

ସେ କଲେଜରେ ଆଗରୁ ପହଞ୍ଚିଯାଇଛନ୍ତି । କଲେଜର ଦରଜା ଏବେ ଖୋଲା ହେଉଛି । ସଫାସଫି କାମ ଚାଲିଛି । ପ୍ରାଥମିକ ଶ୍ରେଣୀରେ ପାଠପଢ଼ା ଚାଲିଥିଲା । ସେ ନିଜ ରୁମକୁ ଚାଲିଗଲେ ଓ ପଢ଼ିବା ଆରମ୍ଭ କଲେ ।

ସୋନସୀ ଏଇଲେ ରୋଷେଇଘର ଲିପା ପୋଛା ସଜଡ଼ାରେ ବ୍ୟସ୍ତ ଥିଲା । ସେ ବହୁତ ଡେରିରେ ଖାଏ । ଗାଧୋଇ ପାଧୋଇ ସକାଳୁ ଅଳ୍ପ ବାକି ବଳିଥିବା ଜିନିଷ ନେଇ ଖାଇଦିଏ । ବାସି ଯେବେ ବଳି ନ ଥିବ ସେ ଭୋକିଲା ରହେ । ଦିପହରେ ଘରର ସବୁ କାମ କଲାପରେ ଖାଏ । ସେ କାମ କରୁଥାଏ ଏତିକିବେଳେ ହାତୀ ଆସିବାର ଶବ୍ଦ ଆସିଲା । ଦରଜା ଖୋଲି ସେ ପଦାକୁ ଆସିଲା । ସାଧୁ ରଘୁବର ପ୍ରସାଦଙ୍କୁ ନେବାକୁ ଆସିଥିଲା ।

''ସେ ତ ଚାଲିଗଲେଣି ।'' ହାତୀ ପାଖକୁ ଆସି ସେ କହିଲା ।

''ଖାଇ କରି ଯାଇନାହାନ୍ତି ?'' ସାଧୁ ପଚାରିଲା ।

''ଖାଇ କରି ଯାଇଛନ୍ତି । ଡବା ପହଞ୍ଚାଇବାକୁ ହବନାହିଁ । କାଲି ସାଇକେଲରେ ଆସିଥିଲେ ଆଜି ସାଇକେଲ ପହଞ୍ଚାଇବାକୁ ଯାଇଛନ୍ତି । ଚାହା ପିଇବ ?'' ସେ ସାଧୁକୁ ପଚାରିଲା ।

''ନା,'' ସାଧୁ କହିଲା । ସେ ଫେରିଆସିଲା । ଦରଜା ବନ୍ଦ କରୁ କରୁ ସେ ଦେଖିଲା ସାଧୁ ଯିବା ଉପରେ । କାମ ସାରି ସେ ଖାଇ ବସିଲା ।

କିଛି ଦିନ ତଳେ ଖାଇବା ବେଳେ ଗୋଟିଏ କହରା ରଙ୍ଗର ଗାଈ ଝରକା ପଟେ ଆସି ଯାଇଥିଲା । ସେ ଗାଈକୁ ଦୁଇଖଣ୍ଡ ରୁଟି ଦେଇଥିଲା ଯେ ଗାଈ ପୋଷା ମାନିଗଲା । ଗାଈ ପ୍ରତିଦିନ ଆସିବାକୁ ଲାଗିଲା । ଠିକ୍ ସମୟରେ ଝରକା ପାଖକୁ ଆସିଯାଏ । ଗାଈ ପାଇଁ ଦି ଖଣ୍ଡ ରୁଟି ଥିଲା । ତା' ଲାଗି ଭାତ ଥିଲା । ରାତିରୁ ବଳକା ସାରୁ ଭାଜି ଓ ଅଳ୍ପ ଆଳୁ ଥିଲା । ସାରୁର ଭାଜିଟା ରଘୁବର ପ୍ରସାଦ ଖାଇ ନଥିଲେ । ଭାଜି ତଣ୍ଟି ଗଲ ଗଲ କରେ । ରଘୁବର ପ୍ରସାଦଙ୍କ ଲାଗି ସେ ସକାଳେ ଆଳୁ ବନାଇ ଦେଇଥିଲା । ଖାଇବା ପୂର୍ବରୁ ତା'ର ମନେହେଲା ହାତୀ ଚିଂଘାଡୁଛି ପରା । ଦରଜା ଖୋଲି ସେ ଦେଖିଲା ହାତୀ ଏକା ଠିଆ ହୋଇଛି । ସାଧୁ ନାହିଁ । ପାଖରେ କେଉଁଠି ଥିବ । ସେ ବାହାରକୁ ଆସିଲା । ସାଧୁର ଦେଖାନାହିଁ । ସେ ହାତୀ ପାଖକୁ ଗଲା । କିଛି ସମୟ ସେଇଠି ଠିଆ ହୋଇ ରହିଲା । ତା'ର ମନେହେଲା ସେ ସେଇ ଗଛ ପାଖକୁ ଯିବ ଯେଉଁଠି ଲୁଚି ବସି ବିଡ଼ି ପିଉଥିବା ପିଲାଟା ଅଛି । ତାକୁ ହିଁ ପଚାରିବ ସାଧୁ କୁଆଡ଼େ ଗଲା । ସାଧୁକୁ ଡାକି ଆଣିବାକୁ ତାକୁ ପଠାନ୍ତା । ରଘୁବର ପ୍ରସାଦଙ୍କୁ ଡକାଇବାକୁ ବହୁତ ସମୟ ଲାଗିବ । ଫେରି ଆସି ସେ ଚୁପ୍‌ଚୁପ୍ ଖୋଲା କବାଟକୁ ଆଉଜି ବସିଗଲା । ଖାଇବାକୁ ଏଇଲେ ତା'ର ଇଚ୍ଛା ହେଉନାହିଁ । ବେଳେବେଳେ ତା'ର ମନରେ ଭ୍ରମ ହେଉଥାଏ ଯେ ହାତୀ ଚାଲୁଛି, ସଡ଼କ ଆଡ଼କୁ ଯାଉଛି । ପୁଣି ବେଳେବେଳେ ଭ୍ରମ ହେଉଥାଏ ସେ ତା'ର ବଖରା ଆଡ଼କୁ ଆସୁଛି । କିନ୍ତୁ ଏମିତି କିଛି ନଥିଲା ।

ଝରକା ଆଡ଼କୁ ଗାଈ ଆସିଯାଇଛି । ସେ ରୁଟି ଆଣିବାକୁ ଗଲା । ଦୁଇପଟ ରୁଟି ଦେଉ ଦେଉ ତାର ମନେ ହେଲା ପଟେ ରୁଟି ହାତୀକୁ ବି ଦେବା ଉଚିତ । ସୋନସୀ ହାତରୁ ପଟିଏ ରୁଟି ଖାଇ ଗାଈଟା କିଛି ସମୟ ଠିଆ ହୋଇ ରହିଲା ପରେ ଚାଲିଗଲା । ଆଉ ରୁଟିଟି ନେଇ ସେ ହାତୀ ପାଖକୁ ଗଲା । ଆଉ ଟିକେ ପାଖକୁ ଗଲା । ରୁଟିକୁ ଫିଙ୍ଗିକରି ଦେବା ତ ଉଚିତ ନୁହେଁ । ରୁଟିକୁ ତା ପାପୁଲିରେ ରଖି ଦୁଇ ହାତକୁ ସେ ମେଲି ଧରିଲା । ହାତୀ ଶୁଣ୍ଢ ବଢ଼ାଇ ରୁଟି ନେଇଥାନ୍ତା କିନ୍ତୁ ସୋନସୀ ଦୂରରେ ଥିଲା । ଦୁଇପାଦ ଶୁଣ୍ଢ ବଢ଼ାଇ ହାତୀ ଆଗକୁ ଆସିଲାରୁ ସୋନସୀ ଆଖିକୁ

ବୁଜିଦେଲା, ରୁଟି ମୁହଁରେ ପକାଇ ହାତୀ ଦୂରକୁ ଚାଲିଗଲା । ସୋନସୀ ଆଖି ଖୋଲି ଚାହିଁଲା ଯେ ହାତୀ ପଛେଇ ଯାଉଛି । ହାତୀ ଶୁଣ୍ଢର ଛୁଆଁ ତାର ପାପୁଲି ଉପରେ ହୋଇଛି ନା ନାହିଁ ସେ କଥା ତାକୁ ଠିକ୍ ଜଣାପଡୁନାହିଁ । ସେ କିଛି ସମୟ ସେଠି ଠିଆ ହୋଇ ରହିଲା । ଦୁଇ ପଡ଼ିଶାଘର କାଲିଠାରୁ ଦିଶୁନାହାନ୍ତି । ଆଜି ଦୁଇଟି ଯାକ କବାଟରେ ତାଲା ଝୁଲୁଛି । ସୋନସୀ ଦେଖିଲା ସାଧୁ ଆଗର ଗୋଟିଏ ଗଳିରୁ ବାହାରି ଆସୁଛି । ସେ ସାଧୁ ଆସିବା ଯାକେ ଅପେକ୍ଷା କଲା । ''ହାତୀକୁ ଛାଡ଼ି ଯାଇଥିଲ ?'' ସୋନସୀ କହିଲା ।

''ହଁ ଗଳି ଭିତରେ ଜଣେ ଚିହ୍ନା ଲୋକ ପାଖକୁ ଯିବାର ଥିଲା । ଗଳି ଭିତରକୁ ତ ହାତୀ ଯାଇପାରିବନି ତେଣୁ ଛାଡ଼ିଦେଇ ଯାଇଥିଲି । ହାତୀ କିଛି କରିବ ନାହିଁ । ମୁଁ ଯାଉଛି ।'' ହାତୀ ଉପରେ ବସି ସେ 'ପ୍ରଣାମ' ବୋଲି କହିଲା । ସେ ଚାଲିଗଲା । ଏଇଲେ ସେ ବେଶ୍ ଫୁରୁସତ୍ ଭିତରେ ଖାଇପାରିବ ।

ସନ୍ଧ୍ୟାବେଳ । ଅନ୍ଧାର ହୋଇଗଲାଣି । ସଡ଼କରେ ବିଜୁଳିବତୀ ଜଳିଲାଣି । ଘର ସାମନାରେ ବିଜୁଳି ଖୁଣ୍ଟ ତଳେ ଅଖା ପାରି ରଘୁବର ପ୍ରସାଦ ବସିଛନ୍ତି । ପଡ଼ାର ଜଣେ ଦି'ଜଣ ପିଲା ବି ଥିଲେ । ରଘୁବର ପ୍ରସାଦ ତାଙ୍କୁ ଅଙ୍କ ପଢ଼ାଉଥିଲେ ।

ସୋନସୀ ଘର କାମ ସାରି ଖାଇବା ଜିନିଷ ଘୋଡ଼ାଇ ବସିଛି । କ୍ୟାଲେଣ୍ଡରର ଖୁଣ୍ଟିରେ ଟଙ୍ଗା ହୋଇଥିବା ପୁଟୁଳିଟିକୁ ସେ ଯାଉଣୁ ଆସୁଣୁ ଦେଖିନିଏ । ଦିଥର ସେ ଅଣ୍ଡାଳି କରି ଦେଖିଛି । କବାଟର ଦରଜାର ପଟା ଖୋଲି ରଘୁବର ପ୍ରସାଦଙ୍କୁ ବି ଚାହିଁନିଏ । କଡ଼ା ଦିଟା ଦେଖାଇବାକୁ ତାର ସୁଯୋଗ ହୋଇନାହିଁ । ରଘୁବର ପ୍ରସାଦ ସେହି ସାଇକେଲ ଧରି ଆସିଥିଲେ । ସାଇକେଲଟା କାହାର ସେକଥା ଜଣାପଡ଼ିନାହିଁ । ବିଭାଗାଧ୍ୟକ୍ଷ ରଘୁବର ପ୍ରସାଦଙ୍କୁ କହିଥିଲେ, ''ଆଉ ଗୋଟିଏ ଦିନ ଯାକୁ ନିଜ ପାଖରେ ରଖିନିଅ, ତା'ପରେ ସେଇଟାକୁ ଅଫିସରେ ଜମା କରିଦେବା ।'' ସେହି ବେଓ୍ୱାରିସ୍ ସାଇକେଲଟିର ଖବର କଲେଜ ଓ ପ୍ରାଥମିକ ଶ୍ରେଣୀ ଦୁଇ ଜାଗାରେ ଥିଲା । ସାଇକେଲଟା ନା ଶିକ୍ଷକ ନା ଛାତ୍ର କାହାରି ନୁହେଁ । ରଘୁବର ପ୍ରସାଦ ଶୀଘ୍ର ଆସିଗଲେ । ସାଧୁ ହାତୀକୁ ନେଇ ରଘୁବର ପ୍ରସାଦଙ୍କୁ ନେବାକୁ କଲେଜ ଯାଉଥିଲା । ରଘୁବର ପ୍ରସାଦଙ୍କୁ ନପାଇ ସାଧୁ ନିରାଶ ହୋଇଥିଲା । ସନ୍ଧ୍ୟାବେଳକୁ ସେ ଆସିଲା ନାହିଁ । ସୋନସୀ ରଘୁବର ପ୍ରସାଦଙ୍କୁ ଘର ଆଗରେ ହାତୀକୁ ଛାଡ଼ି ଚାଲି ଯାଇଥିବାର ଖବର କହି ଦେଇଥିଲା ।

ପରୀକ୍ଷା ବେଳ ନିକଟ ହେଉଛି । ସନ୍ଧ୍ୟା ହେବା ମାତ୍ରେ ଛାତ୍ରମାନେ ରଘୁବର ପ୍ରସାଦଙ୍କ ପାଖକୁ ଆସିବା ଆରମ୍ଭ କରିଛନ୍ତି । ସୋନସୀ ଭାବିଲା ରଘୁବର ପ୍ରସାଦ ସାଇକେଲ ଚଲାଇ ଓ ପାଠ ପଢ଼ାଇ ଥକି ଯାଇଥିବେ । ତାଙ୍କୁ ବିରକ୍ତ କରିବା ଉଚିତ ନୁହେଁ । ସେ କବାଟ ବାଟେ ଦେଖିଲା ଯେ ଆଗେ ତିନିଜଣ ପିଲା ଥିଲେ ଏଇଲେ ପାଞ୍ଚ ଜଣ ହୋଇଗଲେଣି । କିନ୍ତୁ ସେ ସମ୍ଭାଳି ପାରିଲା ନାହିଁ । ସେ ମୁହଁ ହାତ ଧୋଇଲା । କଡ଼ାକୁ ପିନ୍ଧିଲା । କଜ୍ଜଳର ଛୋଟ ଡିବାରୁ କଜ୍ଜଳ ନେଇ ଲଗାଇଲା । କବାଟ ଖୋଲି ଦେଖିଲା ସେଠି ଦିଜଣ ପିଲା ଦିଶୁଛନ୍ତି । ଏ ଦୁହେଁ ବି ଟିକିଏ ପରେ ଚାଲିଯିବେ ।

ଦରଜାକୁ ଆଉଜେଇ ସେ ବାକ୍ସରୁ ଗୋଟିଏ ହଳଦିଆ ଶାଢ଼ି ବାହାର କଲା । ସେ ଶାଢ଼ିରେ ପୁଣି ରୂପାଲି ପ୍ଲାଷ୍ଟିକ୍ ଜରି ଲାଗିଛି । ଖଟିଆ ଉଢ଼ାଳରେ ସେ ଶାଢ଼ି ପିନ୍ଧିଲା । ଏମିତି ସାଜ ସଜ ହୋଇ ସେ ଭାବିଲା ଗିଲାସେ ପାଣି ରଘୁବର ପ୍ରସାଦଙ୍କ ପାଇଁ ନେଇଯିବ । ଶୋଷ ହେଉଥିଲେ ପିଇନେବେ ।

ସୋନସୀ ପଦାକୁ ସଡ଼କ ଉପରକୁ ଆସିଲା । ସେତେବେଳକୁ ରଘୁବର ପ୍ରସାଦ ଆଗରେ ଥିବା ବିଜୁଳି ଖମ୍ବ ଆଡ଼କୁ ଯାଉଥାନ୍ତି । ସେଠି ମଧ୍ୟ ଚାରିଜଣ ପିଲା ବତୀ ତଳେ ପଢୁଛନ୍ତି । ଗଛ ଉପରେ ଲୁଚି ବସି ବିଡ଼ି ପିଉଥିବା ପିଲାଟା ସୋନସୀକୁ ରଘୁବର ପ୍ରସାଦଙ୍କ ପଛେ ପଛେ ଆସୁଥିବାର ଦେଖିଥିବ । ସେ ରଘୁବର ପ୍ରସାଦଙ୍କୁ କହିଲା । ରଘୁବର ପ୍ରସାଦ ପଛକୁ ବୁଲି ଚାହିଁଲେ । ରଘୁବର ପ୍ରସାଦଙ୍କୁ ଠିଆ ହୋଇପଡ଼ିବାର ଦେଖି ସୋନସୀ ସଜା ସଜି ହୋଇଥିବା ଅବସ୍ଥାରେ ପାଣି ଗିଲାସକୁ ଧରି ଆଗେଇଗଲା । ସଡ଼କରେ କାହାରି ଦେଖାନାହିଁ । ଏପଟେ ଓ ସେପଟେ ଦୁଇ ତିନିଟି ବିଜୁଳି ଖୁଣ୍ଟ ତଳେ ଛାତ୍ରମାନେ ପଢୁଥିବାର ଦେଖାଗଲେ । ରଘୁବର ପ୍ରସାଦ ପୂରାପୂରି ପାଣି ପିଇଲେ । ତେବେ ମଧ୍ୟ ଗିଲାସର ତଳପଟେ କେଇ ବୁନ୍ଦା ପାଣି ବଳିଥିଲା । ସେଇ ପାଣିତକ ସୋନସୀ ଉପରଆଡୁ ମୁହଁରେ ପକାଇଦେଲା । ରଘୁବର ପ୍ରସାଦଙ୍କର ଅଇଣ୍ଠା ଯେତେ ପାଣି ଥାଏ ସୋନସୀ ଏହି ଭାବେ ପିଇନେଇଥାଏ । ରାତିର ନୀରବତା ମଧ୍ୟରେ ପୂରା ସହରଟା ଯାଙ୍କର ଘର ପରି ଲାଗୁଥାଏ । ସୋନସୀ ପାଣି ପିଉଥିବା ବେଳେ ରଘୁବର ପ୍ରସାଦ କଡ଼ା ଦୁଇଟିକୁ ଦେଖିଲେ ଓ ସୋନସୀକୁ ମଧ୍ୟ ଦେଖିଲେ ।

''କଡ଼ା କିଏ ଦେଇଛି ?''

''ବୁଢ଼ୀ ମାଆ ।'' ସେ ଖୁସି ହୋଇ କହିଲା ।

''ତୁମେ ଗାଧୋଇଛ କି ?''

''ନାଇଁ ଟିକେ ମୁହଁ ହାତ ଧୋଇଛି । ଘରକୁ କେତେବେଳେ ଆସିବ ? '' ସୋନସୀ ଆସ୍ତେ କରି ପଚାରିଲା ।

''ତୁମେ ଯାଅ, ମୁଁ ଆସୁଛି ।''

''ଡେରି କରିବନି ତ ?''

''ନା ।''

''ଭୋକ ହେଉନାହିଁ ?''

''ନା ।''

''ମୋତେ ଭୋକ ହେଲାଣି ।''

''ତମେ ଖାଇନିଅ ।''

ସୋନସୀ ଫେରିଗଲା । ସୋନସୀ ଯିବା ପରେ ରଘୁବର ପ୍ରସାଦଙ୍କର ଘରକୁ ଫେରିବାକୁ ଇଚ୍ଛା ହେଉଥିଲା । ବିଜୁଳି ଖମ୍ବ ତଳେ ପଢୁଥିବା ପିଲାମାନଙ୍କୁ ସେ କହିଲେ, ''ଯା ପରେ କାଲି ପଢ଼ିବା ।'' ଜୋର୍‌ରେ ଚାଲି ଫେରିବା ବାଟରେ ଘର ଆଗର ଖମ୍ବ ତଳେ ପଢୁଥିବା ପିଲାମାନଙ୍କୁ ସେ କହିଲେ, ''ଆଜି ପାଇଁ ଛୁଟି ହେଲା ।''

ଦରଜା ଆଉଜା ହୋଇଥିଲା । ଘରର ଆଲୁଅ ଜଳୁଥାଏ । ସାଇକେଲଟା ସାଙ୍ଗରେ ସେ ଧକ୍କା ଖାଉ ଖାଉ ରକ୍ଷା ହୋଇଗଲା । ସୋନସୀ ଘରେ ନଥିଲା । ସେ ଦରଜା କିଲିଲେ ଓ ଝରକା ବାଟେ ଡେଇଁ ଗଲେ ।

ଚାନ୍ଦ ଉଇଁ ନାହିଁ । ମଝି ଏକପଦୀ ରାସ୍ତା ଉପରେ ଝରକା ବାଟେ ଘରର ଆଲୁଅ ପଡ଼ିଛି । ସୋନସୀ ଏହି ଏକପଦୀ ବାଟରେ ଯାଇଥିବ । ସେହି ବାଟରେ ସେ ଜୋର୍ ଜୋର୍ ଚାଲିଗଲେ । ଆଗରେ ବୁଢ଼ୀ ମାଆର ଡିବିରିର ଆଲୁଅ ସେହି ଘନ ଅନ୍ଧାରରେ ଦୂରଯାକେ ଯାଇଛି । ଡିବିରି ଆଲୁଅ କ୍ଷୀଣ ହୋଇ ଯେଉଁଠି ଶେଷ ହୋଇଯାଇଛି ସେ ଜାଗା ପର୍ଯ୍ୟନ୍ତ ରଘୁବର ପ୍ରସାଦ ଗଲେ । ତାହା ପରେ ଏକବାର ଅନ୍ଧାର । ସୋନସୀ କୁଆଡ଼େ ଗଲା ? ରଘୁବର ପ୍ରସାଦ ଅନ୍ଧାରରେ ଆଗେଇ ପାରୁନାହାନ୍ତି । କୁଆଡ଼େ ଯାଇଥିବ ବୋଲି ସେ ଭାବୁଥାନ୍ତି । ସାମନାରେ କିଛି ଦୂରରେ ପବନ ହେବାରୁ ଗଛର ଝରଝର ଶବ୍ଦ ଶୁଣାଯାଉଛି । ଏ କଡ଼ର ଗଛ ଶାନ୍ତ ଅଛନ୍ତି । ଏ ପଟେ ପବନ ଚାଲୁନାହିଁ । ସେ କଡ଼େ ଝରଝର ଶବ୍ଦ ପୁଣି ଜୋରରେ ଶୁଣାଗଲା । ରଘୁବର ପ୍ରସାଦ ସେଇ ଆଡ଼କୁ ଆଗେଇଗଲେ । ଠାଏ ଘନ ଗଛବୃକ୍ଷର ଥାନ ଥିଲା । ସେଠି ଗଛ ପବନରେ ଦୋହଲୁଥାଏ । ରଘୁବର ପ୍ରସାଦ ସେଇଠି ଠିଆ ହୋଇଗଲେ । ରଘୁବର ପ୍ରସାଦ ଠିଆ ହେବା ମାତ୍ରକେ ଯେପରି ପବନ ଶାନ୍ତ ହୋଇଗଲା । ଗଛ ବି ଶାନ୍ତ ହୋଇଗଲା । ସେତିକିବେଳେ ବଡ଼ ଆକାରରେ ଚାନ୍ଦ ଉଇଁ ଆସିଲା । ବହୁତ ବଡ଼ ଚାନ୍ଦ ଥିଲା । ଗୋଟିଏ ବଡ଼, ମଜବୁତ, କଳା, ଚିକ୍କଣ ପଥର ଉପରେ ଶୋଇଥିବା ସୋନସୀ ଚାନ୍ଦ ଉଠିବା ପରେ ପରେ ଦିଶିଗଲା । ହଳଦିଆ ଶାଢ଼ିର ରୂପା ପରି ପ୍ଲାଷ୍ଟିକ୍ ଜରି ଚାନ୍ଦ ଆଲୁଅର ଧଡ଼ି ଲଗା ଶାଢ଼ି ପରି ଦିଶୁଛି । ରୂପାର ପାଇଝରୀ ଚାନ୍ଦ ଆଲୁଅରେ ତିଆରି ପାଇଝରୀ ଥିଲା । ରୂପାର କାନବାଲା ଚାନ୍ଦ ଆଲୁଅରେ ତିଆରି କାନରେ ଲାଗିଛି । ଆଉ କାନରେ ଛୋଟିଆ କାନଫୁଲ । ଯାହା ମାଆ ଦେଇଥିଲା, ସେ ଥିଲା ସୁନେଲି ଆଲୋକର ବିନ୍ଦୁର କାନଫୁଲ । ହାତରେ ଯେଉଁ ସୁନାର କଡ଼ା ଦିଓଟି ଥିଲା ବେଶ୍ ଗାଢ଼ ସୁନେଲି ଆଲୁଅରେ ତିଆରି ପରି ଲାଗୁଛି । ଏହା ଛଡ଼ା ବି ସୋନସୀର ଦେହ କେଉଁଠି କେଉଁଠି ଏତେ ବେଶୀ ରହି ରହି ଆଲୋକିତ ହେଉଥିଲା ଯେ ସେ ବି ଚାନ୍ଦ ଆଲୁଅର ଗହଣାରେ ସଜ୍ଜିତ ହେଲା ପରି ଲାଗୁଥିଲା । ରଘୁବର ପ୍ରସାଦ ଦେଖିଲେ ଯେ ଚାରିଟି ଜୁଳୁଜୁଳିଆ ପୋକ ସୋନସୀର ବ୍ଲାଉଜ ଭିତରେ ଫାନ୍ଦରେ ପଡ଼ି ବାହାରିବାକୁ ଚେଷ୍ଟା କରୁଛନ୍ତି । ବ୍ଲାଉଜ ହଳଦିଆ ଛିଟର । ତହିଁରେ ଛୋଟ ଛୋଟ ଫୁଲ ରହିଛି । ରଘୁବର ପ୍ରସାଦ ସୋନସୀର କିଛି ନିକଟକୁ ଆସିବାରୁ ସେ ରଘୁବର ପ୍ରସାଦଙ୍କୁ ଆଖି ମେଲି ଚାହିଁଲା । ସେ ଆଖି ମେଲି ଗହୀର ନିଦରେ ଜାଗ୍ରତ ଥିଲା ।

ରଘୁବର ପ୍ରସାଦ ସୋନସୀ ପାଖକୁ ଏପରି ଭାବେ ଆସିଲେ ସତେକି ସ୍ୱପ୍ନ ଭିତରୁ ବାହାରି ଆସିଲେ । ସ୍ୱପ୍ନର ଭିତର ଓ ବାହାର ମଧ୍ୟରେ ପ୍ରଭେଦ ନାହିଁ । ସୋନସୀ ରଘୁବର ପ୍ରସାଦଙ୍କୁ ଜାଣି ପାରିଥିଲା । ରଘୁବର ପ୍ରସାଦ ଛିଟ ଜାମାକୁ ଖୋଲି ଛିଟର ଫୁଲଗୁଡ଼ିକୁ ଚାରି ଆଡ଼କୁ ବିଛେଇ ଦେଇଥିଲେ । ଚାରିଟି ଜୁଳୁଜୁଳିଆ ସୋନସୀର ଅନାବୃତ୍ତ ସ୍ତନରେ ଚକ୍‌ଚକ୍ ଚକ୍‌ଚକ୍ ହୋଇ ସ୍ଥିର

ରହିଥିଲେ । ରଘୁବର ପ୍ରସାଦ ସେଗୁଡ଼ିକୁ ଗୋଟାଇ ଉଡ଼ାଇ ଦେଉଥିଲେ। ଜୁଲୁଜୁଲିଆ ଏପଟ ସେପଟରେ ଥିବା ଜୁଲୁଜୁଲିଆ ଭର୍ତ୍ତି ଗଛକୁ ଚାଲି ଯାଇଥିଲେ । ରଘୁବର ପ୍ରସାଦ ସୋନସୀର କଡ଼ା ଦୁଇଟି ଦେଖିଲେ । ସେ ଡାହାଣ ହାତରେ ସୋନସୀର ବାଁ ହାତକୁ ଧରିଲେ । ସୋନସୀ ହାତ ଛଡ଼ାଇବାକୁ ଚେଷ୍ଟା କଲା । ଏହା ଫଳରେ କଡ଼ା କଳା ଚିକ୍କଣ ପଥର ଉପରେ ଖଡ଼ ଖଡ଼ କରି ଘୋଷାରି ହୋଇଗଲା ।

ସକାଳର କିରଣ ସୋନସୀକୁ ଛୁଇଁଲା ମାତ୍ରକେ ସୋନସୀ ଗଭୀର ନିଦ ପରେ ବି ଚେଇଁଗଲା । ସକାଳର କିରଣ ବେଶ୍ ଦୋହଲାଇ ଦେଇ ସୋନସୀକୁ ଛୁଇଁଥିଲା । ଉଠିକରି ସେ ଦେଖିଲା ଯେ କଳା ଚିକ୍କଣ ପଥର ଉପରେ ଠାଏ ଠାଏ ରୂପା ଓ ସୁନାର ଆଡ଼ବାଗିଆ, ଡେଢ଼ା ବଙ୍କା ଗାରସବୁ ଟଣା ହୋଇଛି । ସୋନସୀ ରଘୁବର ପ୍ରସାଦଙ୍କୁ ଉଠାଇଲା । ରଘୁବର ପ୍ରସାଦ ଉଠିଲା ପରେ ସୋନସୀ କହିଲା, ''ଦେଖ ।'' ରଘୁବର ପ୍ରସାଦ ପୂରା କଳା ପଥର ଉପରେ ରୂପେଲି ଓ ସୁନେଲି ଗାରମାନ ଦେଖିଲେ । ଗୋଡ଼ର ପାଇଝରୀର କିଛି ଦାଗ ଅର୍ଦ୍ଧଚନ୍ଦ୍ରାକାର ଥିଲା । ଗୋଟିଏ ଅର୍ଦ୍ଧଚନ୍ଦ୍ରାକାର ପରେ ଆଉ ଗୋଟିଏ ଅର୍ଦ୍ଧଚନ୍ଦ୍ରାକାର । ଅର୍ଦ୍ଧ ଚନ୍ଦ୍ରାକାର ଉପରେ ପାଇଝରୀର ଡେଢ଼ା, ଛୋଟ ଛୋଟ ଗାରମାନ ଥିଲା । ହାତର କଡ଼ାର ଦାଗ ବି ଦୁଇକଡ଼େ ଅର୍ଦ୍ଧଚନ୍ଦ୍ରାକାର ଓ ଏଣେ ତେଣେ ବିଛାଡ଼ି ହୋଇ ଅଙ୍କିତ ଥିଲା । କଳା ଟାଙ୍ଗର ପଥରଟି କଷଟୀ ପଥରର ଟାଙ୍ଗରା ପଥର ଥିଲା ।

ବସି ବସି, ନଇଁପଡ଼ି ରଘୁବର ପ୍ରସାଦ ଚିହ୍ନଗୁଡ଼ିକୁ ଚିହ୍ନୁଥାନ୍ତି । ''ଏଇଟା ପାଇଝରୀର ଦାଗ ।'' ସୋନସୀ ବି ଆଣ୍ଠେଇ ବସି ପଡ଼ିଲା । ପାଇଝରୀ ଦାଗକୁ ଆଙ୍ଗୁଠିରେ ଘଷି କରି ଦେଖିଲା । ଦାଗ ଲିଭିଲା ନାହିଁ । ''କାନ ଫୁଲର ଦାଗ ହୋଇନଥିବ ।'' ରଘୁବର ପ୍ରସାଦ ସୋନସୀ ଆଡ଼େ ଅଳସ ମୁରୁକି ହସି ଚାହିଁଲେ ।

''କେମିତି ହୋଇ ନଥିବ ?'' କାନକୁ ଛୁଇଁ ସୋନସୀ କହିଲା । ପଥରର ଉପର ଆଡ଼େ ଦୁହେଁଯାକ କାନଫୁଲର ଦାଗକୁ ଖୋଜିଲେ । ''ଇଯେ ହେଲା କାନ ଫୁଲର ଦାଗ ।'' ସୋନସୀ ଆଙ୍ଗୁଠି ଦେଇ କହିଲା । ବହୁତ ଛୋଟ ଛୋଟ ଦାଗ ହୋଇଥିଲା । ରଘୁବର ପ୍ରସାଦ ସୋନସୀର କାନ ଆଡ଼େ ଚାହିଁଲେ ।

''ତୁମ କାନ ଲାଲ୍ ହୋଇଯାଇଛି ।''

''କେଜାଣି ।'' ସେ କହିଲା । ଠାଏ ଅଲଗା ଜାଗାରେ ଏକା ଏକା ରୂପାର ଦାଗ ଥିଲା । ''ଇଏ କାହାର ଦାଗ ?'' ସୋନସୀ ପଚାରିଲା ।

''ଇଏ ବି ପାଇଝରୀର ଦାଗ ।''

''ଆଛା ।'' ଆସ୍ତେ କରି ସେ କହିଲା ଯେମିତି ତା'ର ମନେନାହିଁ ।

ସେତିକିବେଳେ ସେ ଦେଖିଲେ ସେ ସାମନାରେ ଗୋଟିଏ ପଥର ଉପରେ ଦୁଇ କପ୍ ଚାହା ଥୁଆ ହୋଇଛି । ଚାହା ଗରମ ଅଛି । ଅଳ୍ପ ସମୟ ଭିତରେ ବୁଢ଼ୀ ମାଆ ରଖିଯାଇଥିବ । ଚାହାରୁ ବାମ୍ପ ବାହାରୁଛି । ସୋନସୀ ପୋଲକା ପିନ୍ଧିନେଲା । ଚାହା ପିଇସାରି କପ୍ ଧରି ଦୁହେଁ ଦଉଡ଼ିଲେ ।

ବୁଢ଼ୀ ମାଆର ଘର ଆଗରେ ଗୋଟିଏ ପଥର ଉପରେ କପ୍‌କୁ ଥୋଇ ଦୁହେଁ ପୁଣି ଦଉଡ଼ିଲେ । ବୁଢ଼ୀ ମାଆର ଦେଖା ସେମାନେ ପାଇଲେ ନାହିଁ । ବୁଢ଼ୀ ମାଆ ଘନ ଗଛବୃକ୍ଷ ତଳେ, ପଥର ଆଢୁଆଳରେ କେଉଁଠି ବସି ବସି ପହଁରା କରୁଥିବ ।

ଟିକିଏ ପରେ ବୁଢ଼ୀ ମାଆ ଆସିଲା । ସୂର୍ଯ୍ୟ କିରଣରେ ଗାରଯାକ ବିଜୁଳି ଝଲକ ପରି ଚକ ଚକ ଦିଶୁଥିଲେ । ବୁଢ଼ୀ ମାଆ ସେହି ପଥରର ଚାଙ୍ଗର ଗୋଟିଏ କଣରେ ବସି ପଡ଼ିଲା । ସେ ବିଶ୍ରାମ ନେଉଥିଲା । ସେ ପହଁରା କାମ କରି ଥକି ଯାଇଛି । କିନ୍ତୁ ଖୁସି ଅଛି । ଗହୀର ଗାର ଭର୍ତ୍ତି ତା'ର ମୁହଁରେ ପ୍ରସନ୍ନତା ଦିଶୁଥିଲା । ସେ ପିଲାମାନଙ୍କର ଜୀବନର ଚିହ୍ନମାନଙ୍କୁ ଛୁଉଁଥିଲା । ସେତିକିବେଳେ ଉଡ଼ନ୍ତା ଚଢ଼େଇ ଗୋଟିଏ ହଗି ଦେଇଗଲା ଯେ ଗୁହ ସେ ଚାଙ୍ଗ ଉପରେ ପଡ଼ିଲା । ବୁଢ଼ୀ ମାଆ ରାଗିକରି ଉଡ଼ନ୍ତା ଚଢ଼େଇମାନଙ୍କୁ ଚାହିଁଲା । ଯେତେ ଚଢ଼େଇ ବୁଢ଼ୀ ମାଆକୁ ଦେଖାଯାଇଥିଲେ ସମସ୍ତଙ୍କୁ ଜଣା ପଡ଼ିଯାଇଥିଲା ଯେ ଭୁଲ ହୋଇଯାଇଛି । ଆଉ ବୁଢ଼ୀ ମାଆ ରାଗିଛି । ସେହି ପଥର ଚାଙ୍ଗ ପାଖରେ ଗୋଟିଏ ପଥର ଗାଢ଼ ଭିତରେ ସଫା ପାଣି ରହିଥିଲା । ବୁଢ଼ୀ ମାଆ ସେଇଠାରୁ ପାଣି ବୋହି ଆଣି ଚଢ଼େଇ ଗୁହକୁ ସଫା କଲା । ଚଢ଼େଇମାନେ ଆଉ କେବେହେଲେ ସେହି ପଥର ଚାଙ୍ଗର ଉପରେ ହଗି ନାହାନ୍ତି ।

ସୋନସୀ ଘର ଆଡ଼କୁ ଫେରୁ ଫେରୁ ହଠାତ୍ କିଛି ମନେ ପଡ଼ିଗଲା ପରି ଅଟକି ଯାଇ କହିଲା ଯେମିତି ପରେ ଭୁଲି ନଯାଏ ।

''ମୁଁ ଯେତେବେଳେ ବି ଆଖି ଖୋଲୁଥିଲି ସେତେବେଳେ ଆକାଶରେ କେବେ ବିଜୁଳିର ରୂପାର ଗାର କେତେକ ସୁନାର ଗାର ଦିଶୁଥିଲା ।''

''ମୁଁ ଖାଲି ବିଜୁଳିର ଘଡ଼ ଘଡ଼ ଶବ୍ଦ ଶୁଣିଛି ।'' ରଘୁବର ପ୍ରସାଦ କହିଲେ ।

''ମୁଁ କିଛି ଶବ୍ଦ ଶୁଣିନି । ଆଖି ମେଲିଲେ ଖାଲି ଝଲକ ଦେଖାଯାଇଛି ।''

''ମୋତେ ବିଜୁଳି ଦିଶିନାହିଁ । କିନ୍ତୁ ବିଜୁଳି ଘଡ଼ଘଡ଼ କରୁଥିଲା ।''

ପରଦିନ ରଘୁବର ପ୍ରସାଦ ସାଇକେଲରେ ଯିବା ଲାଗି ଖାଇ ପିଇ ସହଳ ପ୍ରସ୍ତୁତ ହୋଇଯାଇଥିଲେ । କିନ୍ତୁ ସାଧୁ ରଘୁବର ପ୍ରସାଦଙ୍କୁ ନେବା ପାଇଁ ରଘୁବର ପ୍ରସାଦ କାଳେ ବାହାରିଯିବେ ଭାବି ସହଳ ଆସି ଯାଇଥିଲା । ସେ ଯେତେବେଳେ ସାଇକେଲ ବାହାର କରୁଥିଲେ ଦେଖିଲେ ହାତୀ ଠିଆ ହୋଇଛି । ସାଧୁ ଗଛମୂଳେ ବସିଛି । ବୋଧହୁଏ ବହୁତ ଆଗରୁ ବସିଛି । ଶବ୍ଦ ଶୁଣି ସେ ଠିଆ ହୋଇଗଲା । ଗାମୁଛାକୁ ଝାଡ଼ି ଦେଇ ସେ ପୁଣି କାନ୍ଧରେ ଥୋଇଲା ଯେମିତି ସେ ବାହାରିବାକୁ ତିଆର ।

ରଘୁବର ପ୍ରସାଦ ସାଧୁ ପାଖକୁ ଗଲେ । ସୋନସୀ ବି ଛାଡ଼ିବାକୁ ଚାଲି ଆସିଛି । ରଘୁବର ପ୍ରସାଦ ଟିକେ ଦ୍ୱିଧାରେ ସାଧୁକୁ କହିଲେ, ''ମତେ ତ ସାଇକେଲ ଛାଡ଼ିବାକୁ ଯିବାକୁ ପଡ଼ିବ । ତେଣୁ ସାଇକେଲ ଚଢ଼ି ବାହାରି ଯାଉଛି ।''

''ସାଇକେଲ ହାତୀ ଉପରେ ନେଇ ଛାଡ଼ି ଆସିବା ।'' ସାଧୁ କହିଲା ।

ହାତୀ ଉପରେ ସାଇକେଲ ରଖି ବସିବା ଉଚିତ ନା ନାହିଁ, ରଘୁବର ପ୍ରସାଦ ଭାବିଲେ ।

''ମୁଁ ସାଇକେଲ ଚଲେଇ ସାଇକେଲ ଛାଡ଼ି ଦେବି । ସେଇଟା ସହଜ ହେବ ।''

''ଚାଲନ୍ତୁ ଏକାଠି ଯିବା । ମୋତେ ସେ ପଟକୁ ଯିବାକୁ ହିଁ ପଡ଼ିବ ।''

''ସାଇକେଲକୁ ପିଠିରେ ଲଦିଲେ ହାତୀର କଷ୍ଟ ହୋଇପାରେ ।''

''ହାତୀକୁ କିଛି କଷ୍ଟ ହେବନାହିଁ ।''

''ହଉ, ମୁଁ ଯାଉଛି । ସାଇକେଲ ଛାଡ଼ିବାର ବନ୍ଦୋବସ୍ତ ପରେ ହବ । ମୁଁ ସାଇକେଲକୁ ଘରେ ରଖିଦେଇ ଆସୁଛି ।'' କିଛି ଭାବି କରି ରଘୁବର ପ୍ରସାଦ କହିଲେ । ସାଇକେଲକୁ ସେ ଘରେ ରଖିବାକୁ ଗଲାବେଳେ ପଛେ ପଛେ ସୋନସୀ ବି ଗଲା ।

''ହାତୀରେ ବସି ଚାଲିଯିବ । ସାଇକେଲଟା ଯେ କାହାର ସେ କଥା ବି ଜଣା ପଡୁନାହିଁ । ଆଗ ହାତୀ ହେଲା, ଏବେ ପୁଣି ସାଇକେଲ ବି ହୋଇଗଲା ।'' ରଘୁବର ପ୍ରସାଦ ସୋନସୀକୁ କହୁଥିଲା । ସେ ପଦାକୁ ବାହାରିଲା ବେଳେ ସୋନସୀ କହିଲା, ''ଜୋତା ଖୋଲିଦିଅ ।'' ରଘୁବର ପ୍ରସାଦ ହାତରେ ଜୋତା ଧରି ହାତୀ ପିଠିରେ ବସିପଡ଼ିଲେ ।

''ଖାଇ ନେଇଛନ୍ତି ?'' ସାଧୁ ରଘୁବର ପ୍ରସାଦଙ୍କୁ ପଚାରିଲା ।

''ହଁ ।''

ଏଇଲେ ତ ସମୟ ଅଛି, ସେଇଥିପାଇଁ ପଚାରିଲା ।''ଆପଣ କାଳେ ବାହାରିଯିବେ ସେଥିପାଇଁ ବହୁତ ଜଲଦି ଆସିଯାଇଥିଲି ।''

''ମୁଁ ପହରିଦିନ ଚାଲିଯିବି ।'' ବାଟରେ ସାଧୁ କହିଲା ।

''ପହରିଦିନ ଯିବ ?''

ପହରିଦିନ ପରେ ଯେତେବେଳେ ହଉ, ଯିବି । ରଘୁବର ପ୍ରସାଦ ପଚାରିବାକୁ ଯାଉଥିଲେ ଯେ ହାତୀରେ ବସି ଯିବ କି, କିନ୍ତୁ ପଚାରିଲେ ନାହିଁ ।

''ମୋ ପାଖରେ ଗୋଟିଏ ଶୁଆ ଅଛି । ଯାଉଛି ବୋଲି ତାକୁ ପଡ଼ିଶା ଘରେ ଦେଇ ଦେଇଛି । ସେମାନେ ଶୁଆର ଭଲ ଯତ୍ନ ନେବେ । ଫେରିଲେ ପିଞ୍ଜରା ଫେରାଇ ଆଣିବି ।

''ହଁ, ଶୁଆ ପାଳିବାକୁ ବେଶୀ ଖର୍ଚ୍ଚ ନାହିଁ । ତାକୁ ତ ସକାଳ ସନ୍ଧ୍ୟାରେ ଗଣ୍ଡାଏ ଭାତ ଦରକାର । କେତେବେଳେ କଞ୍ଚାଲଙ୍କା, ପୁଣି କେବେ କେବେ ଚଣା । ଶୁଆ ବେଶୀ ଜାଗା ବି ନିଏନା । ଟିକିଏ ବୋଲି ଜାଗା ତାର ଦରକାର । ଶୁଆଠାରୁ କିଛି ବିପଦ ଆପଦ ନାହିଁ । ସବୁ ଶୁଆ କାମୁଡ଼ନ୍ତି ନାହିଁ । ପିଞ୍ଜରାକୁ ଖୋଲି ଦେଲେ ବାହାରେ ବୁଲିବ ପୁଣି ଥକିଗଲେ ପିଞ୍ଜରାକୁ ଫେରିଆସିବ । ପିଞ୍ଜରାରେ ଥିଲେ ବିଲେଇ ଠାରୁ ରକ୍ଷା ପାଇଥାଏ ।''

''ବେଶୀ ଦିନ ପାଇଁ ଅନ୍ୟ ଗାଁକୁ ଯିବାକୁ ପଡ଼ିଲେ ଲୋକେ ତାଙ୍କର ପୋଷା କୁକୁରକୁ କାହାରି ହେପାଜତରେ ଦେଇ ଦେଇଥାନ୍ତି ।''

''ପୋଷା କୁକୁର ଖୁବ୍ ଶୀଘ୍ର ଗୋଳେଇ ତୋଳେଇ ହୋଇ ମିଶିଯାଏ । ଯାହା ଘରେ ରହିବ, ସେ ଘରର ଦେଖାଚାହାଁ କରିବ । ଚୋର ଆସିଲେ ଭୁକିବ । କୁକୁର ଥିଲେ ଗୋଟାଏ ସାହାଯ୍ୟ ହୋଇଯାଏ । ବାସି ଭାତରେ ତା'ର ପେଟ ପୂରିଯାଏ । ଘର କୋଣରେ ପଡ଼ିଥାଏ । ଘରେ ଜାଗା ନଥିଲେ ପଦାରେ ପଡ଼ିଥାଏ ।'' ରଘୁବର ପ୍ରସାଦ ବଡ଼ ଉଦାର ଭାବରେ କହିଲେ ।

''ମଣିଷ ଜୀବଜନ୍ତୁଙ୍କ ଯତ୍ନ ଭଲ କରି ନେଇପାରେ । ଘରର ସାମଗ୍ରୀ ପରି କୁକୁର, ଶୁଆ ହେରିକାଙ୍କୁ ତାଲା ଦେଇ ରଖି ହେବନାହିଁ । ଗାଇ ଥିଲେ ଗାଇକୁ ବି ପାଳିବାକୁ ଦେଇଯିବା ଦରକାର ହେବ । ଯାତ୍ରାରେ ଗୋଟେ ଶୁଆ ଦେବା କଷ୍ଟ ତେବେ ଗାଇ କେମିତି ଦିଆଯିବ । ଯେଉଁଠି କିଛିଦିନ ପରେ ଫେରିବାର ଅଛି । ପୋଷା ଜୀବ ଉପରେ ମାୟା ପଡ଼ିଯାଏ । ଗାଇ ତ ବଡ଼ ପଶୁ, ତେଣୁ ତାକୁ ରଖିବାକୁ ବେଶୀ ଜାଗା ଦରକାର ।''

''ହଁ ସେକଥା ଠିକ୍, ଗାଇକୁ ପୁଣ୍ୟ କାମ ଭଳି ସେବା କରିବା ସକାଶେ ରଖି ନିଅନ୍ତୁ । ଗାଇ ଯେବେ ଦୁଧିଆଳୀ ହୋଇଥାଏ, ବେଶ୍ କଥା ।'' ରଘୁବର ପ୍ରସାଦ କହିଲେ ।

''ପୁଣ୍ୟ ତ ଯେକୌଣସି ଜୀବର ସେବାରେ ମିଳିପାରେ ।'' ସାଧୁ କହିଲା ।

''ଗାଇ ସାଙ୍ଗରେ ବାଛୁରୀ ଥିଲେ ତାକୁ ବି ଦେବାକୁ ପଡ଼େ ।'' ସାଧୁ ପୁଣି କହିଲା ।

''ହଁ, ଏମିତି ତ କେଉଁଠି ବି ହେବନି ଯେ ଜଣକୁ ଗାଇ ଦେଇ ଦେଲ, ଆଉ କାହାରିକି ତା ବାଛୁରୀ । ମା ପୁଅଙ୍କୁ ଏକାଠି ରଖିବାକୁ ପଡ଼ିବ ।''

''ନା, ବାଛୁରୀ ବଡ଼ ହୋଇଗଲେ, ଦିଆଯାଇପାରେ ।''

ରଘୁବର ପ୍ରସାଦ ବିଭାଗାଧ୍ୟକ୍ଷଙ୍କୁ ପଚାରିଲେ, ''ସାର୍, ସାଇକେଲ କାହାର ଜଣା ପଡ଼ିଲାନି ?''

''କେଜାଣି କିଏ ଛାଡ଼ିକରି ଚାଲିଯାଇଛି । ପାଖ ଆଖର ଗାଁର ହୋଇଥିବ । କିଏ ପିଲା ଚଲେଇ କରି ଆଣିଥିବ ତା'ପରେ ଭୁଲିଯାଇଥିବ ।''

''ଚୋରା ସାଇକେଲ ତ ଛାଡ଼ିଯାଇନାହିଁ ଆଉ ?''

''କେଜାଣି । ହାତୀରେ ଆସିଲ । ସାଇକେଲରେ କାହିଁକି ଆସିଲ ନାହିଁ ?

''ସାଇକେଲ ଧରି ବାହାରିଥିଲି ଏତିକିବେଳେ ସାଧୁ ପହଞ୍ଚିଗଲା । ମୁଁ ତାକୁ କହିଲି ଯେ ସାଇକେଲ ଛାଡ଼ିବାକୁ ଯିବାକୁ ହେବ । ସେ କହୁଥିଲା ସାଇକେଲକୁ ବି ହାତୀ ପିଠିରେ ରଖିନିଅ ।''

''ହାତୀ ବଡ଼ ଆଉ ବଳୁଆ ବୋଲି ତାହା ଉପରେ ଯାହା ଇଚ୍ଛା ତାହା ରଖି ଦେଇପାରିବ ଏକଥାର କ'ଣ ମାନେ ଅଛି ? ଯଦି ଶଗଡ଼ରେ ବସି ଯାଉଥାନ୍ତ କ'ଣ ସେ କହିଥାନ୍ତା ଶଗଡ଼ଟା ଲଦିଦିଅ ?''

''ନାଇଁ ସାର୍ ! ମୁଁ ସାଇକେଲ୍ ଲଦିଲି ନାହିଁ । ମତେ ଲାଗିଲା ସାଇକେଲ୍ ଲଦିଦେଲେ ହାତୀକୁ କେଉଁଠି ଆଘାତ ଲାଗିପାରେ । ସାଇକେଲ୍‌କୁ ମୁଁ ଘରେ ଛାଡ଼ି ଆସିଛି । ମୁଁ ସାଇକେଲ୍‌କୁ ଅଫିସରେ ଜମା କରିଦେବି ।''

''ଆଜି କରି ଦେଇଥିଲେ ଭଲ ହୋଇଥାନ୍ତା । ଯେବେ ପ୍ରିନ୍ସିପାଲ ମନେକରନ୍ତି ଯେ ପୁଲିସରେ ରିପୋର୍ଟ ଲେଖାଇ ଦେବା ଦରକାର, ତେବେ ଲେଖାଇ ଥାନାରେ ଜମା କରାଇଦେବେ ।''

''ମୁଁ କାଲି ନେଇ ଆସିବି ।'' ବିଭାଗାଧ୍ୟକ୍ଷ ଶାନ୍ତ ଥିଲେ । ସେ କ'ଣ ଲେଖୁଥିଲେ ।

''ସାର୍ ଗୋଟେ କଥା ପଚାରିବି ?''

''ପଚାର ।''

ଯେବେ ଆପଣଙ୍କର ଚିହ୍ନା ଜଣା କିଏ ଲୋକ କେଉଁଠାକୁ ଯାଉଛି ଆଉ ତାହା ପାଖେ ଗୋଟିଏ ଛୋଟ ପୋଷା ଜନ୍ତୁ ଥାଏ, ଆପଣ କ'ଣ ତାକୁ କିଛି ଦିନ ଲାଗି ନିଜ ପାଖରେ ରଖିନେବେ, ଯଦି ସେ ସେମିତି କହିବ ।''

''କେମିତି ପୋଷା ଜନ୍ତୁ ?''

''ନେଉଳ ।'' ରଘୁବର ପ୍ରସାଦ କହିଲେ ।

''ନା ମୁଁ ରଖିବି ନାହିଁ ।''

''ନେଉଳ ସାପରୁ ବଞ୍ଚାଇପାରେ ।''

''ଆରେ ! ନା, ମୁଁ ରଖିବି ନାହିଁ ।''

''ଗାଈ ?''

''ଗାଈ ରଖିନେବି ।'' କ'ଣ ଭାବି ସେ କହିଲେ ।

''ବଳଦ ?''

''ବଳଦ ରଖିବି ନାହିଁ । ଗାଈ ରଖିଲେ ଗୋଟିଏ ଗଉଡ଼ ରଖିବାକୁ ପଡ଼ିବ । ଗଉଡ଼ ବଡ଼ ହଇରାଣ କରନ୍ତି । କୋଉଦିନ ଆସିବେ, କୋଉଦିନ ଆସିବେ ନାହିଁ । ନିଜେ ସବୁ କାମ କରିବାକୁ ପଡ଼ିବ । ପଛ ବାଡ଼ିପଟେ ଜାଗା ବି ଅଛି । ଗାଈ ପୋଷିବା କଥା ତ ମୁଁ ନିଜେ ଭାବୁଛି । ଭଲ ଗାଈ ମିଳିଲେ ଖର୍ଚ୍ଚ କରିନେବି । କେଉଁଠି ଅଛି କି ?''

''ନାଇଁ ସାର୍ ! ମୁଁ ତ ଏଇମିତି ପଚାରୁଥିଲି ।''

''ରାତିରେ ରଘୁବର ପ୍ରସାଦ ସୋନସୀକୁ କହୁଥିଲେ, ''ସାଧୁ ପହରିଦିନ ପରେ ଯେତବେଳେ ହଉ ଚାଲିଯିବ ।''

''ହାତୀ ଛାଡ଼ିକରି ଯିବ ନାହିଁ ତ ?''

ସେକଥା ତ ମୁଁ ପଚାରି ନାହିଁ, ତା ପାଖରେ ଗୋଟିଏ ଶୁଆ ଥିଲା ଯେ ଶୁଆକୁ ପାଳିବାକୁ ପଡ଼ିଶା ଘରେ ଦେଇ ଦେଇଛି ।

''ହାତୀକୁ ବି ପଡ଼ିଶା ଘରେ ଦେଇଥାନ୍ତା ।''

''ଦେବାର ଥିଲେ ଆଗରୁ ଦେଇ ନଥାନ୍ତା କି ?''

''ତେବେ ତ ସେ ହାତୀରେ ହିଁ ଯିବ ।''

''ଯେବେ ସେ ନିଜ ଆଡୁ କହିବ ଯେ ହାତୀକୁ ରଖିନିଅ ତେବେ ମନା କରିଦେବା ।''

''ମନା କଲେ ଭଲ ହେବ ।''

''ଏଠି ଆମର ପଡ଼ିଶା ଘର ବି ହାତୀ ରଖିବାକୁ ଦେବେ ନାହିଁ ।''

''ହଁ ପିଲାମାନଙ୍କୁ ଦଳି ମକଚି ଦେଇପାରେ ହାତୀ ତ ଜାଣି ଶୁଣିକରି କାହାରିକି ଦଳାମକଚା କରିବ ନାହିଁ ।''

''ଯେମିତି କଲେଜରେ କିଏ ସେ ସାଇକେଲ ଛାଡ଼ିଦେଇ ଗଲା, ସେଇମିତି ଘର ଦାଣ୍ଡରେ ସାଧୁ ହାତୀକୁ ଛାଡ଼ି ଚାଲିଯିବ ।''

''ତାହା ହେଲେ ସେ ହାତୀ ବି ଲାୱାରିସ ହୋଇଯିବ । କିନ୍ତୁ ହାତୀ ଯେ ସାଧୁର, ଏକଥା ଜଣାଅଛି । ଦିନେ ଦି ଦିନ ରଖିକରି ଦେଖିବା । ତା'ପରେ ଛାଡ଼ିଦେବା । ଯେତେବେଳେ ଆମେ ବି ହାତୀକୁ ଛାଡ଼ିଦେବା ତେବେ ସେ ଲାୱାରିସ ହୋଇଯିବ ।

''ବାନ୍ଧି ପାରିଲେ ସିନା ଛାଡ଼ି ପାରିବା ।''

''ତାକୁ ଦେଖା ଚାହାଁ କରିବାଟା ଛାଡ଼ିଦେବା ।''

''ଭୋକ ଓପାସରେ ଘର ଦାଣ୍ଡରେ ରହିଥିବ । ଦି ଖଣ୍ଡ ରୁଟି ଦେଇ ପାରିବା । ଗଛର ଡାଳ ଭାଙ୍ଗିକରି ନେଇ ଆସିବା । ଦି ବାଲଟି ପାଣି ଦେଇ ପାରିବା ।''

''ସେ ଯଦି ହାତୀ ରଖିବାକୁ କହିବ, ତମେ କହିବ ଯେ ପଡ଼ିଶାଘରେ ଶୁଆ ଦେଇଛୁ, ତାକୁ ଆଣି ଆମକୁ ଦେ । ହାତୀକୁ ତାକୁ ଦେଇ ଦେ ।

''ତା ପଡ଼ିଶା ଭାବିଚିନ୍ତି ଶୁଆ ମାଗିଥିବ, ସେ ଏଇଲେ ରାଜିହେବ ନାହିଁ ।''

''ହାତୀ ଝରକା ପଛକୁ ଚାଲିଯାନ୍ତା, ସେଠି ଜଙ୍ଗଲ ଭିତରେ ବୁଲନ୍ତା । ସେଠି କଦଳୀ ବଣ ହୋଇଥାନ୍ତା ।'' ଦୁହେଁ ହାତୀରେ ବସି ବୁଲିଥାନ୍ତେ ।

''ସାଇକେଲ ବି ଝରକା ବାଟେ ଯାଇପାରିଲା ନାହିଁ । ହାତୀ କେମିତି ଯିବ ? କିନ୍ତୁ ସେଇଠିକି ଯାଇଥିଲେ ଭଲ ହୋଇଥାନ୍ତା ।''

''ଯାହା ହେବାର ଦେଖାଯିବ । ବର୍ତ୍ତମାନଠାରୁ କାହିଁକି ଏତେ ଚିନ୍ତା ?''

''ହଁ ।'' ଦୁହେଁ ଚୁପ୍ ହୋଇଗଲେ । ଦୁହେଁ ଚୁପ୍ ହୋଇଯିବାରୁ ନୀରବତା ବିରାଜିଲା । ସୋନସୀର ହାତର କଡ଼ା ଖଡ଼ଖଡ଼ ହୋଇ ବାଜୁଥିଲା ।

ପୃଥିବୀଟା ଆକାଶ ପରି ଲାଗୁଥିଲା । ଅନ୍ଧାର ଭିତରେ ସୋନସୀ ରଘୁବର ପ୍ରସାଦଙ୍କ କାନରେ ଫିସ୍ ଫିସ୍ କରି କହିଲା ।

''ଆମେ କ'ଣ ଆପେ ଆପେ ଝରକା ବାହାରକୁ ଯାଉଛେ ? ନା, ଝରକାର ବାହାରଟା ଭିତରକୁ ଆସୁଛି ?

''ପୋଖରୀ ଆଗ ଆସିଲା, ତା'ପରେ ପୋଖରୀର କୂଳ ଆସିଲା ।''

''ଏକପଦୀ ରାସ୍ତାଟା ଆଗ ଆସିଲା, ତା'ପରେ ପୃଥିବୀ ଆସିଲା ।''

''ତାରା ଯାକ ଆଗ ଆସିଲେ, ତା'ପରେ ଆକାଶ ଆସିଲା ।''

''ଗଛର ଝରଝର ଧ୍ୱନି ଆଗ ଆସିଲା । ତା'ପରେ ଗଛ ଆସିଲା ।''

''ତା'ପରେ ଜୋର୍‌ରେ ପବନ ଆସିଲା ।''

''ସୁଗନ୍ଧ ଆସିଲା ।''

''ସୁଗନ୍ଧ ପରେ ଫୁଲ ଫୁଟିଲେ ।''

''ସାଇକେଲ ଝିଡ଼ିକି ବାଟେ ଯାଇପାରି ନ ଥିଲା । ଝରକାର ବାହାରଟା ସାଇକେଲ ଯାକେ ଆସିଗଲା ।''

''କିନ୍ତୁ ମୁଁ କ୍ୟାରିଅର୍‌ରେ ବସିବି ନାହିଁ । ସାମନା ପଟେ ତୁମର ବାହୁ ଦିଟାର ମଝିରେ ବସିବି ।'' ସୋନସୀ କହିଲା ।

ସକାଳ ବେଳରେ ବଖରାଟି ଗାଧୁଆ ପାଧୁଆ କଳାପରି ଲାଗୁଥିଲା । ବଖରାର ସବୁ ଜିନିଷ ଧୁଆଧୋଇ ହେଲା ପରି ଦିଶୁଥିଲା ।

ରଘୁବର ପ୍ରସାଦ ବିଛଣା ଉପରୁ ଏପରି ଚେଇଁ ବସିଲେ ସତେ ଯେମିତି ଗାଧୋଇ ପାଧୋଇ ଉଠିଛନ୍ତି । ସାଇକେଲଟା ଧୁଆ ପୋଛା ହୋଇକରି ଥିଲା । ରଘୁବର ପ୍ରସାଦଙ୍କ ଉଠିବା ଆଗରୁ ସୋନସୀ ଉଠିଯାଉଥିଲା ।

''ତମେ କେତେବେଳେ ଉଠିଲ ?''

''ଏଇ ତ କିଛି ବେଳ ଆଗରୁ ।''

''ଘରଟା ଧୁଆ ଧୋଇ ହେଲା ପରି ଲାଗୁଛି ।''

''ସକାଳୁ ଉଠିଲାବେଳେ ମୋତେ ଲାଗିଲା ପୋଖରୀଟା ଝରକା ବାଟେ ଯାଉଛି ।''

''ମୁଁ ପରେ ଉଠିଲି ଯେ ସେତେବେଳେ ପୋଖରୀର କୂଳ ଯାଉଥିଲା ।''

''ଗଛଯାକ ଚାଲିଗଲେ । ଗଛର ମର୍ମରଧ୍ୱନି ଏବେ ବି ଏଇଠି ରହିଯାଇଛି ।''

''ବାସ୍ନା ତ ଅଛି । କେଉଁ କୋଣରେ ଏଇଲାଗେ ଫୁଟିଛି ।''

''କୋଣରେ ଫୁଲ ଫୁଟିଛି ମୁଁ ଦେଖିଦେଇଛି । ରଘୁବର ପ୍ରସାଦ କହିଲେ, ''ମୋତେ କଲେଜ ଟିକେ ଜଲଦି ପହଞ୍ଚିବାକୁ ହେବ । ସାଇକେଲ୍ ଫେରାଇବାକୁ ପଡ଼ିବ । ତା' ନ ହେଲେ ସାଇକେଲ୍ ହାତୀ ଉପରେ ଲଦିବାକୁ ପଡ଼ିବ । ସାଇକେଲ୍ ଅଫିସରେ ଜମା ଦିଆହେବ । ତୁମେ ଡବାରେ ଭାତ ଦେଇଦବ । ମୁଁ ସେଇଠି ଖାଇବି ।''

''ସଞ୍ଜବେଳେ ଟେମ୍ପୋରେ ଫେରିବ ?''

''ସକାଳୁ ଯାଉଛି, କଲେଜ ଖୋଲିବା ଯାକେ ଏକଡ଼ ସେକଡ଼ ବୁଲୁଥିବି । ବିଭାଗାଧ୍ୟକ୍ଷଙ୍କ ପାଖରୁ ଛୁଟି ମାଗିବି । ମିଳିଗଲେ ଟେମ୍ପୋ ହେଉ କି ହାତୀ ହେଉ ଯାହା ମିଳିବ ତହିଁରେ ଫେରିବି ।'' ରଘୁବର ପ୍ରସାଦ କହିଲେ ।

''ଏ ବଖରା ଭିତରୁ ଗଛର ଝର ଝର ଆବାଜ୍ ଚାଲିଗଲା । ଏଇଲେ ଗଛର ଝରଝର ଆବାଜ ପଦାରୁ ଆସୁଛି ।'' ସୋନସୀ କହିଲା ।

''ଗଛର ଝରଝର ଆବାଜ ଉପରେ ଚଢ଼େଇଙ୍କର କିଚିରି ମିଚିରି ବି ବସିଥିଲା । ଚଢ଼େଇଙ୍କର କିଚିରି ମିଚିରି ବି ତାହା ସଙ୍ଗେ ଚାଲିଗଲା ।'' ରଘୁବର ପ୍ରସାଦ କହିଲେ ।

''ଗଛର ଶବ୍ଦ ଆଗରୁ ବି ଚଢ଼େଇଙ୍କର କିଚିରି ମିଚିରି ଉଡ଼ିଯାଇଥିବ ।'' ସୋନସୀ କହିଲା ।

''ଗଛର ଶବ୍ଦର ଶାଖା ଉପରେ ଚଢ଼େଇଙ୍କର କିଚିରି ମିଚିରି ବସିଥିବ ।''

''ହଠାତ୍ ଉଡ଼ି ଚାଲିଗଲା ।''

''ଚମକି ପଡ଼ି ଚାଲିଗଲା ।''

''ଯେତେବେଳେ ମୁଁ ତମର ଚଦରକୁ ଝାଡ଼ିଦେଇଥିଲି ।''

''ଯେତେବେଳେ ତୁମେ ମୋ ଚାଦରକୁ ଝାଡ଼ିଦେଲ ସେତିକିବେଳେ ଚମକି କରି କିଚିରି ମିଚିରି ଉଡ଼ିଗଲା ?''

''ଆଗେ ଦୁହେଁଯାକ ଗୋଟିଏ ଚାଦର ଘୋଡ଼େଇ ହୋଇଥିଲେ ।''

''କିନ୍ତୁ ଥଣ୍ଡା ତ ନ ଥିଲା ।''

''କିନ୍ତୁ ଝରକାର କବାଟ ଖୋଲା ଥିଲା ।''

''କିନ୍ତୁ ଚାଦରରେ ଚଢ଼େଇଙ୍କର କିଚିରି ମିଚିରି ଥିଲା ।''

''କିନ୍ତୁ କିଛି ଏପରି ବି ହୋଇଥିଲା ।''

ସାଇକେଲ ଫେରାଇବାକୁ ରଘୁବର ପ୍ରସାଦ ଚାଲିଗଲେ । ରାସ୍ତା ଉପରେ ତାଙ୍କର ଦୃଷ୍ଟି ପଡ଼ିଗଲା ଚାରିଟା ତାଳ ଗଛ ଉପରକୁ । ରଘୁବର ପ୍ରସାଦ ସେଠି କଲେଜ ଯିବାକୁ ଅପେକ୍ଷା ନ କରି କଲେଜକୁ ଯାଉଥିଲେ । ହୁଏତ ତାଳଗଛମାନଙ୍କୁ ରଘୁବର ପ୍ରସାଦଙ୍କର କଲେଜ ଯିବାଟା ଅଡୁଆ ଲାଗୁଥିବ । ତାଳଗଛ ଯାକ ରଘୁବର ପ୍ରସାଦଙ୍କୁ ସାଇକେଲ୍‌ରେ ଯାଉଥିବାର ଦେଖି ନ ଥିବେ । ହାତୀରେ ବସି ଯିବାର ନିଶ୍ଚୟ ଦେଖିଥିବ । ହାତୀ ଧୀରେ ଧୀରେ ଯାଉଥିଲା । ସେ ଅଟକି କରି ଅପେକ୍ଷା ନ କରି ଯାଉ ଯାଉ ଅପେକ୍ଷା କରୁଥିଲେ– ଯାହା ଫରକ ହୋଇଥିବ ରଘୁବର ପ୍ରସାଦ ଯେତେ ବେଗରେ ଆଗେଇ ଯାଉଥିଲେ ତାଳ ଗଛଗୁଡ଼ିକ ସେତିକି ବେଗରେ ପଛଆଡ଼େ ରହିଯାଉଥିଲେ । ସତେ ଯେମିତି କ୍ୟାରିଅରରୁ ଜିନିଷ ଯାକ ତଳେ ପଡ଼ିଗଲେ ଓ ଜଣାପଡ଼ିଲା ନାହିଁ ଏବଂ ସେ ଜିନିଷ ପଛକୁ, ଆଉରି ପଛକୁ ରହିଯାଉଥିଲା । ସାଇକେଲରେ ଯାଉଛନ୍ତି ବୋଲି ଏତେ ଉତ୍ସାହ ଥିଲା । ଫେରିବା ବେଳେ ରହିଯାଉଥିବା ଜିନିଷ ପଡ଼ିରହିବ ନାହିଁ, ମିଳିଯାଉଥିବ । ରାସ୍ତା ଏକବାର ଖାଲି ଥିଲା । ତଥାପି ସେ ଘଣ୍ଟି ବଜାଇଲେ । ଲଗାତାର ବଜେଇଲେ ଯାହାର ଯେ ସାମନାକୁ ଆସିବାର ହେଲେ ବି ଯେମିତି ରାସ୍ତାରୁ ହଟିଯିବ । ହୁଏତ ରାସ୍ତାର ଦୁଇ କଡ଼ର ଗଛଯାକେ ଆଗରୁ ରାସ୍ତା ଉପରେ ଥିଲେ ଓ ରଘୁବର ପ୍ରସାଦଙ୍କର ଘଣ୍ଟି ବଜାଉଥିବା ଯୋଗୁ ଦୁଇ କଡ଼କୁ ଘୁଞ୍ଚିଗଲେ ଓ ରାସ୍ତା ଖାଲି ହୋଇଗଲା ।

ରାସ୍ତା ଉପରେ ପଡ଼ିଥିବା ଗୋଟିଏ ପଥର ଉପରେ ସାଇକେଲ୍‌ର ଆଗ.ଚକ ପଡ଼ିଯିବାରୁ ଫଟ୍ କରି ଶବ୍ଦ କରି ଟ୍ୟୁବ୍ ଫାଟିଗଲା । ଟ୍ୟୁବ୍ ଫାଟିବା ଫଳରେ ସେ ଚମକି ପଡ଼ିଲେ । ସାଇକେଲ୍ ମଧ୍ୟ ପାଖର ଗଛରେ ଧକ୍କା ଖାଇବାରୁ ଟିକକେ ରକ୍ଷା ପାଇଗଲା । ଖାଇବାର ଡବାଟି ଝୁଲା ମୁଣିରେ ଥିଲା ଓ ହ୍ୟାଣ୍ଡଲରେ ଟଙ୍ଗା ହୋଇଥିଲା । ତେଣୁ ତଳେ ପଡ଼ିବାରୁ ରକ୍ଷା ହୋଇଗଲା ।

ଟେମ୍ପୋ ବାଲା ଥାନଠାରୁ ସେ ବହୁତ ବେଶୀ ଦୂରକୁ ଆଗେଇ ଯାଇ ନଥିଲେ । ସାଇକେଲ୍‌କୁ ଚାଲିଚାଲି ନେଇ ଫେରିବା ଭିନ୍ନ ତାଙ୍କର ଆଉ କିଛି ଉପାୟ ନଥିଲା । ପମ୍ଚର ମରାମତିବାଲା ସେଠି ନଥିଲା ।

ରଘୁବର ପ୍ରସାଦ ସାଇକେଲ୍‌କୁ ଗଛରେ ଡିରା ଦେଲେ ଓ ପଥରଟାକୁ ରାସ୍ତାଠାରୁ ଦୂରକୁ ଫିଙ୍ଗିଦେଲେ । ତା'ପରେ ସେ ସାଇକେଲ୍ ଧରି ଫେରିଗଲେ । ଏବେ ସୁଦ୍ଧା ହାତୀ ଆସିବାର ସମୟ ହୋଇନାହିଁ । ବେଶ୍ ଭଲ ହେଲା । ସେ ଆଜି ବହୁତ ସହଳ ବାହାରି ଆସିଛନ୍ତି । ପମ୍ଚର୍ ମରାମତିବାଲା ହାତରେ ଆଉ କିଛି କାମ ନଥିଲା । ସେ ରଘୁବର ପ୍ରସାଦଙ୍କୁ ଚିହ୍ନିଥିଲା । ସେ କହିଲା, ସମୟ ଲାଗିବ ସ୍ପୋକ୍ ଢିଲା ଅଛି । ସାଇକେଲ୍‌ର ରିମ୍‌କୁ କିଛିଟା ସିଧା କରିବାକୁ ହେବ । ଚୁମୁଟା ଦେଇ କାଠି ସବୁ ମେଳାଇବାକୁ ହେବ । ଅନ୍ୟ ଲୋକର ସାଇକେଲ୍, ପମ୍ଚର ତାଙ୍କରି ଦ୍ୱାରା ହୋଇଛି । ବାକି ଯାହା ଖରାପ ଥିଲା, ସେସବୁ ଆଗରୁ ଥିବ । ''ଖାଲି ପମ୍ଚର୍‌କୁ ମରାମତି କରିଦିଅ । ଅନ୍ୟ ଲୋକର ସାଇକେଲ୍ । ଫେରାଇବାକୁ ଯାଉଥିଲି ।''

''ସ୍ପୋକ୍‌କୁ ତ ଟାଇଟ୍ କରିବାକୁ ହେବ ନ ହେଲେ ରିମ୍ ଆହୁରି ଟେଢ଼ା ହୋଇଯିବ ।''

''ହଉ ଟାଇଟ୍ କରିଦିଅ ।''

ସାଇକେଲକୁ ଖୋଲୁ ଖୋଲୁ ସେ ପୁଣି କହିଲା ''ସମୟ ଲାଗିବ । ହାତୀ କି ଟେମ୍ପୋରେ ବସି ଚାଲିଯାଆନ୍ତୁ । ପରେ ଆସି ସାଇକେଲ୍ ନେଇଯିବେ ।''

''ସାଇକେଲଟିକି ଆଜି ଫେରାଇବାକୁ ହେବ । ସାଇକେଲ୍ ସାଙ୍ଗରେ ଧରି ଯିବାକୁ ପଡ଼ିବ ।''

''ଘଣ୍ଟେ ଖଣ୍ଡେ ଲାଗିବ ।''

ରଘୁବର ପ୍ରସାଦ ଏହି ଘଣ୍ଟାଏ ଖଣ୍ଡେ ସମୟ ଭିତରେ କେତେଥର ଚାରି ତାଳଗଛକୁ ଦେଖିପାରିବେ । ସେଇ ଗଛମାନଙ୍କୁ କେତେ ଦିନର ଅଦେଖାର ହିସାବ ନେବାର ଥିଲା । ସେହି ଦୃଶ୍ୟ ଭିତରେ ପୁଣି ପୂର୍ବ ଭଳି ହାତୀ ଆସୁଥିବାର ରଘୁବର ପ୍ରସାଦଙ୍କୁ ଦେଖାଗଲା । ହାତୀ ସେଠି ଅଟକିଲା । ସାଧୁ ରଘୁବର ପ୍ରସାଦଙ୍କୁ ଦେଖିନଥିଲା । ସେ ସବୁଦିନ ପରି ଓହ୍ଲାଇଥିଲା । ରଘୁବର ପ୍ରସାଦ ସାଧୁ ଆସୁଥିବାର ଦେଖି ଠିଆ ହୋଇପଡ଼ିଲେ ।

''ଆପଣ ତ ସାଇକେଲ୍ ଚଢ଼ି ଯାଇଥିଲେ ।'' ରଘୁବର ପ୍ରସାଦଙ୍କୁ ସାଧୁ ଆଶ୍ଚର୍ଯ୍ୟ ହୋଇ କହିଲେ ।

''ସାଇକେଲ୍‌ରେ ଆସିଥିଲି କିନ୍ତୁ ସାଇକେଲ୍ ପମ୍ଚର୍ ହୋଇଗଲା । ତାକୁ ମରାମତି କରାଉଛି ।'' ଥକିଲା ସ୍ୱରରେ ରଘୁବର ପ୍ରସାଦ କହିଲା ।

''କେତେ ସମୟ ଲାଗିବ ?''

''ଅଧ ଘଣ୍ଟା ଲାଗିଯିବ ।''

''କଲେଜ ପାଇଁ ଡେରି ହୋଇଯିବ ।'' ସାଧୁ କହିଲା ।

''ହଁ, ଡେରି ତ ନିଶ୍ଚୟ ହୋଇଯିବ । ଆଉ ଜଣକର ସାଇକେଲ ତ, ତାକୁ ଅଫିସରେ ଜମା ଦେବାକୁ ହେବ । ଲାୱାରିସ୍ ସାଇକେଲ୍ ଏଇଟା ।''

''ଯାକୁ ଏଇମିତି ନେଇଯିବା । ସେଠି ଗାଁ ଭିତରେ ମରାମତି ପାଇଁ ଦେଇଦେବା । ମରାମତି ହୋଇଗଲେ ଅଫିସରେ ଜମା କରିଦେବେ ।''

''ସାଇକେଲ୍ ତ ଖୋଲା ହୋଇଗଲାଣି । ଅଧଘଣ୍ଟାର କଥା ।''

''ମୁଁ ରହିଯାଉଛି ।''

''ମୁଁ ସାଇକେଲ୍‌ରେ ବସିବାର ନାହିଁ । ସାଇକେଲ୍‌କୁ ହାତୀରେ ଲଦିକରି ନେବାଟା ଉଚିତ ନୁହେଁ । ଆଉ କାହାର ସାଇକେଲ୍ । ଯଦି ସମ୍ଭାଳି ନ ପାରିବ ତା'ହେଲେ ତ ତଳେ ପଡ଼ି ଭାଙ୍ଗିଯିବ । ହାତୀର ଗୋଡ଼ ତ ପଡ଼ିଗଲେ ଚୁନା ହୋଇଯିବ ।

''ହଉ, ଆପଣ ଆଗରେ ଯାଆନ୍ତୁ ମୁଁ ପଛେ ପଛେ ଯାଉଥିବି ।'' ସାଧୁ କହିଲା ।

ପାନ ଦୋକାନରୁ ଧୂଆଁପତ୍ର ନେଇ ସେ କହିଲା, ''ମୁଁ ଆଜ୍ଞା ସାଙ୍ଗେ ସାଙ୍ଗେ ଫେରୁଛି, ଆପଣ ଟିକେ ହାତୀକୁ ନିଘା ରଖିବେ । ରଘୁବର ପ୍ରସାଦ କିଛି କହିବା ଆଗରୁ ସେ ହଠାତ୍ ବେଗରେ ଦୋକାନମାନଙ୍କ ପଛକୁ ଚାଲିଗଲା । ରଘୁବର ପ୍ରସାଦ ବ୍ୟସ୍ତ ହୋଇଗଲେ । ସେ ତ ହାତୀକୁ ଜିମା କରେଇ ଚାଲିଗଲେ । ହାତୀ ପ୍ରତି କେମିତି ନିଘା ରଖିବାକୁ ହୁଏ; ସେ ହୁଏତ ପରିସ୍ରା କରିବାକୁ ଯାଇଥିବ । ଶୀଘ୍ର ଫେରିଆସିବ । ହାତୀ ଚୁପ୍‌ଚାପ୍ ଠିଆ ହୋଇଥାଏ । ତାର ଶୁଣ୍ଢ ବି ହଲୁ ନଥିଲା । ଏଣେ ତାଳଗଛର ପତ୍ର ବି ହଲୁଥିବାର ଦିଶୁଥାଏ । ପବନ ଚାଲୁଥାଏ । ପାଖ ଆଖରେ ଠିଆ ହୋଇଥିବା ମଣିଷଙ୍କୁ ହାତୀ ଏକୁଟିଆ ଥିବାରୁ ଦେଖାଯାଉନଥିଲା ।

ଟେମ୍ପୋ ଆସିବା ପରେ ବି କାହାରି ଦୃଷ୍ଟି ହାତୀ ଆଡ଼େ ପଡ଼ିନାହିଁ । ଯେବେ ସେ ଶୁଣ୍ଢ ଟେକି ଗଛର ଡାଳ ଭାଙ୍ଗିବ ତେବେ ଏକାଠି ବହୁତ ଲୋକଙ୍କ ଦୃଷ୍ଟିକୁ ଏକାଥରେ ଚାଲିଯିବ । ଏକା ରଘୁବର ପ୍ରସାଦଙ୍କ ଦୃଷ୍ଟିରେ ହାତୀ ରହିଛି । ସାଧୁ କିଛି ନ କହିଲେ ବି ତାଙ୍କ ଦୃଷ୍ଟିରେ ରହିଥାନ୍ତା ।

ସାଇକେଲ୍ ମରାମତ ହୋଇଯାଇଛି । ହାତୀ କ'ଣ ଠିଆ ଠିଆ ଶୋଇ ଯାଇଛି । ହର୍ଣ୍ଣ ବଜାଇ ବଜାଇ ଗୋଟିଏ ଟ୍ରକ୍ ଗଲା। ହାତୀ ପୂର୍ବଭଳି ସେଇମିତି ଠିଆ ହୋଇ ରହିଲା । ସେହି ନିଘା ରଖିବାର ଦାୟିତ୍ୱରୁ ସେ ମୁକ୍ତ ହେବାକୁ ଚାହନ୍ତି । ସାଧୁ ତ କହିଥିଲା ଯେ ସେ ତାଙ୍କ ପଛେ ପଛେ ଆସିବ । ସେ ପମ୍ପଚର ବାଲା ଜିମା ହାତୀକୁ ରଖି ଏଇଲେ ଚାଲି ଯାଇଥିଲେ ଭଲ ହୋଇଥାନ୍ତା । ସାଇକେଲ୍ ମରାମତି ବାବଦ ସାଢ଼େ ଛଅ ଟଙ୍କା ସେ ଦେଲା ।

''ଶୁଣ, ମୋର କଲେଜ ଲାଗି ଡେରି ହୋଇଯାଉଛି । ମୁଁ ଯିବାକୁ ଚାହେଁ । ସାଧୁ ପରେ ଆସିବାକୁ କହିଯାଇଛି । ତୁମେ କ'ଣ ହାତୀକୁ ନିଘା ରଖିବ କି ?''

''ହଁ । ରଖିନେବି ।''

''କିଛି ଅସୁବିଧା ହେବନି ତ ?''

''ନା, ଅସୁବିଧା କ'ଣ ପାଇଁ ହେବ ?''

''ସାଇକେଲ୍ କାମ ହୋଇଗଲା ?'' ସାଧୁ ଆସିଯାଇଥିଲା ।

''ଚାଲନ୍ତୁ, ଆପଣ ଆଗେ ଚାଲନ୍ତୁ।'' ସାଧୁ କହିଲା ।

''ବେଶୀ ଜୋରରେ ଚଲାଇବି ନାହିଁ ।'' ସାଇକେଲରେ ବସୁ ବସୁ ରଘୁବର ପ୍ରସାଦ କହିଲେ ।

ରଘୁବର ପ୍ରସାଦ ଆଗରେ ଯାଉଥାନ୍ତି । ସାଧୁ ଓ ହାତୀ ବେଶ୍ ପ୍ରସନ୍ନ ମନରେ ରଘୁବର ପ୍ରସାଦଙ୍କ ପଛରେ ଯାଉଥାନ୍ତି । ବେଳେବେଳେ ରଘୁବର ପ୍ରସାଦ ପଛକୁ ବୁଲି ଚାହିଁ ନେଉଥାନ୍ତି । ସେତେବେଳେ ସାଧୁ ଠାରିକରି କହୁଥିଲେ ଯେ ସେ ଆସୁଛି । ହାତୀ ସାଇକେଲ୍ ଠାରୁ ବହୁତ ପଛରେ ନଥିଲା । ଥରକର ରଘୁବର ପ୍ରସାଦ ମୁହଁ ବୁଲାଇ ଚାହିଁଲା ବେଳକୁ ହାତୀ ଶୁଣ୍ଢଟେକି ରହିଥିଲା । ଠିକ୍ ସମୟରେ ରଘୁବର ପ୍ରସାଦ କଲେଜରେ ପହଞ୍ଚି ଯାଇଥିଲେ । ସାଧୁ ରଘୁବର ପ୍ରସାଦଙ୍କୁ ପଚାରିଲା, ‘‘ସନ୍ଧ୍ୟାବେଳେ ଦେଖା ହେବ ? ଆଉ ତ ସାଇକେଲ୍ ନ ଥିବ ।’’

‘‘ହଁ ।’’ ଜଣେ ଘନିଷ୍ଠ ବନ୍ଧୁ ଭଳି ପ୍ରସନ୍ନ ହୋଇ ସାଧୁ ଚାଲିଗଲା । ସାଇକେଲକୁ ବାରଣ୍ଡାରେ ଆଉଜାଇ ଦେଇ ସେ ନିଜର ବଖରାକୁ ଗଲେ । ବିଭାଗାଧକ୍ଷ ସେଇଠି ବସିଥିଲେ । ‘‘ସାଇକେଲକୁ ଜମା ଦେବାର ଅଛି ସାର୍ ।’’ ରଘୁବର ପ୍ରସାଦ ଟିକେ ଥକ୍କା ମାରିବା ଭଳି ନିଃଶ୍ୱାସ ନେଉଥିଲେ ।

‘‘ବସିଯାଇ ବିଶ୍ରାମ ନିଅ । ପରେ ଜମା କରିବ । ମୁଁ ତ ପ୍ରିନ୍‌ସିପାଲଙ୍କ ସଙ୍ଗେ କଥାବାର୍ତ୍ତା କରିଦେଇଛି । ତୁମେ ବସ, ଚପରାସୀ ହାତରେ ପଠାଇ ଦେବା । ହାତୀ କ’ଣ ତମ ପଛେ ପଛେ ଆସିଥିଲା ? ’’

‘‘ହଁ ସାର୍ ! ମୁଁ ଆଗରେ ଥିଲି ଓ ହାତୀ ପଛରେ ।’’

‘‘ସନ୍ଧ୍ୟାବେଳେ ହାତୀରେ ଚଢ଼ି ଯିବ ।’’ ଜରୁରୀ କଥା ଭଳି ସେ ପଚାରିଲେ ।

‘‘ହଁ ସାର୍ ।’’ ସାଧାରଣ କଥା ଭଳି ରଘୁବର ପ୍ରସାଦ କହିଲେ ।

‘‘ରଘୁବର ପ୍ରସାଦ ! ତମେ ତୁମ ବାପାଙ୍କ ସାଇକେଲ୍ ନେଇଆସ ।’’

‘‘ଏଥରକ ଗଲେ ନେଇ ଆସିବି ।’’

‘‘ଆଚ୍ଛା, ଏମିତି କର । ଯେତେ ଦିନ ବାପାଙ୍କ ସାଇକେଲ୍ ନ ଆଣୁଛ ଏହି ଲାୱାରିସ୍ ସାଇକଲଟିକି ତୁମ ପାଖରେ ରଖ । ମୁଁ ପ୍ରିନ୍‌ସିପାଲଙ୍କ ସାଙ୍ଗେ କଥାବାର୍ତ୍ତା କରିନେବି । ହୁଏତ ଏହାରି ମଧ୍ୟରେ ସାଇକେଲ୍ ମାଲିକ ଆସିଯିବ । ଥରେ ସାଇକଲ୍‌କୁ ଥାନାରେ ଜମା କରିଦେଲେ ଫେରସ୍ତ ପାଇବା ମୁସ୍କିଲ ହୋଇଯିବ । ସାଇକେଲ୍ ମାଲିକକୁ ସାଇକେଲ୍‌ର ନଷ୍ଟ ଅବସ୍ଥା ଫେରସ୍ତ ମିଳିବ । ଥାନା ସାମନାରେ ଦେଖିନାହଁ କି ? ଶହେ କି ପଚାଶ ସାଇକେଲ ସବୁ ଗୋଟାଏ ଲମ୍ବ ଚେନ୍ ଦେଇ ବନ୍ଧା ହୋଇ ଜଙ୍କ୍ ଖାଇଯାଉଥାନ୍ତି । ଖୋଲା ଜାଗାରେ ପଡ଼ିଥାନ୍ତି । ସେଠି ସାଇକେଲ୍‌ର ଅବସ୍ଥା ଦେଖିକରି କେହି ସାଇକେଲ୍‌ବାଲା ଆସନ୍ତି ନାହିଁ । ସାଇକେଲ୍‌ର ପରିଚୟଟା ହିଁ ବଦଳି ଯାଏ । ଜଙ୍କ୍ ଲାଗିଗଲେ ସାଇକେଲର ନମ୍ବର ବି ଦେଖିବା କଷ୍ଟ ହୋଇଯାଏ । ଜଙ୍କ୍‌କୁ ସଫା କରିବାକୁ ଗଲେ ସାଇକେଲ୍‌ର ନମ୍ବର ବି ଘୋରି ହୋଇ ଯାଉଥିବ ।’’

‘‘ହଁ, ଥାନା ସାମ୍‌ନାରେ ସାଇକେଲ୍ ଦେକାନ ଅଛି । ସାଇକେଲ୍‌ର ପାର୍ଟ ସବୁ ସେଇଠି ବଦଳା ଯାଉଥିବ ।

‘‘ଅଫିସରେ ଜମା ଦେଇ ଦେବା । ପଡ଼ିଥାଉ ସେଇଠି ।’’

‘‘ସାଇକେଲ୍‌ର ନିୟମଟା ହେଲା, ଚାଲୁଥିଲେ ଠିକ୍ ରହିବ, ପଡ଼ି ରହିଲେ ତ ମରାମତି ପାଇଁ ବି ଯୋଗ୍ୟ ରହିବ ନାହିଁ । ପ୍ରିନ୍‌ସିପାଲ୍‌ଙ୍କର ଚପରାସୀ ଆସିଲା ।

"କ'ଣ ହେଲା ?" ବିଭାଗାଧ୍ୟକ୍ଷ ପଚାରିଲେ ।

"ପ୍ରିନ୍‌ସିପାଲ୍ ଆପଣଙ୍କୁ ଡାକୁଛନ୍ତି । ରଘୁବର ପ୍ରସାଦଙ୍କୁ ଦେଖାଇ ସେ କହିଲା ।

"ଯାଅ ରଘୁବର ପ୍ରସାଦ ।"

ରଘୁବର ପ୍ରସାଦ ପ୍ରିନ୍‌ସିପାଲ୍‌ଙ୍କ ପାଖକୁ ଗଲେ । ପ୍ରିନ୍‌ସିପାଲ୍ ଅଫିସର ବାବୁଙ୍କ ସାଙ୍ଗରେ ବସିଥିଲେ । "ଆସ" ପ୍ରିନ୍‌ସିପାଲ୍ କହିଲେ ।

ପ୍ରିନ୍‌ସିପାଲ୍ ବି ବିଭାଗାଧ୍ୟକ୍ଷଙ୍କ ବୟସର ହେବେ । ମଥାର ବାଳ ଧଳା ଓ ସାମନାପଟୁ ଝଡ଼ିବା ଆରମ୍ଭ ହୋଇଥିଲା । କିନ୍ତୁ ତାଙ୍କର ଭ୍ରୂଲତା ଓ କାନର ବାଳ ବଡ଼ ବଡ଼ ହୋଇଥିଲା । ତାଙ୍କ ମଥାରେ ଚନ୍ଦା ଅଂଶ ଥିଲା ଓ କାନର ଉପର ଅଂଶର ବାଳ ତେଲ ଯୋଗୁଁ ଚକ୍ ଚକ୍ କରୁଥାଏ । ତେଲ ସେ ଖୁବ୍ ଲଗାନ୍ତି । କୁରୁତା ଓ ଧୋତି ପିନ୍ଧୁଥିଲେ । ରଘୁବର ପ୍ରସାଦ ବସି ପଡ଼ିଲେ । ରେଜିଷ୍ଟର ବନ୍ଦ କରି ପ୍ରିନ୍‌ସିପାଲ୍ ଉଠିଲେ । "ମୁଁ ଏଇ ଲାଗେ ଆସୁଛି ରଘୁବର ପ୍ରସାଦ ।" ବାବୁ ଜଣକ ବି ଉଠିଲା । କାରଣ ପାଇପ୍‌ରୁ ପାଣି ପିଇବାକୁ ଯାଉଛନ୍ତି ।

"ପାଣି ପିଇବାକୁ ଯାଉଛନ୍ତି ?" ବାବୁ ଜଣକ ପଚାରିଲେ ।

"ହଁ ।" ପ୍ରିନ୍‌ସିପାଲ କହିଲେ । ହ୍ୟାଣ୍ଡପମ୍ପ ଚଲାଇବାକୁ ଦରକାର ପଡ଼ିବ ବୋଲି ବାବୁ ତାଙ୍କ ସାଥିରେ ଚାଲିଲା । ପ୍ରିନ୍‌ସିପାଲ୍ ହାଣ୍ଡପମ୍ପର ବାଟଯାକ କଲେଜର ପ୍ରଶାସନିକ କଥାବାର୍ତ୍ତା କରୁଥାନ୍ତି । ବାରଣ୍ଡା ପାଖରେ ପଡ଼ିଥିବା ହାତୀର ଶୁଣ୍ଢ ଆଡ଼େ ବି ସେ ସଙ୍କେତ ଦେଇଥିଲେ ।

ବାବୁ ହ୍ୟାଣ୍ଡପମ୍ପ ଚଲାଉଥିଲା । ପ୍ରିନ୍‌ସିପାଲ୍ କୁରୁତାର ହାତକୁ ବାହୁଯାକେ ଟେକିଦେଲେ । ଧୋତିକୁ ଗୋଟେଇ ଭଲ କରି ହାତ, ମୁହଁ ଓ ଗୋଡ଼କୁ ଧୋଇଲେ ଓ ତା'ପରେ ପାଣି ପିଇଲେ । ପାଣି ପିଇସାରି ହାତ ଝାଡ଼ିଲେ ଯେ ତା'ର ଛିଟା ବାବୁ ଉପରେ ବି ପଡ଼ିଲା । ପ୍ରିନ୍‌ସିପାଲ୍ ଭାବିଥିବେ ପରିସ୍ରା ବି କରିନେବେ । ସେ ପରିସ୍ରା କରିବାକୁ ଆଗେଇଗଲେ । ପରିସ୍ରା କରିସାରି ପାଣି ପିଇଲେ ଭଲ ହୋଇଥାନ୍ତା । କିନ୍ତୁ ଶୋଷ ବେଶୀ ଲାଗୁଥିବ । ବାବୁ ବୁଝିଗଲା ଯେ ସେ ପରିସ୍ରା କରିବାକୁ ଯାଉଛନ୍ତି, ତେଣୁ ସେ ସେଇଠି ରହିଗଲା । ସେହି ଖାଲି ସମୟ ଭିତରେ ବାବୁର ବି ପାଣି ପିଇବାକୁ ମନ ହେଲା । ସେ ହ୍ୟାଣ୍ଡପମ୍ପ ଚଳାଇଲା । ହ୍ୟାଣ୍ଡପମ୍ପ ଛାଡ଼ିଦେଇ ଶୀଘ୍ର ଆଞ୍ଜୁଳିରେ ପାଣି ଜମାଇଲା । ଦେଢ଼ ଆଞ୍ଜୁଳା ପାଣି ପିଇଛି କି ନାହିଁ ପାଣି ବାହାରିବା ବନ୍ଦ ହୋଇଗଲା । ଦିଥର ସେ ଆଉ ହ୍ୟାଣ୍ଡପମ୍ପ ଚଳାଇଲା ନାହିଁ । ପ୍ରିନ୍‌ସିପାଲ ବାହାରି ଆସିଲେ । ସେ ଅଫିସ ଆଡ଼କୁ ଯାଉଥିଲା । ତାଙ୍କ ସାଙ୍ଗ ଧରିବା ପାଇଁ ବାବୁ ଜୋର୍‌ରେ ଚାଲି ତାଙ୍କ ପାଖରେ ପହଞ୍ଚିଯାଇଥିଲା ।

ପ୍ରିନ୍‌ସିପାଲ୍ ପଚାରିଲେ, "ରଘୁବର ପ୍ରସାଦ ସାଇକେଲ୍ କାହାର ଜଣାପଡ଼ିଲା ?"

"ଏଯାକେ କିଛି ଜଣା ପଡ଼ିନାହିଁ, ସାର୍ ।"

"ଆପଣ ସେଇ ସାଇକେଲ ନେଇ ଯା ଆସ କରୁଛନ୍ତି ?"

"ହଁ ସାର୍, ଆଜି ଅଫିସରେ ଜମା କରିଦେବି । ବିଭାଗାଧ୍ୟକ୍ଷ ମୋତେ ସାଇକେଲ୍ ନେଇଯିବାକୁ କହିଥିଲେ ।"

''ମୁଁ ତାଙ୍କୁ ସେକଥା କହୁଥିଲି । ଆପଣ ହାତୀରେ ଯିବା ଆସିବା କରୁଛନ୍ତି ସେଇଥିପାଇଁ । ରଘୁବର ପ୍ରସାଦ ! ଆପଣଙ୍କର ହାତୀ ସକାଶେ ଡ଼ର ମାଡୁଛି ଯେ ପିଲାଙ୍କ ସାଙ୍ଗରେ କିଛି ଦୁର୍ଘଟଣା ହୋଇଯିବ କାଳେ । ପିଲାମାନେ ଖେଳୁଥାନ୍ତି, ତାଙ୍କ ଭିତର ଦେଇ ହାତୀ ଚାଲିଯାଏ ।''

''ନାହିଁ ସାର୍, ସେକଥା ନୁହେଁ । ଯଦି ଯାଏ ତେବେ ପିଲାଗୁଡ଼ାକ ହାତୀ ପାଖକୁ ଚାଲିଆସନ୍ତି ।''

''ଏକା କଥା ।''

''ଏଣିକି ମୁଁ ସଡ଼କ ପାଖରେ ଓହ୍ଲାଇ ଯିବି ।''

''ବିଭାଗାଧ୍ୟକ୍ଷଙ୍କୁ ଆପଣଙ୍କର ହାତୀରେ ଯାଆସ କରିବାଟା ଭଲ ଲାଗେ ନାହିଁ । ତାଙ୍କର ମନେହୁଏ ଆପଣ କେଉଁଦିନ ଝଂଝଟରେ ପଡ଼ିଯିବେ କାଳେ । ସାଧୁ କେମିତି ମଣିଷ ?''

''ଭଲ ମଣିଷ ସାର୍ ।''

ଆଛା ଗୋଟେ କାମ କରନ୍ତୁ । ବର୍ତ୍ତମାନ ସାଇକେଲ୍‌କୁ ଅଫିସରେ ଜମା କରନ୍ତୁ ନାହିଁ । ଆଉ କିଛି ଦିନ ଚଳାନ୍ତୁ। ହୁଏତ ସାଇକଲ୍‌ର ମାଲିକର ସନ୍ଧାନ ମିଳିଯିବ ।

''ନାଇଁ ସାର୍ । ଏଇଟା ଦାୟିତ୍ୱପୂର୍ଣ୍ଣ କାମ । ସାଇକେଲ୍ ଭାଙ୍ଗିଭୁଙ୍ଗି ଗଲେ ମୋତେ ତାର ଖର୍ଚ୍ଚ ତୁଲାଇବାକୁ ପଡ଼ିବ ।''

''ସାଇକେଲ୍ ଅଫିସରେ ପଡ଼ି ରହିଲେ ତାର ଦୁରୁପଯୋଗ ହେବ । ଆପଣଙ୍କ ପାଖରେ ଥିଲେ ଭଲ ରହିବ ।''

''ସାଇକେଲ୍‌ରେ ତାଲା ଦେଇ ରଖି ଦେବା ।''

''ରଖି ରଖି ଖରାପ ହୋଇଯିବ ।''

''ସାଇକେଲ୍‌ବାଲା ମରାମତି କରାଇଦେବ ।''

''ସାଇକେଲବାଲାର ଆସିବାକୁ କେତେଦିନ ଚାହିଁ ବସିବା ?''

''ଆଉ କିଛି ଦିନ ଦେଖାଯାଉ ସାର୍ ।''

''ସାଇକେଲକୁ ଥାନାରେ ଜମାଦେବା ଉଚିତ ହେବ । ବେଶୀଦିନ ଏଠି ରଖିବା ଠିକ୍ ନୁହେଁ । ହୁଏତ ଏଇ ସାଇକେଲ୍ ଚୋରି ହୋଇଥିବାର ରିପୋର୍ଟ ଥାନାରେ ଦିଆ ହୋଇଛି । ଚୋର ଏଇଠି ଛାଡ଼ିଯାଇଛି ।''

''ଠିକ୍ କହୁଛନ୍ତି ସାର୍ ।''

ରଘୁବର ପ୍ରସାଦ ସାଇକେଲକୁ ଅଫିସରେ ଜମା କରାଇଦେଲେ । ସନ୍ଧ୍ୟାବେଳକୁ ସାଧୁ ଆସିଲାରୁ ହାତୀରେ ଚଢୁ ଚଢୁ ରଘୁବର ପ୍ରସାଦ କହିଲେ, ପ୍ରିନ୍‌ସିପାଲ୍ କଲେଜ ପାଖକୁ ହାତୀକୁ ଆଣିବାକୁ ମନା କରୁଥିଲେ । ତାଙ୍କର କହିବା ଅନୁସାରେ ପିଲାଙ୍କ ସାଙ୍ଗରେ ଦୁର୍ଘଟଣା ଘଟିପାରେ ।

''ସେମିତି ତ ସାଇକେଲ୍ ସାଙ୍ଗରେ ବି ଘଟିପାରେ ।''

''ସାଇକେଲ୍ ସାଙ୍ଗରେ ଧକ୍କା ଲାଗିଲେ ଜୀବନ ଯିବାର ନାହିଁ । ହାତୀ ସାଙ୍ଗରେ ହେଲେ ଜୀବନ ଚାଲିଯାଇପାରେ ।''

''ଗାଈ ବଳଦ, ବଳଦଗାଡ଼ି କଲେଜ ପାଖରେ ଥାନ୍ତି । ସେମାନଙ୍କ ପାଇଁ ବି ଜୀବନ ଯାଇପାରେ ।''

''ସାଧୁ ପାଇଁ ହାତୀର ସମ୍ମାନରେ ଆଞ୍ଚ ଆସିଥାଇପାରେ ।''

''କିନ୍ତୁ ହାତୀ ଯେ ବହୁତ ବଡ଼ । ତାକୁ ଦେଖିଲେ ଡର ଲାଗେ ।''

''ଆପଣଙ୍କୁ ବି ଡର ଲାଗେ ?''

''ହଁ ଲାଗେ ଯେ ତେବେ ଆଗଠାରୁ କମ୍ ।''

''କିଛି ଦିନ ଭିତରେ ଏ ଡରଟା ବି ଚାଲିଯିବ'' ସାଧୁ କହିଲା ।

ରଘୁବର ପ୍ରସାଦ ହାତୀ ଉପରେ ବସି ବଗଙ୍କର ଦଳ ଉଡ଼ିବାର ଦୃଶ୍ୟ ଦେଖୁଥାନ୍ତି । ଉଡୁଥିବା ବଗଙ୍କ ଦଳଠାରୁ ସଡ଼କ ଉପରେ ଚାଲୁଥିବା ପଥଚାରୀଙ୍କର ଦୁର୍ଘଟଣାରେ ଡରିବାର କିଛି ନାହିଁ । ସେ ପକ୍ଷୀ ଯେବେ ପାଖ ଆଖରେ ବସିଯାନ୍ତି ସେଥିରେ ବି ଡର ମାଡ଼ନ୍ତା ନାହିଁ । ଭଲ ଲାଗିଥାନ୍ତା, ମନ ହୋଇଥାନ୍ତା ଆହୁରି ପାଖରେ ଆସି ବସିଯାନ୍ତେ ହେଲେ । ରଘୁବର ପ୍ରସାଦଙ୍କର ମନ ହେଲା ସେ ସାଧୁଙ୍କୁ କହିବେ ଯେ ବଗମାନେ ଉଡ଼ିଗଲେ, ହେଲେ ଦୁର୍ଘଟଣା କିଛି ହୋଇନାହିଁ । ସାଧୁଙ୍କୁ ହୁଏତ ଏହି ଯୁକ୍ତି ବିଷୟ ଜଣା ଅଛି ଯେ ଉଡ଼ିଯାଉଥିବା ଉଡାଜାହାଜ ପଡ଼ିଗଲେ ଗୋଟାଏ ବଡ଼ ଦୁର୍ଘଟଣା ହୋଇଯାଏ । କିନ୍ତୁ ପକ୍ଷୀଠାରୁ ଉଡ଼ାଜାହାଜ ବହୁତ ବଡ଼ । ଗୋଟାଏ ବଡ଼ ଉଡ଼ାଜାହାଜ ଛୋଟିଆ ପକ୍ଷୀ ସାଥିରେ ଧକ୍କାଖାଇ ଦୁର୍ଘଟଣାଗ୍ରସ୍ତ ହୋଇଯାଏ । ଏ ଯୁକ୍ତିଟା ସାଧୁଙ୍କୁ ଜଣା ନଥିବ । ଏକଥା ସତ୍ୟ ଯେ ରଘୁବର ପ୍ରସାଦଙ୍କର ହାତୀକୁ ଡର କମ୍ ହୋଇଯାଉଛି ।

**ରାତି ପାହିବାର ଅନ୍ଧାର ବୋଧହୁଏ ହାତୀର ଆକାରରେ ଚାଲିଯାଉଥିଲା । ଯେତେଟା ସକାଳ ହେଉଥିବ, ହାତୀର ଆକାରର ଅନ୍ଧାର, ହାତୀ ଆକାରର ସକାଳ ହୋଇକରି ବାକି ସକାଳ ସମୟରେ ମିଳିମିଶି ଏକାକାର ହୋଇଯିବ ।**

ଏକ୍‌ଦମ୍ ବଡ଼ିଭୋରୁ ଯେତେବେଳେ ରଘୁବର ପ୍ରସାଦଙ୍କର ନିଦ ଭାଙ୍ଗିଲା ସେତେବେଳକୁ ସୋନସୀ ବିଛଣା ଉପରେ ଶୋଇଥିଲା । ରଘୁବର ପ୍ରସାଦ ଉଠିଲେ । ବଖରା ଭିତରେ ବେଶୀ ଅନ୍ଧାର ଥିଲା । ଝରକା ବାହାରେ ସକାଳର କମ୍ ଅନ୍ଧାର ହୋଇଥିଲା । ରଘୁବର ପ୍ରସାଦ ଦରଜା ଖୋଲି ପଦାକୁ ଆସିଲେ । ସହରର ବତୀ ଲିଭିଯାଇଛି । ରାତିଠାରୁ ଜଳିନାହିଁ । ରଘୁବର ପ୍ରସାଦ ଦରଜାର ଏରୁଣ୍ଡି ଉପରେ ବସିଗଲେ । ତାଙ୍କର ମନେ ହେଲା ଯେ ନିମ୍ବ ଗଛ ମୂଳେ ଅନ୍ଧାରଟା ଟିକେ ବେଶୀ ଅଛି । ନିମ୍ବ ଗଛ ମୂଳର ସେହି ବେଶୀ ଅନ୍ଧାରଟା ହାତୀର ଅନ୍ଧାରର ଆକାର ପରି ଥିଲା । ରାତି ପାହିବାବେଳର ଚାଲି ଯାଉଥିବା ଏହି ଅନ୍ଧାରଟା ବୋଧହୁଏ ହାତୀର ଆକାରରେ ପଳାଇଯାଇଥିଲା । ଯେତିକି ଯେତିକି ସକାଳ ହେଉଥିବ ହାତୀ ଆକାରର ଅନ୍ଧାର ହାତୀ ଆକାରର ସକାଳ ହୋଇକରି ବାକି ସକାଳ ସାଙ୍ଗରେ ମିଳିମିଶି ଏକାକାର ହୋଇଯିବ । କିନ୍ତୁ ରଘୁବର ପ୍ରସାଦ ଦେଖିଲେ ଯେ ସକାଳ ଯେତେ ହେଉଥାଏ ଓ ଆଲୁଅ ବିଛେଇ ହେଉଥିଲା, ହାତୀର ଆକାରର ସ୍ପଷ୍ଟ

ଅନ୍ଧାର ହୋଇଯାଉଥିଲା । ସକାଳ ସେହି ଅନ୍ଧାରକୁ ଭୁଲିଯାଇଥିଲା । ସେଇ ଆଗତ ସକାଳକୁ କ'ଣ ରଘୁବର ପ୍ରସାଦ ପାଟି କରି ଡାକି କହିଦେବେ ଯେ ତମେ ହାତୀ ଆକାରର ଅନ୍ଧାରକୁ ଭୁଲିଯାଇଛ ।'' କିନ୍ତୁ ରଘୁବର ପ୍ରସାଦ ଏମିତି ଭାବୁ ଭାବୁ ସକାଳ ହୋଇଯାଏ । ପୂରା ସକାଳ ଭିତରେ ସେ ସତସତିକା ହାତୀ ଥିଲା । ହାତୀ ଉପରେ ସାଧୁ ନଥିଲା । ସେତେବେଳକୁ ସୋନସୀ ବି ଉଠି ଯାଇଛି । ସେ ବି ହାତୀକୁ ଦେଖିଲା ।

''ସାଧୁ ହାତୀକୁ ଛାଡ଼ି ଚାଲିଯାଇଛି ।''

''ଦିନେ ନା ଦିନେ ଏଇମିତି ହେବାର ଥିଲା ।''

''ପାଖ ପଡ଼ିଶାଏ ଜାଣିଲେ ରାଗ କରିବେ ।''

''ଏବେ ବି ସାଧୁ ଫେରିବାର ଆଶା ଅଛି ।''

''ମୋର ନାହିଁ ।''

''ଶୁଆର ପିଞ୍ଜରାକୁ ସେ ପଡ଼ିଶାଘରେ ଦେଇଦେଲା । ସେ ପିଞ୍ଜରାକୁ ଆମେ ରଖିଥାନ୍ତେ। ଏବେ ହାତୀକୁ କେମିତି ସମ୍ଭାଳିବା ?''

''ହାତୀର ଦେଖାଶୁଣା ମୁଁ କରିନେବି ତୁମେ ଚିନ୍ତା କରନା ।'' ସୋନସୀ କହିଲା ।

''ହଁ, ଦୁହେଁ ମିଶି ତା'ର ଦେଖାଶୁଣା କରିବା । ଠିକଣା ବେଳେ ବନ ବିଭାଗକୁ ଦେଇଦେବା । ବନ ବିଭାଗ ଯାକେ ହାତୀକୁ କେମିତି ନେଇଯିବା ?''

''ବନ ବିଭାଗ ବାଲାଙ୍କୁ ଏଠାକୁ ଡାକି ଆଣିବା । ସେମାନେ ହାତୀକୁ ନେଇ ଯାଇ ପାରିବେ ।''

''ହଉ, ତୁମେ ଆଗ ମୁହଁ ହାତ ଧୋଇ ପ୍ରସ୍ତୁତ ହୋଇଯାଅ ।''

''ଆଗ ତୁମେ ପ୍ରସ୍ତୁତ ହୁଅ, ମୁଁ ଏଠି ବସି ଦେଖୁଥାଏ ।''

''କିଛି ହେବ ନାହିଁ । ଦେଖିବାର କ'ଣ ଅଛି ? ଚାଲ ଉଠିପଡ଼ ।'' ସୋନସୀ ରଘୁବର ପ୍ରସାଦଙ୍କ ହାତକୁ ଧରି ଉଠାଇଲା । ଦରଜାକୁ ଖୋଲା ରଖାଗଲା । ଯେମିତି ଯିବା ଆସିବା ଭିତରେ ହାତୀକୁ ଦେଖାଯାଇ ପାରିବ ।

ରଘୁବର ପ୍ରସାଦ ବାହାରକୁ ଆସି ହାତ ମୁହଁ ଧୋଇଲେ । ସେ ଭାବିବାକୁ ଲାଗିଲେ - ଆଜି ସକାଳେ ହାତୀକୁ ନେଇ କ'ଣ କରାଯାଇପାରେ ।

''ଚାହା ହୋଇଗଲାଣି ।'' ସୋନସୀ କହିଲା । ରଘୁବର ପ୍ରସାଦ ଭିତରକୁ ଗଲେ । ଚାହା ନେଇ ସେ ପୁଣି ଏରୁଣ୍ଡି ଉପରେ ବସିଲେ ।

''ଏରୁଣ୍ଡିରେ ବସନା । ମା ମନା କରନ୍ତି ।''

''ସନ୍ଧ୍ୟା ପହର ବେଳକୁ ମନା କରନ୍ତି ଯେ ସେଇଟା 'କୁବେରି ବେରା' ବୋଲି । ଏଇଲେ ତ ''ସୁବେର (ସକାଳ) ସମୟ ।

''ହଁ ।''

''ସାଧୁ ଆମକୁ ହାତୀକୁ ପାଳିବାର ବିଷୟ ଶିଖାଇ ଦେଇଥିଲେ ଭଲ ହୋଇଥାନ୍ତା ।'' ଚାହା ପିଉ ପିଉ ରଘୁବର ପ୍ରସାଦ କହିଲେ । ନିଜର ଚାହା ଧରି ସୋନସୀ ସେଇଠି ଆସି ବସିପଡ଼ିଲା ।

''ତମେ ଚାରି ବାଲ୍‌ଟି ପାଣି ଆଣି ଆଗ ହାତୀକୁ ଗାଧୋଇଦିଅ ।'' ସୋନସୀ କହିଲା, ''ତା ପରେ କଟୁରୀ ନେଇ ଗଛଡାଳ କାଟିଦେବ ।''

''ଆଜି କଲେଜ୍‌ରୁ ଛୁଟି ନେଇନେବି । ସାଧୁ କେଉଠି ଥାଏ ତା ବି ତ ଜଣାନାହିଁ । ହୁଏତ ବେମାର ପଡ଼ିଛି ।''

''ବେମାର ହୋଇଥିଲେ ଘରେ ହାତୀକୁ ରଖିଥାନ୍ତା । ଏଠି କାହିଁକି ଛାଡ଼ି ଯାଇଥାନ୍ତା ।''

ସେ ନିଜର ଯତ୍ନ ନେଇପାରିବ, ହେଲେ ହାତୀର ଯତ୍ନ ନେବା ସମ୍ଭବ ହେବନାହିଁ । ଚାହା ପିଇସାରି ମୁଁ ଦେଖେଁ ଗଛଡାଳରେ ଲୁଚି ବିଡ଼ି ପିଇବାର ପିଲାଟା ବସିଛି ନା ନାଇଁ । ତାକୁ ପଚାରିବା ଯେ ସେ ସାଧୁକୁ ହାତୀ ଆଣୁଥିବାର ଦେଖିଛି ନା ନାହିଁ । ସାଧୁ କୁଆଡ଼େ ଯାଇଛି ।''

''ଏତେ ସକାଳୁ ସେ ପିଲାଟା ଆସି ନଥିବ ।''

''ସେ ପିଲାକୁ କହିବ ଯେ ସେ ଏଇଠି ନିମ୍ବ ଗଛ ଉପରେ ବସିରହୁ । ଏଠି ହାତୀର ଦେଖାଶୁଣାଟା ବି ହୋଇଯିବ ।''

''ମୁଁ ତାକୁ ପଚାରିବି ହାତୀକୁ ତ ସେ ସେଠୁ ବି ଦେଖିପାରିବ ।''

ରଘୁବର ପ୍ରସାଦ ହାତୀର ନଜର ଏଡ଼ାଇ ବାହାରିଯିବାକୁ କହୁଥିଲେ । ପଛେ ପଛେ ହାତୀ ଆସିଯାଇ ପାରିଥାନ୍ତା । ସେତିକିବେଳେ ସୋନସୀ କହିଲା, 'ଶୁଣ' ! ସେ ଅଟକି ଗଲେ ।

''କଟୁରୀ ବି ସାଥିରେ ଧରିଯାଅ । ତାକୁ କହିବ ସେ ଗଛର ଡାଳକୁ କଟୁରୀରେ କାଟି ଦେଲେ ଭଲ ହେବ । ଗଛ ଉପରେ ତ ସେ ଚଢ଼ି ବସିଛି । ଜଣେ ସେ ଗଛ ଡାଳକୁ ଏଠାକୁ ନେଇ ଆସିବ ।''

''ହଁ ସେଇଆ ଠିକ୍ ହେବ ।'' ସୋନସୀ ଠାରୁ କଟୁରୀ ଧରି ରଘୁବର ପ୍ରସାଦ ସଡ଼କ କଡ଼େ କଡ଼େ ଆଗେଇଲେ । ସେ ପାଇଜାମା ଗେଞ୍ଜି ପିନ୍ଧିଥିଲେ । କିନ୍ତୁ ହାତୀ ତାଙ୍କୁ ଦେଖି ନେଲା । ହାତୀ ଧୀରେ ଧୀରେ ଚାଲିକରି ତାଙ୍କ ସାଙ୍ଗ ଧରିଲା । ସୋନସୀ ଚାହିଁଥିଲା । ସେ ଡରିଲା ନାହିଁ । ଗଛ ଉପରେ ଥିବା ପିଲାଟା ରଘୁବର ପ୍ରସାଦଙ୍କୁ କହିଦେଲା, ହାତୀ ତାଙ୍କ ପଛେ ପଛେ ଆସୁଛି । ରଘୁବର ପ୍ରସାଦ ମୁହଁ ବୁଲାଇ ଦେଖିଲେ ସେ, ସେ ଗଛର ମୂଳକୁ ଗଲେ । ସେ ପିଲାଙ୍କୁ ପଚାରିଲେ ତୁମେ ଏଠି କେତେ ବେଳୁ ଅଛ ?''

''ମୁଁ ଏଠେଇ ବହୁତ ଆଗରୁ ଅଛି । ନିଦ ଭାଙ୍ଗିଯାଇଥିଲା ।''

''ସାଧୁକୁ ହାତୀ ଛାଡ଼ି ଚାଲିଯିବାର ଦେଖିଛ ?''

''ହଁ ସେ ହାତୀକୁ ଗେଲ କରିଥିଲା ।

''କୁଆଡ଼େ ଗଲା ?

''ଏଇ ଆଡ଼େ'' ସେ ଠାରି ଦେଖାଇଲା ।''

''ଆଚ୍ଛା, ତମେ ହାତୀ ଲାଗି ଗଛର କିଛି ସରୁ ଡାଳ କାଟି ପାରିବ ? ହାତୀ ଭୋକିଲା ଅଛି । ମୁଁ କଟୁରୀ ଆଣିଛି ।''

ପିଲାଟି ଗଛରୁ ଟିକିଏ ତଳକୁ ଓହ୍ଲାଇଲା । ରଘୁବର ପ୍ରସାଦ ହାତକୁ ଟେକି ତାକୁ କଟୁରୀ ଧରାଇଦେଲେ । ସେ ପୁଣି ଚଢ଼ିଗଲା । ହାତୀ ସେଠାକୁ ଆସିଯାଇଥିଲା । ପିଲାଟା ଗଛର ଡାଳ କାଟି ତଳେ ପକେଇବାକୁ ଲାଗିଲା । ରଘୁବର ପ୍ରସାଦ ପଛକୁ ଚାଲିଗଲେ । ଗଛର ଡାଳକୁ ଦେଖି ହାତୀ ବୁଝିଗଲା ଯେ ଏସବୁ ତାହାରି ଲାଗି । ହାତୀ ତାହାରି ଆଡ଼କୁ ଆଗେଇ ଗଲା । ହାତୀକୁ ଖାଉଥିବାର ଦେଖି ରଘୁବର ପ୍ରସାଦ ଖୁସି ହୋଇଗଲେ। ଗଛ ଉପରେ ଚଢ଼ିଥିବା ପିଲାଟି ବି ଖୁସି ଥିଲା । ଏବେ ସୋନସୀ ବି ଖୁବ୍ ଖୁସି ଥିଲା । ସେ ଗୁଣୁ ଗୁଣୁ ଗୀତ ଗାଉଥିଲା ଓ ଟିକିଏ ତାଳ ବି ଦେଇ ଝୁଲୁଥିଲା । ସଡ଼କ ଏବେ ବି ଶୂନ୍‌ଶାନ୍ ଥିଲା । ଦୂରରୁ ଗୋଟିଏ ବଳଦଗାଡ଼ି ଆସୁଥିବାର ଶବ୍ଦ ଶୁଣାଯାଉଥିଲା । ସକାଳର ସବୁ ଦୃଶ୍ୟ ଦେଖାଯାଉଛି ଓ ଶୁଣାଯାଉଛି । ହାତୀର ଖାଇବାର ଆୟୋଜନ ଏଯାକେ ପୂରା ହୋଇନାହିଁ । ସକାଳ ପାଇଁ ମଧ୍ୟ ବାଧା ରହିଛି । ସୋନସୀ ସେଠାକୁ ପହଞ୍ଚିଗଲା । ନିଜ ହାତରେ ଡାଳକୁ ନେଇ ହାତୀକୁ ଖୁଆଇବାକୁ ଲାଗିଲା ।

''ବାସ୍ । ସେତିକି ଥାଉ ।'' ରଘୁବର ପ୍ରସାଦ ପିଲାଟାକୁ କହିଲା ।'' ପିଲାଟା ତଳକୁ ଓହ୍ଲାଇ ଆସିଲା । ସେ ନିଜ ହାତରେ ହାତୀକୁ ଖୁଆଇବାକୁ ଲାଗିଲା । ରଘୁବର ପ୍ରସାଦ ବି ଖୁଆଉଥିଲେ ।

ସୋନସୀର ଘର କାମ ପଡ଼ିଛି । ସେ ଫେରିଗଲା । ରଘୁବର ପ୍ରସାଦ ପିଲାଟାକୁ ପଚାରିଦେଲେ, ''ତମେ ଏଇଲେ ଗଛ ଉପରେ ରହିବ କି ?''

''ହଁ, ଗଛରେ ରହିବି । ହାତୀର ଖୋରାକ୍ ଏଇଲା ବହୁତ ଅଛି ।''

''ମୁଁ ଯାଉଛି ।''ସେ ପିଲାଟିକୁ ପଚାରିଲେ ।

'ହଁ, ପିଲାଟି ରଘୁବର ପ୍ରସାଦଙ୍କର କଟୁରୀ ଫେରାଇ ଦେଇଥିଲା । ଘରକୁ ଆସି ରଘୁବର ପ୍ରସାଦ ପୁଣି ଏରୁଣ୍ଡିବନ୍ଧକୁ ଆଉଜି ଦରଜା ପାଖକୁ ବସିଗଲେ । ସେ ହାତୀକୁ ଆସୁଥିବାର ଦେଖୁଥିଲେ। ସୋନସୀ ଖାଇବା ଲାଗି ରନ୍ଧାର ଯୋଗାଡ଼ କରୁଥିଲା ।

''ଯାଅ, ପୋଖରୀକୁ ଗାଧୋଇ ଆସ । ମୁଁ କେବେଠୁଁ ଗାଧୋଇ ସାରିଲିଣି ।''

''ମୁଁ ହାତୀକୁ ଦେଖୁଛି, ସେ କ'ଣ କରୁଛି ।''

''ତାର ପେଟ ପୂରିଗଲାଣି । ତା' ପାଇଁ କିଛି ଚିନ୍ତା ନାହିଁ ।''

''ଇଆଡ଼େ ସିଆଡ଼େ ପଳେଇ ନଯିବ ଯେମିତି କିଛି ଗଣ୍ଡଗୋଳ ନଘଟେ ।''

କିଛି ହବନି । ହାତୀ ବେଶ୍ ହୁସିଆର ଅଛି । ତୁମେ ଟେମ୍ପୋରେ କଲେଜ ଚାଲିଯିବ ।

''ହଉ, ମୁଁ ଗାଧୋଇ ଆସେଁ । ହାତୀକୁ ଦେଖୁଥିବ ।''

''ହଁ, ଦେଖୁଥିବି ।''

ରଘୁବର ପ୍ରସାଦଙ୍କର ଚଡ଼ି ଓ ଗେଞ୍ଜି ଖଟିଆ ଉପରେ ଥୁଆ ହୋଇଥିଲା । ଲୁଗା ଓ ଗାମୁଛା ନେଇ ସେ ଝରକା ବାଟେ ଡେଇଁଗଲେ । ଗୋବର ଲିପା ପରଦଣ୍ଡୀ ବାଟରେ ସେ ଦଉଡ଼ି ଯାଉଥିଲେ ।

ଯିବାବେଳେ ବୁଢ଼ୀ ମାଆକୁ ଦେଖି ପାରିଲେ ନାହିଁ । ଫେରିବା ବେଳକୁ ଗୋଟିଏ ଗଛମୂଳେ ବସିଥିଲା ।

''ବୁଢ଼ୀ ମାଆ କ'ଣ କରୁଛ ?'' ରଘୁବର ପ୍ରସାଦ ପଚାରିଲେ ।

''ରହିଥା ରହିଥା'' ବୁଢ଼ୀ ମାଆ ଦଉଡୁଥିବା ରଘୁବର ପ୍ରସାଦଙ୍କୁ ଅଟକାଇଲା । ବୁଢ଼ୀ ମାଆ ହାତରେ କଅଁଳ ପତ୍ରରେ ତିଆରି ଗୋଟିଏ ଦୋସା ଥିଲା । ତହିଁରେ ଦୁଇଟି ବାତାଶା ଥିଲା । ବୁଢ଼ୀ ମାଆ ଗରମ ଗରମ ତାକୁ କରିଥିବ । ବାତାଶା ଦିହରୁ ତଟକା ତଟକା ବାସନା ଆସୁଛି ।

''ୟାକୁ ଖାଇ ନେ ।'' ବୁଢ଼ୀ ମାଆ ବାତାଶା ଭାଙ୍ଗି ରଘୁବର ପ୍ରସାଦଙ୍କୁ ଖୁଆଇଲା । ''ନେଇ ଯା ସୋନସୀକୁ ଦେବୁ ।'' ଦୋସାକୁ ଧରାଇ ଦେଇ ବୁଢ଼ୀମାଆ କହିଲା । ରଘୁବର ପ୍ରସାଦ ଦୋସାକୁ ଧରି ଦଉଡ଼ିଲେ । ଅଧେ ବାତାଶା ବାଟରେ ଖାଇଲେ ।

ବଖରା ଭିତରକୁ ପଶିବା ଆଗରୁ ସେ ଦରଜା ପାଖରୁ ଦେଖି ନେଇଥିଲେ ଯେ ହାତୀ ନିମ୍ବ ଗଛମୂଳେ ଠିଆ ହୋଇଛି । ସୋନସୀ ହାତକୁ ଦୋସା ବଢ଼ାଇ ଦେଇ ସେ କହିଲେ– ''ବୁଢ଼ୀ ମାଆ ଦେଇଛି ଖାଇନିଅ । ମୁଁ ଖାଇ ସାରିଛି ।'' ସୋନସୀ ଅଧେ ବାତାଶା ଖାଇ ବାକି ଅଧକ ଯାହା ବଳିଗଲା ତାକୁ ରଘୁବର ପ୍ରସାଦଙ୍କୁ ଦେବାରୁ ସେ ଖାଇନେଲେ ।

ପଡ଼ିଶା ଘରେ କୋଳପ ପଡ଼ିଛି । ତେଣୁ ଭଲ ହୋଇଛି । ଘର ଆଗଟାରେ ଗୋଟିଏ ଦଳଛଡ଼ା ହାତୀ ଥିବାରୁ ବିପଦ ଆପଦର ଆଶଙ୍କା ଥିବ । ତା'ର ଟିକିଏ ଧକ୍କା ବାଜିଗଲେ କାନ୍ଥ ବାଡ଼ ଭଡ଼ଭାଡ଼ ଭାଙ୍ଗି ପଡ଼ିଯାଇ ପାରେ । ତା'ର ନିଜର ବୁଝାମଣା ଉପରେ ଗୋଟିଏ ସୀମା ଯାକେ ବିଶ୍ୱାସ କରାଯାଇପାରେ । ତା'ର ଯାହା କିଛି ବୁଝାମଣା ଥିବ ସବୁ ଶିଖାଶିଖି ହୋଇ ଯାଇଥିବ । ଏହି ଶିଖାଶିଖିର ବୁଝାମଣା ଉପରେ ହିଁ ଯାହା ବିଶ୍ୱାସ କରାଯାଇପାରେ । ଏହା ଭିନ୍ନ ଯାହା ଥିବ ତାହା ଉପରେ ବିଶ୍ୱାସ ନାହିଁ । ହାତୀ ଗଛମୂଳେ ଠିଆ ହୋଇଛି । ସାଧୁ ନାହିଁ ।

ରଘୁବର ପ୍ରସାଦ ତ ଗାଧୋଇ ସାରିଥିଲେ । ସେ ସୋନସୀକୁ କହିଲେ ''ହାତୀ ତ ଗାଧୋଇ ନାହିଁ ।''

''ତାକୁ ପୋଖରୀକୁ ନେଇ ଯାଇଥିଲେ ଭଲ ହୋଇଥାନ୍ତା ।''

''କଲେଜ ପାଖରେ ପୋଖରୀରେ ସେ ଗାଧୋଇ ଥାଏ ।''

''ତାର ଗାଧୋଇବାକୁ ଇଚ୍ଛା ହେଉଥିବ । ଆପେ ଆପେ ଯାଇ ଗାଧୋଇ ପଡୁନି କାହିଁକି ? ଆମେ ତ ତାକୁ ଅଟକାଇ ନାହୁଁ ।'' ସୋନସୀ କହିଲା ।

''ଏଇଠି ଠିଆ ହୋଇ ରହିଲେ ଭଲ । ଚାଲିଗଲେ ଚିନ୍ତା ହେବ ।''

''ହଁ ।''

''କଲେଜରୁ ଛୁଟି ନେଉଛି ।''

''ଏମିତି ବି ମୁଁ ହାତୀର ଦେଖାଶୁଣା କରିବିନି ।''

''ତମ ଦେଇ ହେବ ନାହିଁ । ଛୁଟିର ଦରଖାସ୍ତ ବିଭାଗାଧକ୍ଷଙ୍କୁ ଦେଇ ଆସେ ।'' ସେ ନଥିଲେ ଦରଖାସ୍ତ ଦେବାଲାଗି କଲେଜ ଯିବାକୁ ହେବ ।

"କେମିତି ଯିବ ? ହାତୀ ଦେଖିପାରିଲେ ପଛେ ପଛେ ଯିବ ।"

"ତାଙ୍କ ଘରଟା ବଡ଼ ଭିଡ଼ଭାଡ଼ର ସାହିରେ ଅଛି । ହାତୀର ସେଠିକି ଯିବାଟା ଠିକ୍ ହେବନାହିଁ ।"

ଛୁଟି ଦରଖାସ୍ତ ଲେଖିବା ପରେ ରଘୁବର ପ୍ରସାଦ ତାଙ୍କ କବାଟଠାରୁ ଡୁଙ୍ଗିକର ହାତୀକୁ ଚାହିଁଲେ । ହାତୀ ଘର ଆଡ଼କୁ ଚାହିଁ ନାହିଁ । ସଡ଼କ ଉପରେ କଦବା କେମିତି ଚହଲ ଉପରେ ତାର ଦୃଷ୍ଟି ଥିବ । "ମୁଁ ଯାଉଛି ।" ସେ ଆସ୍ତେ କରି କହିଲେ । ଆସ୍ତେ ଆସ୍ତେ ଦରଜା କବାଟକୁ ଖୋଲିଲେ। ଗୋଡ଼ ଟିପି ଟିପି ଘରମାନଙ୍କ କଡ଼େ କଡ଼େ ସେ ବାହାରିଗଲେ । କିଛି ବାଟ ଯିବା ପରେ ସେ ଦେଖିନେଲେ ଯେ ହାତୀ ସେଇଠି ଠିଆ ହୋଇଛି । ଜୋର୍ ପାଦରେ ସେ ବିଭାଗାଧ୍ୟକ୍ଷଙ୍କ ଘର ଆଡ଼କୁ ଛୁଟିଲେ । ତାଙ୍କର ମନେ ହେଲା ଯେ ଦଉଡ଼ିଗଲେ ସମୟ କମ୍ ଲାଗିବ । ଦରଖାସ୍ତ କମିଜର ଉପର ପକେଟରେ ଥିଲା । ସେ ଦଉଡ଼ିଗଲେ । "ରଘୁବର ପ୍ରସାଦ, ରଘୁବର ପ୍ରସାଦ ।" ରଘୁବର ପ୍ରସାଦ ସେ ପାଟି ବି ଶୁଣି ପାରିନଥିଲେ । ପାଖରେ ଜଣେ ଲୋକ ଯାଉଥିଲା । ସେ ବୁଝିଗଲା ଯେ ଦଉଡୁଥିବା ମଣିଷକୁ ଡକାଯାଉଛି । ସେ ନା ରଘୁବର ପ୍ରସାଦଙ୍କୁ ଜାଣିଛି ନା ବିଭାଗାଧ୍ୟକ୍ଷଙ୍କୁ ଜାଣିଛି । ସାହାଯ୍ୟ କରିବା ଉଦ୍ଦେଶ୍ୟରେ ସେ ରଘୁବର ପ୍ରସାଦଙ୍କୁ କହିଲା । "ରଘୁବର ପ୍ରସାଦ," ଏହା ଶୁଣି ରଘୁବର ପ୍ରସାଦ ରହିଗଲେ । ବିସ୍ମିତ ହୋଇ ଲୋକଟାକୁ ଅନାଇ ରହିଲେ । "ଆପଣଙ୍କୁ ଡାକୁଛନ୍ତି" ବୋଲି କହି ସେ ବିଭାଗାଧ୍ୟକ୍ଷଙ୍କୁ ଦେଖାଇ ଦେଲା । ରଘୁବର ପ୍ରସାଦ ବିଭାଗାଧ୍ୟକ୍ଷଙ୍କୁ ରହିବାକୁ ବିଭାଗାଧ୍ୟକ୍ଷ ହାତ ଟେକିଦେଲେ ।

"କ'ଣ ହୋଇଛି ରଘୁବର ପ୍ରସାଦ !" ଚିନ୍ତିତ ହୋଇ ବିଭାଗାଧ୍ୟକ୍ଷ ପଚାରିଲେ ।

"ଆଜିର ଛୁଟି ପାଇଁ ଦରଖାସ୍ତ ଦେବାକୁ ଥିଲା ସାର୍ ।"

"ସବୁ ଭଲ ତ ?"

ରଘୁବର ପ୍ରସାଦ କିଛି କହୁ କହୁ କହି ଅଟକିଗଲେ ।

"ଚାଲ ଘରେ ବସିବା । ଜଳିବି ଥଣ୍ଡା ହୋଇଯାଉଛି ।"

"ନା ସାର୍, ମୋର ଟିକିଏ ତରବରିଆ ଅଛି ।"

"କୋଉ କଥାକୁ ତରବରିଆ ?"

"କିଛି ନାହିଁ ସାର୍ ।" ଦରଖାସ୍ତଟି ସେ ବିଭାଗାଧ୍ୟକ୍ଷଙ୍କୁ ଦେଲେ ।

"ଜଳିବି ଖାଇବ ନାହିଁ ?"

"ନା, ସାର୍ ।"

"ଆଚ୍ଛା, କିଛି ସମୟ ପରେ ମୁଁ ତୁମ ଘରକୁ ଆସୁଛି ।"

"ନା, ସାର ! ସବୁ ଠିକ୍ ଠାକ୍ ଅଛି ।"

"ସବୁ ଠିକ୍ ଠାକ୍ ଅଛି ତେବେ ଛୁଟି କାହିଁକି ନେଉଛ ?" ବିଭାଗାଧ୍ୟକ୍ଷ କହିଲେ ।

"ସେମିତି କିଛି କଥା ନାହିଁ ।" ଏତକ କହି ରଘୁବର ପ୍ରସାଦ ବେଗେ ମୁହଁ ବୁଲାଇନେଲେ । ବୁଲିପଡ଼ି ଦୁଇ ପାଦ ଆଗେଇବା ପରେ ସେ 'ସାର୍' ବୋଲି କହିଲେ, ଯାହାକି କଥା ଭିତରୁ ରହିଯାଇଥିଲା । ପରେ ବାହାରିଗଲା । ପରେ ମୁହଁରୁ ବାହାରିଥିବା 'ସାର୍' ଯୋଗୁଁରୁ ବିଭାଗାଧ୍ୟକ୍ଷ

ଅଟକି ଗଲେ ଯେ ରଘୁବର ପ୍ରସାଦ କିଛି କହିବେ । ଏହି ସାର୍ ଶବ୍ଦକୁ ସେ କିଛି କହିବାର ପ୍ରଥମ କହିଥିବା ଶବ୍ଦ ବୋଲି ବିଚାରିଥିଲେ । ରଘୁବର ପ୍ରସାଦ କିଛି ନ କହି ଚାଲିଗଲେ । ବିଭାଗାଧ୍ୟକ୍ଷ ବିଚାରିଲେ ଯେ ରଘୁବର ପ୍ରସାଦ କିଛି ଝଂଝଟରେ ପଡ଼ିଛନ୍ତି । ସେ ପଚାରିବେ ଯେ ସାର୍ କହିବା ପରେ ସେ ପରବର୍ତ୍ତୀ କଥା କାହିଁକି କହିଲେ ନାହିଁ ।

ଫେରିବା ବେଳେ ବି ରଘୁବର ପ୍ରସାଦ କିଛି ବାଟ ତ ଦଉଡ଼ିଥିଲେ । ତା'ପରେ ଥକିଯିବାରୁ ଦଉଡ଼ି ନ ଥିଲେ । ପରେ ସେ ଆସ୍ତେ ଆସ୍ତେ ଫେରୁଥିଲେ । ସେ ଦୂରରୁ ହିଁ ହାତୀକୁ ଦେଖି ପାରିଥିଲେ । ସେ ଏବେ ବି କିଛିଟା ଲୁଚି ଲୁଚି ଫେରିଥିଲେ । ହାତୀ ରଘୁବର ପ୍ରସାଦଙ୍କୁ ଦେଖି ନେଇଥିଲା । ସେ ରଘୁବର ପ୍ରସାଦଙ୍କ ଆଡ଼କୁ ଆଗେଇଲା ନାହିଁ । ହୁଏତ ହାତୀ ଭାବିଥିବ ଯେ ରଘୁବର ପ୍ରସାଦ ତାହାଠାରୁ ଦୂରକୁ ଯାଉନାହାନ୍ତି । ପାଖକୁ ହିଁ ଆସୁଛନ୍ତି ।

କେତେ ଦିନ ହୋଇଗଲାକୁ କେତେଦିନ ବିତିଗଲା ଭିତରେ ହିଁ ରହିବାକୁ ଦିଆଯିବା ଉଚିତ । ଦିନକୁ ଗଣ୍ୟ ବୋଲି ଭାବିବା ଉଚିତ ନୁହେଁ । କାହାରି ପାଇଁ ବି ନୁହେଁ । ଗଣିବାଟା ଚାରିକାନ୍ଥ ଭଳିଆ ଉଚିତ ନୁହେଁ । କାହାରି ପାଇଁ ବି ନୁହେଁ । ଗଣିବାଟା ଚାରିକାନ୍ଥ ଭଳିଆ ହୋଇଯାଏ ଯହିଁରେ ସବୁ ମିଳାଇ ଯାଏ । ଅନନ୍ତ ଭଳି ଜିନିଷ ମଧ୍ୟ ଗଣିବାରେ ଅନ୍ତ ହୋଇଯାଉଥିଲା । ଯାହା ଗଣି ହୋଇନାହିଁ ତାହାର ଚିନ୍ତାର ଅନନ୍ତରେ ରହୁଥିଲା, ଯେ ତାହା କେବେ ନା କେବେ କୋଉଠି ନା କୋଉଠି ଅଛି । ଯେତେ ଛୋଟ ବା କମ୍ ହୋଇଥାଉ ପଛେ, ଆଜିର ସକାଳରୁ ଘର ଦାଣ୍ଡର ହାତୀ କେତେ ଦିନରୁ ଅଛି ହୋଇଯାଇଥିଲା । ସକାଳ ଶେଷ ହୋଇଥିଲା । ସେ ଏପରି ସକାଳ ହୋଇ ବିତିଥିଲା ଯେ ପ୍ରତିଦିନର ସକାଳ ଭଳି ଲାଗୁଥିଲା । ରଘୁବର ପ୍ରସାଦ ହାତୀକୁ ସବୁଦିନ ପରି ଚାହିଁଥିଲେ । ହାତୀ ରଘୁବର ପ୍ରସାଦଙ୍କୁ ସବୁଦିନ ପରି ହିଁ ଦେଖୁଥିବ । ସୋନସୀ ସବୁଦିନ ଭଳି ଘର କାମ କରୁ କରୁ ହାତୀକୁ ଚାହିଁ ଯାଉଥିଲା । ସ୍ୱଭାବତଃ ତା'ର ମାନସିକତା ଏପରି ଥିଲା ଯେ ସେ ଖୁସିରେ ପରିପୂର୍ଣ୍ଣ ଥିଲା । ହାତୀର ସୁଖ ହାତୀର ଚିନ୍ତାଠାରୁ ବଡ଼ ଥିଲା ।

ରଘୁବର ପ୍ରସାଦ ଘର ଭିତରକୁ ପଳେଇଲେ । ତାଙ୍କର ଆସିବା ମାତ୍ରେ ସୋନସୀ କହିଲା, "ଖାଇବା ଅଳ୍ପ ଡେରିରେ ହୋଇଯିବ ।"

"କିନ୍ତୁ ମୁଁ କଲେଜ ଯିବି ନାହିଁ ।" ଛୁଟି ଦରଖାସ୍ତ ମୁଁ ବିଭାଗାଧ୍ୟକ୍ଷଙ୍କୁ ଦେଇ ଦେଇଛି ।"

"ଭୋକ ଲାଗୁନାହିଁ ?

"ଲାଗୁଛି ।"

"ଗରମ ଗରମ ଖାଇନିଅ ।"

"ତମେ ଖାଇବନି ?"

"ସବୁ କାମ ସାରି ଖାଇବି ।"

"ମୁଁ ତୁମ ସାଙ୍ଗରେ ଖାଇବି ।"

"ଘରର ସବୁ କାମ ତୁମ ଖାଇବା ପରେ ଶେଷ ହୁଏ ।"

ବିଭାଗାଧ୍ୟକ୍ଷଙ୍କ ପକ୍ଷରେ ଆଉ ରହିବା ସମ୍ଭବ ନୁହେଁ, କାରଣ ରଘୁବର ପ୍ରସାଦ କିଛି ଝଂଝଟରେ ପଡ଼ିଥିବେ - କିଛି କହିଲେ ବି ନାହିଁ । ଏଣୁ ରଘୁବର ପ୍ରସାଦଙ୍କ ଘରକୁ ତାଙ୍କର ଯିବା ଉଚିତ । କଲେଜ ଯିବା ବାଟରେ ସେ ରଘୁବର ପ୍ରସାଦଙ୍କ ଘର ଆଡ଼କୁ ମୁହାଁଇଲେ । ରଘୁବର ପ୍ରସାଦଙ୍କ ଘର ଆଗରେ ଠିଆ ହୋଇଥିବା ହାତୀ ତାଙ୍କ ଆଖିରେ ପଡ଼ିଛି । ସେ ଭାବିଥିଲେ ସ୍କୁଟରରେ ବସାଇ କଲେଜକୁ ନେଇଯିବେ । କିନ୍ତୁ ହାତୀ ଠିଆ ହୋଇଛି । ରଘୁବର ପ୍ରସାଦ ଛୁଟି ନେଇ ହାତୀରେ ବସି ବୁଲି ଯାଉଛନ୍ତି ? ରଘୁବର ପ୍ରସାଦ ଆଉ ସୋନସୀ ଦରଜା ପାଖରେ ବସିଥିଲେ । ରଘୁବର ପ୍ରସାଦ ବିଭାଗାଧ୍ୟକ୍ଷଙ୍କୁ ଦେଖିଲା ମାତ୍ରେ ଉଠି ଠିଆ ହୋଇଗଲେ । ସୋନସୀ ଠିଆ ହୋଇଗଲା । ବିଭାଗାଧ୍ୟକ୍ଷ ସ୍କୁଟର ଠିଆ କରୁଥିଲେ ଦେଖି ରଘୁବର ପ୍ରସାଦ ପାଟିକରି କହିଲେ,''ସେଠି ନୁହେଁ– ଦୂରରେ ରଖନ୍ତୁ– ଆହୁରି ଦୂରରେ । ଦେଖି ହୁସିଆର ହୋଇ ଆସିବେ । ସାଧୁ ନାହିଁ, ହାତୀ ଏକୁଟିଆ ଅଛି ।'' ହାତୀଠାରୁ ଦୂରରେ ସ୍କୁଟର ଠିଆ କରି ବିଭାଗାଧ୍ୟକ୍ଷ କଡ଼ବାଟେ ରଘୁବର ପ୍ରସାଦଙ୍କ ପାଖକୁ ଆସିଲେ ।

''ସାଧୁ କାହିଁ ଗଲା ?'' ବିଭାଗାଧ୍ୟକ୍ଷ ପଚାରିଲେ ।

''ନାହିଁ । ହାତୀକୁ ଛାଡ଼ି ଦେଇ ଚାଲିଗଲା ।'' ରଘୁବର ପ୍ରସାଦ ଚିଡ଼ି କରି କହିଲେ ।

''ସେଇଥିପାଇଁ କ'ଣ ଛୁଟି ନେଉଛ ?''

''ହଁ ସାର୍, ହାତୀକୁ ଦେଖାଚାହାଁ କରିବା ସକାଶେ ।

''କେତେଦିନ ଯାକେ ଦେଖାଚାହାଁ କରିବ ?''

''ଦିନେ ଦି'ଦିନ ପାଇଁ । ତାପରେ ଜଙ୍ଗଲ ବିଭାଗକୁ ଦେଇଦେବି ।''

''ମୋର କ'ଣ ପୁଲିସକୁ ଖବର ଦେବା ଉଚିତ ?''

''ପରେ ଫୌଜଦାରୀ ମାମଲା ହୋଇପାରେ । ହାତୀ କିଛି ଭଙ୍ଗାରୁଜା କଲେ ଲୋକେ ତୁମ ଉପରେ କ୍ଷତିପୂରଣର ମକଦ୍ଦମା ବି ଦାଏର କରିପାରନ୍ତି । ଝଗଡ଼ା କରିପାରନ୍ତି । କିନ୍ତୁ ଭାବିଲେ ତ ହଇରାଣ ଅଛି । ଭୁଲିଯାଅ ଯେ ହାତୀ ଘର ଆଗରେ ରହିଛି । ହାତୀ ତୁମର ଦାୟିତ୍ୱ କେମିତି ହୋଇଗଲା ?''

''ରାସ୍ତାରେ ପଡ଼ିଥିବା ପଥର ବି ଦାୟିତ୍ୱ ହୋଇଯାଏ ଯେ ସେଇଟାକୁ ବାହାର କରିଦେବା ଉଚିତ । ଏ ତ ହାତୀ ସାର୍, ମୋର ପରିଚିତ ହାତୀ, ଗୋଟିଏ ବଡ଼ ଜନ୍ତୁ । କିଛି ନା କିଛି କରିବାକୁ ହେବ । ଦିନେ ଦି'ଦିନ ଦେଖିବି ସାଧୁ କାଲେ ଆସିଯିବ ।''

''ଆଚ୍ଛା ଗୋଟେ କଥା କହିଲ ତୁମେ ଦରଖାସ୍ତ ଦେଇଦେବା ପରେ 'ସାର୍' ବୋଲି କହିଲ ତା ପରେ କିଛି ନ କହି ଚାଲିଗଲ ।''

''କଥା କ'ଣ କି ସାର୍, ପ୍ରଥମେ କଥା କହିଲା ବେଳେ ମୁଁ ଆପଣଙ୍କୁ ସାର୍ ବୋଲି କହିବାକୁ ଭୁଲିଯାଇଥିଲି । ସେ କଥା ମନେ ପଡ଼ିଗଲା ଯେ ଭୁଲିଥିବା ସାର୍ ଶବ୍ଦଟି ଏକୁଟିଆ ବାହାରି ଆସିଲା । ମୁଁ ବିଚାରିଲି ଆପଣ ମୋର ଆଗରୁ କହିଥିବା କଥା ସାଂଗରେ ଏହାକୁ ଯୋଡ଼ିଦେବେ ।''

''ତୁମେ ତ କେତେ ଥର କହିବାକୁ ଭୁଲିଯାଅ, ଦିନ ଶେଷରେ ଯଦି ତୁମେ ଦଶଥର ଖାଲି ସାର୍ ବୋଲି କହିଦେବ ମୁଁ କେତେ ଜାଗା ସେଇ ସାର୍‌କୁ ଯୋଡ଼ି ପୂରଣ କରୁଥିବି । ଆଚ୍ଛା କଳ୍ପନା କର କଲେଜର ସମୟ ଶେଷ ହୋଇଯିବା ପରେ ତୁମେ ମୋ ପାଖକୁ ଆସି କେବଳ ଦଶ ପନ୍ଦର ଥର ସାର୍ ସାର୍ କହି କରି ଚାଲିଗଲ । ସେଇଠୁ ମୁଁ ଘରକୁ ଯିବି କ'ଣ ସେଇଠି ବସି ତୁମର ସାର୍ ଗୁଡ଼ାଙ୍କର ହିସାବ ଲଗାଇବାକୁ ବସି ରହିବି । ଯଦି ତୁମେ ଦରକାରଠାରୁ ବେଶୀ ସାର୍ କହିଥିବ ତେବେ ମୁଁ ତାକୁ ଜମା ରଖିବି ତା'ପରେ କିଛି ଭୁଲ୍ ହେଲେ ହିସାବକୁ ପୂରଣ କରିଦେବି । ନାହିଁ ରଘୁବର ପ୍ରସାଦ ତୁମେ ମୋତେ ସାର୍ କହିବା ଛାଡ଼ିଦିଅ ।''

''ଆଚ୍ଛା ।'' ରଘୁବର ପ୍ରସାଦ ମୁରୁକି ହସିଲେ । ସୋନସୀ ଚାହା ନେଇ ଆସିଲା । ରଘୁବର ପ୍ରସାଦ ପିଆଲାରେ ସୋନସୀ ପାଇଁ ନିଜ କପ୍‌ରୁ ଚାହା ଢ଼ାଳି ଦେଲେ ।

''ହାତୀରେ ତ.ତୁମେ କଲେଜ ଯାଇପାରିବନି । ମୋ ସାଙ୍ଗରେ ସ୍କୁଟରରେ ଚାଲ ଆଉ ହାତୀକୁ ଭୁଲିଯାଅ । ''

''ମୁଁ ଏଯାଏ ଖାଇନାହିଁ ।''

''ଡବା ନେଇଚାଲ ।'' ବିଭାଗାଧ୍ୟକ୍ଷ କହିଲେ ।

ସୋନସୀ ଡବା ସଜାଡ଼ିଦେଲା । ରଘୁବର ପ୍ରସାଦଙ୍କର ଇଚ୍ଛା ହେଉ ନଥିଲା ଯେ ସୋନସୀ କିଛି ମୁସ୍କିଲରେ ପଡ଼ିଯିବ କାଳେ ।

''ମୁଁ ତ ଛୁଟି ଦରଖାସ୍ତ ଦେଇଛି ।''

''ମୁଁ ତାକୁ ଚିରି ଦେଉଛି ।'' ବିଭାଗାଧ୍ୟକ୍ଷ ଦରଖାସ୍ତକୁ ଚିରି ଦେଲେ । ତା'ପରେ ସେ ଝରକା ପାଖକୁ ଗଲେ । ଝିଡ଼ିକି ବାଟେ ମୁଣ୍ଡ ଗଳାଇଲେ । ସେଠି ଏପଟ ସେପଟ ଅନାଇଲେ । ସେ ଗଭୀର ନିଃଶ୍ୱାସ ନେଲେ ।

''ଚାଲ'' ବିଭାଗାଧ୍ୟକ୍ଷ କହିଲେ ।

''ଚାଲନ୍ତୁ'' ରଘୁବର ପ୍ରସାଦ କହିଲେ ।

ରଘୁବର ପ୍ରସାଦ ଚାଲିଯିବା ପରେ ଝରକା ପାଖକୁ ଗାଈ ଆସିଲା । ଖାଇବାକୁ ଗୋଟିଏ ରୁଟି ଦେବା ପରେ ଖଣ୍ଡିଏ ରୁଟି ନେଇକରି ସୋନସୀ ହାତୀ ପାଖକୁ ଗଲା । ଦୁଇ ହାତର ଆଞ୍ଜୁଳା ମେଲାଇ ରୁଟିକୁ ସେ ହାତୀକୁ ଦେଲା । ହାତୀ ରୁଟିକୁ ଉଠାଇ ନେଉଥିଲା କିନ୍ତୁ ସୋନସୀ ଆଖି ବନ୍ଦ କରି ନ ଥିଲା । ଶୁଣ୍ଢର ସ୍ପର୍ଶ ସେ ପାଇଥିଲା ।

ସେ ଖାଇବାକୁ ବସିଲା ବେଳକୁ ଗଛରେ ଲୁଚି ବିଡ଼ି ପିଉଥିବା ସେଇ ପିଲାଟା ଆସିଲା । ସୋନସୀ ପ୍ରଥମେ ତାକୁ ଚିହ୍ନିପାରିଲା ନାହିଁ । ସଦାବେଳେ ତାକୁ ଗଛ ଉପରେ ଦେଖିଛି । ଯେତେବେଳ ନିଜ ହାତରେ ହାତୀକୁ ଖୁଆଇବା ପାଇଁ ସେ ଗଛରୁ ଓହ୍ଲାଇଥିଲା ସେତେବେଳେ ମାଟି ଉପରେ ତାକୁ ଦେଖିଥିଲା ।''

''ହାତୀ ଲାଗି ଡାଳପତ୍ର କାଟିଦେବି କି ?'' ସେ ସୋନସୀକୁ ପଚାରିଲା । ବାର ତେର ବର୍ଷର

ଟୋକାଟା ଥିଲା । କମିଜ ଓ ଖାକୀ ହାପ୍ ପ୍ୟାଣ୍ଟ ପିନ୍ଧିଥିଲା । ରୋଗିଣା ସରୁଆ ଦେହ । ଆଖି ବଡ଼ ବଡ଼ ; ବାଳତକ ତେଲ ବଳବଳ, ପାନିଆଁରେ କୁଣ୍ଡା ହୋଇଛି ।

"ଖାଇବୁ କି ?" ସୋନସୀ ନିଜର ଖାଇବା ନେଇ ବସିଥିଲା ।

"ରୁଟି ଅଛି ?" ସେ ପଚାରିଲା ।

"ଭାତ ଅଛି ।" ସୋନସୀ କହିଲା ।

ଗୋଟିଏ ବଡ଼ କଂସାରେ ତାକୁ ଭାତ, କଞ୍ଚା ଲଙ୍କା, ଟିକିଏ ପିଆଜ ଆଉ ଟିପେ ଲୁଣ ସୋନସୀ ଦେଲା । ସେଇସବୁ ସେ ନିଜ ଲାଗି ବି ନେଇ ବସିଥିଲା । ତରକାରୀ ନାହିଁ । ସେ ତରତର ହୋଇ ଖାଉଥିଲା ।"

"ଆସ୍ତେ ଖା ।" ସୋନସୀ କହିଲା । ସୋନସୀ ଆଡ଼େ ଚାହିଁ ସେ ଧୀରେ ଧୀରେ ଖାଇବାକୁ ଲାଗିଲା । ଦରଜା ଖୋଲା ଥିଲା । ଯୋଉଠି ସୋନସୀ ବସିଥିଲା ସେଠୁ ହାତୀ ଦିଶୁଥିଲା । ତା'ପରେ ହାତୀର ରୂପ ଦେଖିବା ବି କମ୍ ହୋଇଗଲା । ଶୁଣ୍ଢର ଅଳ୍ପ ଅଂଶ ଦିଶୁଥିଲା । ସୋନସୀ ଖାଉ ଖାଉ ଘୁଞ୍ଚିଗଲା । ଏଇଲେ ପ୍ରାୟ ହାତୀର ଅଧା ଅଧିକ ଅଂଶ ତାକୁ ଦିଶିଲା ।

"ଲୁଚିକରି ବିଡ଼ି କାହିଁକି ପିଉ ?" ସୋନସୀ ପଚାରିଲା ।

"ବାପା ମାରେ ।"

"ପିଇନା ।" ସୋନସୀ ବୁଝାଇଲା । କଂସାରେ ତା'ର ଭାତ ସରିଯାଇଛି । ସେ ମୁଣ୍ଡ ତଳକୁ ପୋତି ଲୁଣ ଚାଟୁଥିଲା ।

"ଆଉ ଭାତ ଦେବି ?"

"ହଁ । ଦେଇଦିଅ ।" ସେ କହିଲା । ତାକୁ ବହୁତ ଭୋକ ଲାଗୁଥିଲା ।

ଯେତେବେଳ ଯାକେ ତା' ବାପ ଘରେ ଥାଏ, ସେ ଘରକୁ ଯାଏନା । ଘର ସାମନାରେ କବାଟ ପାଖରେ ଠେଙ୍ଗା ଆଉଜା ହୋଇ ରହୁଥିବାର ଦେଖିଲେ ସେ ବୁଝିଯାଏ ସେ ବାପା ଘରେ ଅଛନ୍ତି । ଠେଙ୍ଗା ଯେତେବେଳେ ନଥାଏ ସେ ଘରକୁ ପଶେ । ତା'ର ବାପ ହେଲା ଗଉଡ଼ । ସେ ଘରେ ଘରେ ଦୁଧ ଦୁହେଁ । ଆଉ ଗାଈ ବଳଦ ନେଇ ଦୂର ଦୂର ଜାଗାକୁ ଚରାଇବାକୁ ଚାଲିଯାଏ । ବାପକୁ ଜଣା ଅଛି ଯେ ତାକୁ ଡରିକରି ପୁଅ ଘରକୁ ଆସେ ନାହିଁ । ସେଥିପାଇଁ ସେ ଅଧିକରୁ ଅଧିକ ସମୟ ଲାଗି ବାହାରେ ରହିବାକୁ ଚେଷ୍ଟା କରେ । ଭୁଲରେ ଯେବେ ସେ ଆସିଯାଏ ଓ ପୁଅ ଘରେ ଥାଏ ତେବେ ପୁଅ ପଛ ଅଗଣାର କାନ୍ଥକୁ ଡେଇଁକରି ପଳେଇଯାଏ । ସେ ଏକା ଗୋଟିଏ ପୁଅ । ତା'ର ଦୁଇଟି ଝିଅ ଛୋଟ ବେଳୁ ମରିଯାଇଛନ୍ତି । ପୁଅ ପଳେଇଗଲା ପରେ ବି ବାପ ବେଶୀ ବେଳ ଘରେ ରହେ ନାହିଁ । ତା'ର ମନେ ହୁଏ ଦୂରରୁ କେଉଁଠୁ ପୁଅ ଲୁଚିକରି ଦେଖୁଥିବ ଯେ ବାପା କେତେବେଳେ ଘରୁ ବାହାରିଲେ ସେ ଘରେ ପଶି ପାରିବ । ବାହାରକୁ ଯିବାବେଳେ ସେ କାଶି ଦିଏ । ପୁଅର ମାକୁ କିଛି ପାଟିକରି କହେ । "ମୁଁ ଡେରିରେ ଘରକୁ ଫେରିବି" ଏ ପଦିକ ନିଶ୍ଚୟ କହିଥାଏ । ସେ ଘରୁ ବାହାରିବା ବେଳେ ବେଶୀ ଚେଷ୍ଟା କରିଥାଏ ଯେ ପୁଅକୁ କେମିତି ଜଣା ପଡ଼ିଥାଏ ଯେ ସେ ଯାଉଛି ।

ଆଉ ଖେଳ ନିଶାରେ କାଳେ ତାର ବାହାରିଯିବା କଥାଟା ଭୁଲିଯାଏ କବାଟ ପାଖରେ ଠେଙ୍ଗା ଟିକି ସେ ଜାଣି ଜାଣି ରଖେ । ଯାହା ଫଳରେ ସେ ଘରେ ଥିବାର ଆଗରୁ ଜଣାପଡ଼ିଯିବ । ପୁଅ ବିଡ଼ି ପିଇବାରେ ସେ ବହୁତ ଚିଡ଼େ । ତାର ମାଆ କେତେବେଳେ ପୁଅ ଘରକୁ ଆସିଯିବ, ଏଇ ଆଶାରେ ଘରୁ କୋଡ଼ିଏ କୋଡ଼ିଏ ଦିନଯାକ ବାହାରିପାରେ ନାହିଁ । ସେ ବେଳେବେଳେ ଘର ବାହାରେ ଥିବା ଠେଙ୍ଗାକୁ ଭିତରେ ଲୁଚାଇ ଦିଏ । ଯାହା ଫଳରେ ସେ ଘରକୁ ଆସି ପାରିବ । ଯଦି ସେ ପଚାରେ ଘରେ ବାପା ଅଛନ୍ତି କି, ସେ କହିବ ନାହାନ୍ତି । ଏମିତି କିଛି ହୋଇଯାଉ ଯେପରି ସମସ୍ତେ ଏକାଠି ଘରେ ରହିପାରନ୍ତି ।

ସୋନସୀ ଭାତ ଦେଲା । ‘‘ଆଉ ଦେବି ?’’

ମୁଣ୍ଡ ହଲାଇ ସେ ମନାକଲା । ତଥାପି ସୋନସୀ କିଛି ଭାତ ପରଷି ଦେଲା । ରାସ୍ତା କଡ଼ରେ କିଛି ଦୂରରେ ଗୋଟିଏ ଗୁଲର ଗଛ ଥିଲା । କମିଜ୍‌ର କଲର ପଛରେ ପିଠିଆଡ଼େ କଟୁରୀକୁ ଲଟକାଇ ସେ ଗଛ ଉପରେ ଚଢ଼ିଗଲା । ଚଢ଼ିବାକୁ ଗଛଟି ବେଶ୍ ସହଜ । ଏହି ଗଛର ବଡ଼ କୋଟରକୁ ଦେଖିଲେ ପିଲାଟି ବିଚାରିଲା ଯେ ଖାଲି ବିଡ଼ି ଦିଆସିଲି ନୁହେଁ ଆହୁରି ଅନେକ କିଛି ଲୁଚାଇ ରଖିହେବ । ଏଠୁ ରାସ୍ତାର ଲୋକଙ୍କ ନଜରରୁ ସେ ଲୁଚି ରହିପାରେ । ଆଗର ଗଛ ତ ଆଉ ଗୁପ୍ତ ହୋଇ କରି ନାହିଁ । ଗଛକୁ ବଦଳାଇ ଚାଲିବା ଦରକାର । ଏ ଗଛ ବେଶ୍ ଗହଳ ଥିଲା । ତା’ର ଡାଳ ମୋଟା ମୋଟ ଥିଲା । ଉଚ୍ଚ ବି ବେଶୀ ନୁହେଁ ।

ଯେତେବେଳେ ଡାଳମାନ କାଟିକରି ସେ ତଳକୁ ପକାଇଲା ସୋନସୀ ବି ସେଠିକି ଆସି ପହଞ୍ଚିଗଲା । ଡାଳକୁ ନେଇକରି ସେ ହାତୀ ଯାକେ ନେବାକୁ ଚାହୁଁଥିଲା । ଓଜନିଆ ହୋଇଥିବାରୁ ଡାଳକୁ ଘୋଷାରି ନେଇ ଯାଉଥିଲା । ଡାଳ ମାଟି ଉପରେ ଘୋଷରା ହେବାରୁ ଧୂଳି ଉଡୁଥିଲା । ହାତୀ ପାଖକୁ ପହଞ୍ଚି ପାରି ନାହିଁ ଏତିକି ବେଳେ ହାତୀ ତା’ ଆଡ଼କୁ ଆସିଲା । ହାତୀ ଲାଗି ଡାଳକୁ ଛାଡ଼ି ଦେଇ ସେ ଘୁଞ୍ଚିଗଲା । ହାତୀ ଗୁଲରର ସବୁଜ ଡାଳ ସବୁ ବଡ଼ ଆଗ୍ରହରେ ଖାଉଥାଏ ।

‘‘ବାପା ଆସୁଛି ।’’ ଗଛ ଉପରୁ ଟୋକା କହିଲା ।

‘‘କାହିଁ ?’’

‘‘ଠେଙ୍ଗା ଧରି ଆସୁଛି ।’’

ସୋନସୀ ଦେଖିଲା ଗୋଟିଏ ନିର୍ବଳ ରୋଗାପଟକା ମଣିଷ ମୁଣ୍ଡରେ ଗାମୁଛା ଭିଡ଼ିଥିଲା । ପାଖ ଆଖରେ ଏଣେ ତେଣେ ବେଶି ଚାହୁଁଥାଏ । ବୋଧହୁଏ ନିଜର ପୁଅକୁ ଖୋଜୁଛି । ତାକୁ ଯେବେ ଜଣାଥାନ୍ତା ଯେ ତା’ର ପୁଅଟା ଗଛ ଉପରେ ବସେ ତେବେ ସେ ଗଛମାନଙ୍କୁ ଚାହୁଁଥାନ୍ତା । ଏଇମିତି ଗୁଲରରେ ବସିଥିବା ଘର । ପୁଅ ତାକୁ ଦିଶି ଯାଇଥାନ୍ତା । ସୋନସୀ ତା’ର ଇଚ୍ଛା ହେଲା ଯେ ତାକୁ କହିଦେବ ଯେ ଏଇଠି ଗୁଲରର ଗଛ ଉପରେ ତା’ର ପୁଅ ବସିଛି । ତା’ ହାତରେ ଯେବେ ଠେଙ୍ଗାଟା ନ ଥାନ୍ତା ତେବେ ହୁଏତ କହିବି ଦେଇଥାନ୍ତା । ସୋନସୀର ମନେହେଲା ତାକୁ ଅନେକ ଥର ଦେଖିଛି ।

ସୋନସୀ ତା'ର ଚିରା ଜାମା ତ ଛୁଞ୍ଚି ସୂତା ଧରି ଆସିଥିଲା । ସୋନସୀ ଦୂରରେ ଗୋଟିଏ ପଥର ଉପରେ ବସି ଜାମା ସିଲେଇ କରୁଥିଲା । ହାତୀକୁ ଚାହୁଁ ଚାହୁଁ ତାର ଛୋଟୁ କଥା ମନେ ପଡ଼ିଗଲା । ସେ ତ ବେଶ୍ ଦାୟିତ୍ୱପୂର୍ଣ୍ଣ ଭାବେ ହାତୀ ଦେଖିବାର କର୍ତ୍ତବ୍ୟ କରୁଥିଲା । ଦେଖିବା ଭିନ୍ନ ସେ ବା ଆଉ କଣ କରିପାରିଥାନ୍ତା ।

ଖାଲି ସମୟରେ ତା'ର ଘର କଥା ବହୁତ ମନେ ପଡ଼ିଯାଏ । ସ୍ମରଣ ମଧ୍ୟରେ ତା'ର ନିଜର ବାପା ରଘୁବର ପ୍ରସାଦଙ୍କ ବାପାଙ୍କ ପରି ଦିଶନ୍ତି । ସେ ନିଜର ମା'କୁ ମନେପକାଏ ଏବଂ ରଘୁବର ପ୍ରସାଦଙ୍କ ମା'କୁ କଳ୍ପନାରେ ଦେଖେ । ସ୍ୱପ୍ନରେ ଏଠାକାର ନିମ୍ବଗଛ ପାଖରେ ବାପଘରର ସଜନା ଗଛ ଦେଖେ । ବାପଘରର ଅଗଣା ଉପରେ ଶଶୁର ଘର ବଖୁରିକିଆ ମଝିଘର ଥାଏ ଯେଉଠିକି ରଘୁବର ପ୍ରସାଦ ଓ ଛୋଟୁଙ୍କର ଜନ୍ମ ହୋଇଥିଲା । ବାପଘର ଅଗଣାରେ ଯେଉଁ ଜହ୍ନିଗଛର ଲତା ଥିଲା ତାହା ଶାଶୁ ଘରର ଛାତ ଉପରେ ଫଳି ବିଛେଇ ହୋଇ ରହିଥାଏ । ନିଜ ଭିତର ଦୃଷ୍ଟିରେ ସେ ଦେଖେ ସେଇ ଲତାର ଜହ୍ନି ନେଇ ସେ ରଘୁବର ପ୍ରସାଦଙ୍କ ପାଇଁ ତରକାରି ରାନ୍ଧୁଛି । ଦି ପହର ବେଳେ ଚେଇଁଗଲେ ସମସ୍ତଙ୍କର କଥା ମନେପଡ଼େ । ଯେବେ ନିଦରେ ଶୋଇଥାଏ ସେ ନିଜେ ସ୍ମୃତି ଭିତରକୁ ଚାଲିଥାଏ । ନିଦରେ ଥିଲେ ତା'ର ମନେ ପଡ଼େନା ଯେ ନିଦରେ ସେ ସ୍ମୃତିକୁ ପାଇଯାଏ । ଅଧା ନିଜ ଭିତରେ ତାକୁ ପତ୍ର ଲାଗେ ଯେ ତାକୁ ପ୍ରସୂତୀଶଶଳା ଯିବାକୁ ହେବ ଏବଂ ଏବେ ବି ତା'ର ଜିନିଷ ସଜିଲ ହୋଇନାହିଁ । ସେ ଶୋଇଥାଉ କି ଚେଇଁଥାଉ, ସେଠି ସଂସାର ଭିତରେ ଯୋଉଯାକେ ତା'ର ହାତ ପାଏ ସେଠାଯାକେ ନିଜ ହାତରେ ଓ ଯେଉଁଠି ନପାଏ ବଖାରାରେ ତାକୁ ମନେ ମନେ ସଜାଡୁଥାଏ । ଗାଁର ଘରର ମଝିଆ ବାହାଘର ପରେ ତାକୁ ରଘୁବର ପ୍ରସାଦଙ୍କ ସାଙ୍ଗରେ ବସାଇ ଦିଆଯାଇଥିଲା । ସେହି ମଝିଘରର ଭିତର ଦରଜାରେ ଶିକୁଳି ନ ଥିଲା । ଦୁହିଁଙ୍କ ଭିତରେ ସଙ୍କୋଚର ଏକ ମଜବୁତ ପାଚେରୀ ରହିଥିଲା । ସେହି ପାଚେରୀର ସିନ୍ଧିକଟା ଗଳିବାଟେ ପରସ୍ପରକୁ ଅଣ୍ଡାଳି ସେମାନେ ପରସ୍ପରର ସ୍ପର୍ଶକୁ ଚୋରାଉଥିଲେ । ସେ ସ୍ପର୍ଶର ଅଜଣା ସୁଖ ଏପରି ଥିଲା ଯାହା ଆଉ କାହାରି ପରି ନୁହେଁ । ସୋନସୀକୁ ମଝି ଘରକୁ ନେଇ ଯିବାବେଳେ ରଘୁବର ପ୍ରସାଦଙ୍କର ମାଆ କହିଥିଲେ ଯେ ଦରଜା ଭିତରେ ଶିକୁଳି ନାହିଁ କିନ୍ତୁ ସେ ବାହାରୁ ଶିକୁଳି ଲଗାଇ ଦେବେ । ସୋନସୀ ସେହି ରାତିଠାରୁ କହିବ କହିବ ହୋଇ ଏଯାକେ କଥାଟା କହିପାରିନାହିଁ ।

ଜାମାର ସିଲେଇ କେବେଠାରୁ ସରିଯାଇଛି । ହାତୀର ପେଟ ବି ପୂରି ଯାଇଥିବ । ସେ ଉଠିକରି ଘରକୁ ଆସିଲା । ଏହା ଦେଖି ସେ ଗୋଟିଏ ଛୋଟ ଝିଅ ଭଳିଆ ମୁରୁକି ହସିଥିଲା ।

ବିଭାଗାଧ୍ୟକ୍ଷ ପ୍ରିନ୍ସିପାଲଙ୍କୁ କହିଥିଲେ, ଯେ ସାଧୁ ରଘୁବର ପ୍ରସାଦଙ୍କ ଘର ଆଗରେ ହାତୀକୁ ଲାବାରିସ କରି ଛାଡ଼ିଯାଇଛି ।

''ଲାଓ୍ୱାରିସ୍ ସାଇକେଲ ରଖିଥିଲେ ହାତୀଠାରୁ ତାଙ୍କୁ ଆଗରୁ ମୁକ୍ତି ମିଳିଯାଇଥାନ୍ତା ।'' ପ୍ରିନ୍ସିପାଲ କହିଲେ ।

''ଆଜ୍ଞା ହଁ '', ବିଭାଗାଧ୍ୟକ୍ଷ କହିଲେ ।

''ରଘୁବର ପ୍ରସାଦଙ୍କୁ କହିବା ଯେ ସେ ଯାଇ ହାତୀର ରିପୋର୍ଟ ଲେଖାନ୍ତୁ । ଆଉ ଯେତେବେଳେ ହାତୀର ରିପୋର୍ଟ ଲେଖାଇବେ ସେତେବେଳେ ସାଇକେଲ୍‌ର ବି ରିପୋର୍ଟ ଲେଖାଇଦେବେ ।''

''କଲେଜରେ ଛଡ଼ା ହୋଇଥିବା ସାଇକେଲ୍‌ଠାରୁ ରଘୁବର ପ୍ରସାଦଙ୍କୁ ଅଲଗା ରଖାଯିବା ଉଚିତ ।''

''ହଁ, ଠିକ୍ କହିଛ ।'' ପ୍ରିନ୍ସିପାଲ୍ କହିଲେ ।

''ଅଫିସର ବାବୁ ଯାଇ ସାଇକେଲ୍‌ର ରିପୋର୍ଟ ଲେଖାଇଦେବ ।''

''ଆଉ ଅଲଗା ଅଲଗା ରିପୋର୍ଟ ଲେଖାଇ ଦିଅନ୍ତୁ ।''

''ରଘୁବର ପ୍ରସାଦ ହାତୀକୁ ଲାଓ୍ୱାରିସ୍ ବୋଲି ମାନୁନାହାନ୍ତି ।''

''କାହିଁକି ?''

''ତାଙ୍କର ଶେଷ କଥା ଯେ ହାତୀ ସାଧୁର ଏବଂ ଏକଥା ସମସ୍ତେ ଜାଣନ୍ତି ।''

''ସେ ତ ହାତୀକୁ ଲାଓ୍ୱାରିସ୍ କରି ଛାଡ଼ିଦେଇଛି ।''

''ସାଇକେଲ୍‌ର କିଏ ମାଲିକ ତାହା ଜଣା ନାହିଁ । ସାଧୁ ହାତୀକୁ ରଘୁବର ପ୍ରସାଦଙ୍କ ବିଶ୍ୱାସ ଉପରେ ଛାଡ଼ି ଯାଇଛି । ଏ ପରି ସେ କହୁଛନ୍ତି ।''

'' ଠକି କରି ଛାଡ଼ି ଦେଇଛି ।''

''ରଘୁବର ପ୍ରସାଦ ଅଡୁଆରେ ପଡ଼ିଗଲେ ।''

''ତାଙ୍କୁ ସାହାଯ୍ୟ କରିବା ଦରକାର ।''

''ରଘୁବର ପ୍ରସାଦ ହାତୀକୁ ଦେଖା ଚାହାଁ କରିବା ସକାଶେ ଆଜି ବି ଦରଖାସ୍ତ ଦେଇଥିଲେ ।'' କିନ୍ତୁ ମୁଁ ଚିରି ଦେଲି । ହାତୀଟା ରଘୁବର ପ୍ରସାଦଙ୍କର ଦାୟିତ୍ୱ କିପରି ହୋଇଗଲା ଏକଥା ମୁଁ ବୁଝି ପାରୁନାହିଁ ।''

''ପଚାରିବା ଉଚିତ୍ ନଥିଲା ।''

''ରଘୁବର ପ୍ରସାଦ କହିଲେ ଯେ ହାତୀ ଗୋଟିଏ ଜୀବ । ସେ କଲେଜକୁ ତା' ଉପରେ ବି ଯିବା ଆସିବା କରିଛନ୍ତି ।''

''ରଘୁବର ପ୍ରସାଦଙ୍କୁ ଡକାଇ ପଠାନ୍ତୁ ତାଙ୍କରି ସାଥିରେ କଥା ହେବା ।''

ରଘୁବର ପ୍ରସାଦ ଅଧା ଦିନର ଛୁଟିର ଦରଖାସ୍ତ ବିଭାଗାଧ୍ୟକ୍ଷଙ୍କର ଟେବୁଲ ଉପରେ ଥୋଇ ଚାଲିଯାଇଛନ୍ତି । ବିଭାଗାଧ୍ୟକ୍ଷ ଦରଖାସ୍ତ ଧରି ପ୍ରିନ୍ସିପାଲଙ୍କ ରୁମ୍‌କୁ ଆସି କହିଲେ, ''ରଘୁବର ପ୍ରସାଦ ଅଧାଦିନର ଛୁଟିର ଦରଖାସ୍ତ ଦେଇ ଘରକୁ ଚାଲିଗଲେଣି । ଏ ଦରଖାସ୍ତ କ'ଣ ହେବ ?''

''ରଘୁବର ପ୍ରସାଦଙ୍କ ଦରଖାସ୍ତ ତ ଆପଣ ଚିରି ଦିଅନ୍ତି ।'' ପ୍ରିନ୍ସିପାଲ କହିଲେ ।

''ଆଜ୍ଞା ହଁ ।''

ଦରଖାସ୍ତକୁ ସେ ଚିରିଦେଲେ । କାଗଜ ଫୋପାଡ଼ିବାର ଟୋକେଇ ବିଭାଗାଧ୍ୟକ୍ଷଙ୍କ ଆଡେ ରହିଥିଲା । ମଝିରେ ଟେବୁଲ ଥିଲା । ''ଆଣନ୍ତୁ, ମୋତେ ଦିଅନ୍ତୁ ।'' ପ୍ରିନ୍ସିପାଲ ହାତ ବଢ଼ାଇବାରୁ ବିଭାଗାଧ୍ୟକ୍ଷ ଛିଣ୍ଡା କାଗଜ ଖଣ୍ଡମାନଙ୍କୁ ଧରାଇଲେ । ତାକୁ ଟୋକେଇରେ ପକେଇ ଦେଇ ସେ

କାମରେ ଲାଗିଗଲେ । ଫେରିଆସି ବିଭାଗାଧ୍ୟକ୍ଷ ବି ନିଜ କାମରେ ମନ ଦେଲେ । ତାଙ୍କୁ ରଘୁବର ପ୍ରସାଦଙ୍କ କ୍ଲାସ ବି ନେବାକୁ ଅଛି ।

ରଘୁବର ପ୍ରସାଦଙ୍କୁ ରାସ୍ତାରେ ପହଞ୍ଚିବା ମାତ୍ରେ ଟେମ୍ପୋ ମିଳିଯାଇଥିଲା । ଟେମ୍ପୋରେ ଜଣେ ବୁଢ଼ା ଥିଲା ଓ ପାଞ୍ଚଜଣ ମାଇପି ଥିଲେ । ଚାରି ପାଞ୍ଚଟା ଟୋକେଇରେ ଟେମ୍ପୋ ଭର୍ତ୍ତି, ଖାଲି ତଳେ ଗୋଡ଼ ରଖିବାକୁ ଟିକିଏ ନାକୁରୁ ଜାଗା । ଟୋକେଇଗୁଡ଼ାକରେ କଲରା ଭର୍ତ୍ତି ହୋଇଛି । ଗୋଟିଏ ଆଲୁମିନିୟମ୍ ଡବାରେ ଦୁଧ ଥିଲା ଯେ ସେଇଟା ବୁନ୍ଦା ବୁନ୍ଦା କରି ଉଚ୍ଛୁଳୁଥିଲା । ସେ ଡବାଟି ବୁଢ଼ାର । ଘରେ ଜଲଦି ପହଞ୍ଚିବାର ଥିଲା ବୋଲି ରଘୁବର ପ୍ରସାଦଙ୍କୁ ସେ ଟେମ୍ପୋରେ ବସିବାକୁ ପଡ଼ିଲା । ଫେରିବା ବେଳେ ଯାହା ଦୃଶ୍ୟ ଦେଖିବାକୁ ମିଳେ ତାହା ପ୍ରତି ତାଙ୍କର ମନଧ୍ୟାନ କମ୍ ଥିଲା । ଏତିକି ଖାସ୍ ମନେ ଥିଲା ଯେ ସେ ଏବେ ଘର ପାଖରେ ପହଞ୍ଚିଗଲେଣି । ବର୍ତ୍ତମାନ ହାତୀ ଯୋଗୁରୁ ତାଙ୍କର ଦୃଷ୍ଟି ବାହାରକୁ ଥିଲା । ଏହି ଧ୍ୟାନ ମଧ୍ୟରେ ସେ ଟେମ୍ପୋର ଦୁଇ କଡ଼ର ଦୃଶ୍ୟଗୁଡ଼ିକୁ ଦେଖିବାକୁ କଷ୍ଟକର ମଣୁଥିଲେ ।

ଟେମ୍ପୋରୁ ଓହ୍ଲାଇବା ମାତ୍ରେ ସେ ଦଉଡ଼ି ଗଲେ । ଯେତେବେଳେ ସେ ନିମ୍ବଗଛ ମୂଳେ ହାତୀ ଠିଆ ହୋଇଥିବାର ଦେଖି ପାରିଲେ ତେବେ ଯାଇ ଧୀରେ ସୁସ୍ଥେ ଚାଲିଲେ । ସୋନସୀ ଦରଜା ପାଖରେ ବସିଛି ଓ ଚାଉଳ ବାଛୁଛି । ସୋନସୀକୁ ରଘୁବର ପ୍ରସାଦଙ୍କର ଆସିବାଟା ଜଣା ନାହିଁ । ଆସିବାର ସମ୍ଭାବନା ବି ଜଣା ନାହିଁ । ସେ ଜଲ୍‌ଦି ଫେରି ଆସିବାର ଖୁସିକୁ ସୋନସୀ ପାଖରେ ନିଜର ପହଞ୍ଚିବା ଆଗରୁ ପହଞ୍ଚାଇ ଦେବାକୁ ଚାହିଁଲେ । ''ସୋନସୀ'' ସେ ଡାକିଲେ, ''ସୋନସୀ'' ବୋଲି ପୁଣି ପାଟି କଲେ । ସୋନସୀ ତାଙ୍କର ପହିଲା ଡାକଟା ବି ଶୁଣି ନେଇଛି । ଅପ୍ରତ୍ୟାଶିତ ଖୁସିରେ ସେ ଉଠି ଠିଆ ହୋଇଗଲା । ''ହଁ,'' ଟିକିଏ ରହି ସେ କହିଲା ଏତିକି ଠିକ୍ କରିବାକୁ ଯେ ସେ ରଘୁବର ପ୍ରସାଦଙ୍କ ପାଖକୁ ଦଉଡ଼ିଯିବ କି ନାହିଁ, ସେ ଟିକେ ଇତସ୍ତତଃ କରୁଥିଲା । ଇତସ୍ତତଃ କରିବାର ବିଳମ୍ବ ସକାଶେ ସେ 'ହଁ' ବୋଲି କହୁଥିଲା ଯେ ଘର ପହଞ୍ଚିବା ଆଗରୁ ତା'ର 'ହଁ'ଟା ରଘୁବର ପ୍ରସାଦଙ୍କ ପାଖରେ ପହଞ୍ଚିଯାଉ । ଦୁଇ ପଡ଼ିଆ ଘରେ ତାଲା ବନ୍ଦ ଥିବାରୁ ପାଖ ଆଖ ତାଙ୍କର ଖୋଲା ଖୋଲି ଓ ନିର୍ଜନ ଥିଲା ।

ହାତୀ ବି ରଘୁବର ପ୍ରସାଦଙ୍କ କଣ୍ଠ ଶୁଣିଥିବ । ସେତେବେଳେ ରଘୁବର ପ୍ରସାଦଙ୍କ ଦୃଷ୍ଟି ଗଳି ଉପରେ ପଡ଼ିଲା । ଗଳିରୁ ସାଧୁ ଜଣେ ଲୋକର ଆଶ୍ରା ଦେଇ ଆସୁଥିବାର ଦିଶିଲା । ଏ ଥିଲା ରଘୁବର ପ୍ରସାଦଙ୍କ ଆଶାର ବିପରୀତ କଥା । ସେ ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇଗଲେ । ସୋନସୀ ମଧ୍ୟ ଚାଉଳର ଥାଳି ଧରି ତାଙ୍କ ପାଖେ ପହଞ୍ଚିଯାଇଛି । ଗଳି ସାମନାରେ ଦୁହେଁ ଠିଆ ହୋଇଥିଲେ । ସାଧୁ ସୋନସୀକୁ ହାତ ଯୋଡ଼ି 'ପ୍ରଣାମ' ବୋଲି କହିଲା ।

''ରାତିରେ ଯେତେବେଳେ ଫେରିଲି ସେତେବେଳେ ଦେହ ବହୁତ ଖରାପ ଥିଲା । ଘରେ ମୁଣ୍ଡ ବୁଲାଇ ପଡ଼ିଗଲି । ଅଚେତ ହୋଇ ପଡ଼ିରହିଲି । ହାତୀ ନେଇ ଚିନ୍ତା ଥିଲା ।'' ''ଯେ କହିବାରୁ ମୁଁ ହାତୀକୁ ଆଣି ଦେଇଯାଇଥିଲି । ତା'ପରେ ଯାଙ୍କୁ କହୁଥିଲି ଯେ ହାତୀ ଭଲ ଅଛି । ଚିନ୍ତା କରିବାର କିଛି ନାହିଁ ।'' ସାଧୁର ସେ ଲୋକଟି କହିଲା ।

''ହାତୀକୁ ମୁଠିଏ ଚାଉଳ ଦେବ କି ?'' ସାଧୁ ସୋନସୀକୁ ପଚାରିଲେ । ସୋନସୀ ଥାଳିକୁ ସାମନାକୁ ବଢ଼ାଇ ଦେଲା ।

''ଦେଇ ଦିଅ'' ରଘୁବର ପ୍ରସାଦ କହିଲେ । ମୁଠିଏ ଚାଉଳ ନେଇ ସାଧୁ ହାତୀର ମୁହଁରେ ପକାଇ ଦେଲା ।

''ଏଇଲେ ଦିହ ଭଲ ଅଛି ?'' ସୋନସୀ ପଚାରିଲା ।

''ହଁ,'' ମୁହଁକୁ ପୋତି ସାଧୁ କହିଲା । ସାଧୁ ଲଜ୍ଜିତ ହେଉଥିଲା ଯେ ସେ ହାତୀକୁ ଛାଡ଼ି ଦେଇ ଯିବାର ଅପରାଧୀ ହୋଇଛି । ସେ ହାତୀରେ ବସି ଯିବାକୁ ପ୍ରସ୍ତୁତ ହେଲା । ତାକୁ ଶୀଘ୍ର ହାତୀ ନେଇଯିବାକୁ ବସିଲା ।

''ଚାହା ପିଇ ସାରି ଯିବ ।'' ସୋନସୀ କହିଲା ।

''ଚାହା ତ ଦେହକୁ କ୍ଷତି କରିବ ।'' ସାଧୁର ସାଥୀ କହିଲା ।

''ବିଶ୍ରାମ କର, ପାଣି ପିଇ ଦେବ ।'' ରଘୁବର ପ୍ରସାଦ କହିଲେ ।

''ଏଇଲେ ଦିହ ଭଲ ଅଛି ।'' ସାଧୁ କହିଲା । ସାଧୁ ହାତୀରେ ବସି ଚାଲିଗଲା । ହାତୀ ଧୀରେ ଧୀରେ ଯାଉଥିଲା । ସାଧୁର ସାଥୀ ମଣିଷ ବି ଯିବାକୁ ବାହାରିଥିବା ଦେଖି ରଘୁବର ପ୍ରସାଦ ପଚାରିଲେ ''ଆପଣ କ'ଣ ସାଧୁର ଚିକିତ୍ସା କରନ୍ତି ?''

''ନାଇଁ, ମୋର ବାପା ଜଣେ ବୈଦ୍ୟ ।''

''ଚାହା ପିଇବେ ?''

''ନାଇଁ ଚାହା କ୍ଷତିକାରକ ।'' କହି ସେ ଚାଲିଗଲା ।

ସୋନସୀ ଓ ରଘୁବର ପ୍ରସାଦ ଧୀରେ ଧୀରେ ଘରକୁ ଯାଉଥାନ୍ତି । ଚାରିପାଦର ଦୂରତ୍ୱ ବାହାରର ପୂରା ବାହାରକୁ ଫେରାଉଥାଏ ଯେ ତାଙ୍କ ଘରଟା ଶେଷ ନିର୍ଜନତାରେ ଥିଲା । ବଖରା ଭିତରେ ବି ଏତେ ନିର୍ଜନତା ଏକାଠି ହୋଇଯାଇଥିଲା ଯେ କେବେଠୁ କ୍ଷଣ କ୍ଷଣ କରି ଜମା କରାଯାଇଛି ଯେମିତି । ଏହି ନିର୍ଜନତାକୁ ଦୁହେଁ ମିଶି ଏକାଠି ପାଇବାକୁ ଚାହୁଁଥିଲେ । ଏଇଟା ଏକୁଟିଆର ନିର୍ଜନତା ନ ଥିଲା । ଏକା ସାଙ୍ଗରେ ନିର୍ଜନତା ଥିଲା । ତେଣୁ ଦୁହେଁ ସାଙ୍ଗ ହୋଇ ଯାଉଥିଲେ । ରଘୁବର ପ୍ରସାଦ ଦରଜା ବନ୍ଦ କଲେ କିନ୍ତୁ ସେ ଭିତର ପଟର ଶିକୁଳି ଦେବାକୁ ଭୁଲିଗଲେ । ସୋନସୀର ବି ମନେ ନଥିଲା । ନିର୍ଜନତା ପାଇବାର ତରବର ଥିଲା । ଯଦ୍ୟପି ରଘୁବର ପ୍ରସାଦ ଶିକୁଳି ଦେବାକୁ ଭୁଲିଯାଇଥିଲେ, ତଥାପି ଦରଜା ବନ୍ଦ ହେବା ମାତ୍ରେ ସେ ଘର ସମେତ ଅନ୍ୟମାନଙ୍କ ଲାଗି ଅଦୃଶ୍ୟ ହୋଇଗଲେ । ଘର ଭିତରେ ଏତେ ନିର୍ଜନତାରୁ ଗୋଟିଏ ମୁହୂର୍ତ୍ତକୁ ବି ସେ ଛାଡ଼ିବାକୁ ଚାହୁଁ ନଥିଲେ । ବଖରା ଭିତରର ଗୋଟିଏ ଫୁଲ କଢ଼ି ସେ ବଗିଚାରେ ସବୁଯାକ କଢ଼ିକୁ ତୋଳି ଆଣିବାକୁ ଚାହୁଁଥିଲେ ଯେମିତି ସୋନସୀ ତାକୁ ସବୁ ଗୁନ୍ଥିବ ଓ ସେ ସୋନସୀକୁ ତହିଁରେ ସଜାଇବେ । ରଘୁବର ପ୍ରସାଦ ଓ ସୋନସୀ ପ୍ରେମ ଲାଗି ସମୟ ପାଉଥିଲେ । ସୋନସୀ ଗୋଟିଏ ଗୋଟିଏ କ୍ଷଣକୁ ନେଇ ଗୁନ୍ଥେ ଓ ରଘୁବର ପ୍ରସାଦ ସୋନସୀର ଅଙ୍ଗ ଅଙ୍ଗ ନିର୍ବସ୍ତ୍ର ଦେହକୁ ଅଳଙ୍କୃତ କରୁଥାନ୍ତି । ସୋନସୀ

ପୂରା ଅଳଙ୍କୃତ ହୋଇ ବାହାରିଥିଲା । ରଘୁବର ପ୍ରସାଦ କିଛି କହୁଥିଲା କିନ୍ତୁ ସୋନସୀ ତାଙ୍କୁ କଳ୍ପବୃକ୍ଷ ଭଳି ଶୁଣୁଥାଏ । ବୃକ୍ଷକୁ ଶୁଣିବା ଭିତରେ ସେ ବୃକ୍ଷର ଡାଳକୁ ପ୍ରତ୍ୟେକ ପତ୍ରକୁ ସବୁଜ ଫଳମାନଙ୍କୁ ଶୁଣିଲା । ଗୋଟିଏ କଞ୍ଚାଫଳକୁ ସେ ପାଚିବାର ଶୁଣିଲା । ସେ ଫଳର ମିଠା ହେବା ମଧ୍ୟ ଶୁଣିଲା। ଗୋଟିଏ ଫଳକୁ ସେ କଞ୍ଚା ଅଁଳାପରି ଖଟା ଶୁଣିଲା । ଫଳ ପାଚିଯିବା ପରେ ସେ ବଉଳର ମାଦକକୁ ଶୁଣିଲା । ସେ ଥରକୁ ଥର ଫୁଲ ଫୁଟିବାର ଓ ଫଳ ପାଚିବାର ଗନ୍ଧ ଶୁଣୁଥାଏ । ଶୁଣିବାର ମେଳା ବସିଥାଏ ନିଜ ଦେହ ଭିତରେ ସେ ଗଛର ଚେରକୁ ଶୁଣିଲା । ଶେଷକୁ ସେ ଗଛର ମଞ୍ଜିକୁ ଶୁଣିଲା ।

''ଶୁଣ'' ସୋନସୀ କହିଲା

''କ'ଣ ହେଲା ?''

''ମଝିଘରର ଓ ଦରଜାରେ ଭିତରୁ ଶିକୁଳି ଲାଗିନଥିଲା'' ସୋନସୀ କହିଲା । ଏହାଶୁଣି ରଘୁବର ପ୍ରସାଦ ଚମକି ପଡ଼ିଲେ । ସେ ଦେଖିଲେ ଯେ ଦରଜା ଭିତରେ ଶିକୁଳି ଲାଗିନାହିଁ । ଝରକା ବି ଖୋଲା ଅଛି । ଖଟିଆର ଆଡୁଆଳ ଅଛି । ରଘୁବର ପ୍ରସାଦ ଦରଜାକୁ ଭିତରୁ ବନ୍ଦ କଲେ । ଦୁହେଁ ପୁଣି ଶୋଇଗଲେ । ଶୋଇବା ପରେ ପରେ ରଘୁବର ପ୍ରସାଦ 'ହଁ' କହିଲେ । ସୋନସୀ କେବେଠୁ କହିଥିବା କଥାର ଏଇଟା ଉତ୍ତର ହିଁ ଥିଲା ।

'' ମା ତ ଆଗରୁ କହି ଦେଇଥିଲେ । କହିଥିଲେ ଯେ ସେ ବାହାରୁ ଶିକୁଳି ଲଗେଇ ଦେବେ ।''

''ତମେ ମୋତେ ଆଗରୁ କାହିଁକି କହିଲ ନାହିଁ ?''

''କେମିତି କହିଥାନ୍ତି ?''

''ତମେ କଣ 'ଛପାକ୍' ବୋଲି ଶବ୍ଦ ଶୁଣିଥିଲ ?'' ସୋନସୀ ପୁଣି ପଚାରିଲା ।

''ଆଗେ ପୋଖରୀ ଚୁପ୍ ଥିଲା, ତା'ପରେ 'ଛପାକ୍ !' ବୋଲି କହିଲା । ପୋଖରୀ ମାଛ ଡେଇଁବା ଖବର କହିଥିବ ।''

କିନ୍ତୁ ମୋତେ ତ ପୋଖରୀରେ ଛାଇ ପଡ଼ିବାର ଶବ୍ଦ ଲଗାତର ଶୁଣାଯାଉଥିଲା ।

ସୋନସୀ ତନ୍ଦ୍ରା ପ୍ରାୟ ଅବସ୍ଥାରେ ଥିବା ରଘୁବର ପ୍ରସାଦଙ୍କ କାନ ପାଖରେ କଡ଼ ଲେଉଟାଇ କହିଲା ।

''ଗୋଟିଏ ପକ୍ଷୀ ପୋଖରୀ ଉପରେ ଉଡୁଥିବ ।''

''ନାଇଁ ।'' ଲଗାତର ଛାଇ ପଡ଼ିବାର ଶବ୍ଦ । ରଘୁବର ପ୍ରସାଦ ଭାବିବାକୁ ଲାଗିଲେ ।

''ପୋଖରୀ ଉପରେ ଅଟକିଥିବା ବାଦଲ ହୋଇଥିବ ।'' ସେ କହିଲା ।

''ନାଇଁ ।''

''କଢ଼ର ଗଛ ହେବ ।''

''ନାଇଁ ।''

''ଖରାର ଛାଇ ହୋଇଥିବ ।''

''ନାଇଁ ।''

''ପୋଖରୀ ଭିତରୁ ବାହାରିଥିବା ପଡରର ଛାଇ ?

''ନାଇଁ ।

''କୂଳର ଗଛର ଚଢ଼େଇ ବସା, ତହିଁରେ ଚଢ଼େଇଙ୍କର ଅଣ୍ଡା, ଛୁଆଙ୍କର 'ଚିଁ ଚିଁ' ଛାୟାର ଶବ୍ଦ ।''

''ହୋଇପାରେ ।''

''ପଦ୍ମ ଫୁଲର ।''

''ହୋଇପାରେ ।'' ସୋନସୀ ଆସ୍ତେ କରି କହିଲା ।

ସୋନସୀ ଭିତରେ ଗୋଟିଏ ପୋଖରୀ ଥିଲା । ତହିଁରେ ରଘୁବର ପ୍ରସାଦଙ୍କର ଛାଇ ପଡ଼ିଥିବ । ଏହାରି ଭିତରେ ନିଦ ଆସିଗଲା । ରଘୁବର ପ୍ରସାଦ ବି ଅନ୍ୟ କିଛି ଭାବିପାରିବା ଆଗରୁ ସେ ବି ଶୋଇଗଲେ । ଧୀରେ ଧୀରେ ବଖରାର ଆଲୁଅ କମ୍ ହୋଇଯାଇଥାଏ । ଏ ବି ହୋଇପାରେ ଯେ ବଖରା ଭିତରେ ପୋଖରୀର ଛାଇମାନେ ଗୋଟି ଗୋଟି କରି ଏଇଥିପାଇଁ ଓହ୍ଲାଇ ଆସୁଥିଲେ ଯେ ତାଙ୍କ ବିଷୟରେ ଆଲୋଚନା କାହିଁକି ବନ୍ଦ ହୋଇଗଲା । ତେଣୁ ଯେତେବେଳେ ପଦ୍ମ ଫୁଲର ଛାଇ ସେଠାକୁ ଆସିଲା ଯେପରି ପଦ୍ମ ଭଳି ଆଲୋକ କମ୍ ହୋଇଥିବ । ଚଢ଼େଇଙ୍କ ଛୁଆଙ୍କର, ଚଢ଼େଇ ବସାକୁ ଫେରିବାର ବେଳ ଥିଲା । ତେଣୁ ଚିଁ ଚିଁର ଶବ୍ଦ ବହୁତ ଥିଲା । ତା'ପରେ ଗଛର, ପୁଣି ସୂର୍ଯ୍ୟ ବୁଡ଼ିଯିବା ପରେ ଗଭୀର ହେଉଥିବା ଆକାଶର । ଯେତେବେଳେ ତାଙ୍କର ନିଦ ଭାଙ୍ଗିଲା ସେତେବେଳେ ପୋଖରୀରେ ଚନ୍ଦ୍ରମାର ଛାଇ ପଡ଼ିଲା । ହୁଏତ ସେଇ 'ଛପାକ୍'ର ଶବ୍ଦରେ ତାଙ୍କର ନିଦ ଭାଙ୍ଗି ଯାଇଥିବ ।

''ବହୁତ ଡେରି ହୋଇଗଲା ।''ସୋନସୀ ଉଠୁ ଉଠୁ କହିଲେ ।

''ତା'ପରେ ଉ ଫଳା ଗୁଡ଼ିଆ ବହୁତ ଦିନରୁ ଦେଖା ଦେଇନି । ଆଉ ପିଲା ବି ଦେଖା ଯାଉନାହାନ୍ତି ।''

''ଖଟିଆର ଉହାଡ଼ ହୋଇଯାଇଛି । ଡୁଙ୍ଗିଲେ ଆମେ ଦେଖାଯାଉନାହୁଁ ତେଣୁ ସେମାନେ ବି ଡୁଙ୍ଗିବା ବନ୍ଦ କରି ଦେଇଛନ୍ତି । ମୁଁ ଖଟିଆକୁ ପକେଇ ଦେଉଛି ।'' ଏହା କହି ସୋନସୀ ଖଟିଆକୁ ପକାଇ ଦେଲା ।

ସକାଳୁ ସୋନସୀ ପ୍ରଥମେ ଉଠିଥିଲା । ରଘୁବର ପ୍ରସାଦ ଶୋଇଥିଲେ । ସୋନସୀ କାନ୍ଥ ଆଡ଼କୁ ଥିଲା । ରଘୁବର ପ୍ରସାଦଙ୍କ ଗୋଡ଼ଆଡ଼ ଦେଇ ସେ ଖଟିଆରୁ ଓହ୍ଲାଇଲା । ସୋନସୀର ଆଖି ଝରକା ଉପରେ ପଡ଼ିଲା ଯେ ଗୋଟିଏ ଶ୍ୟାମଳି ଛୋଟ ଝିଅ ଠିଆ ହୋଇଥିଲା । ସୋନସୀ ତାକୁ ମୁରୁକି ହସି ଚାହିଁଲା । ଯାଉ ଯାଉ ସେ ଝିଅର ମଥାରେ ହାତ ବୁଲାଇ ଦେଲା । ସେ ଝାଡୁ ଦେଉଥିବାବେଳେ ଶୁଣିଲା 'ଗ'ରେ ଉଫଳା ଗୁଡ଼ିଆ । ସୋନସୀ ଉଙ୍କିମାରି ଚାହିଁଲା ଗୁଡ଼ିଆ ସିଲଟ ଓ ପଟ ନେଇ ଝରକା ତଳକୁ ପିଠି ଆଉଜାଇ ବସିଛି । ସୋନସୀ ରଘୁବର ପ୍ରସାଦଙ୍କୁ ଉଠାଇଲା, ଉଠ ଗୁଡ଼ିଆ

ଆସି ଗଲାଣି । ଆଖି ମଳି ମଳି ରଘୁବର ପ୍ରସାଦ ଉଠିଲେ ଓ ସିଧା ଝରକା ପାଖକୁ ଚାଲିଗଲେ । ଭିଡ଼ି ମୋଡ଼ି ହୋଇ ଉଙ୍କିମାରି ପଚାରିଲେ, 'ବ'ରେ ହ୍ରସ୍ୱ ଉ ଫଳା 'ବୁଢ଼ିଆ ?'

''ଯହିଁ, 'ଗ'ରେ ହ୍ରସ୍ୱ ଉ ଫଳା 'ଗୁଡ଼ିଆ'' ଗୁଡ଼ିଆ ଜୋର ଦେଇ କହିଲା । ରଘୁବର ପ୍ରସାଦ ଲୋଟାରେ ପାଣି ନେଇ ମୁହଁ ଧୋଇବାକୁ ପଦାକୁ ଚାଲିଗଲେ । ପଦାକୁ ଯାଇ ସେ ଦୂର ଦୂର ଜାଗାକୁ ଏକଡ଼ ସେକଡ଼ ଚାହିଁଲେ । ସେ ଉପର ଆଡ଼େ ଗଛ ଓ ଆକାଶ ଆଡ଼େ ବି ଚାହିଁଲେ । ଏଗୁଡ଼ିକ ଦେଖି ସାରିବା ପରେ ଆଉ ଅଧିକ କିଛି ଦିଶିଯିବାର ଆଶଙ୍କାରୁ ମୁକ୍ତ ଥିଲେ । ସେ ମୁହଁ ଧୋଇଲେ ।

ଖାଲି ଲୋଟାକୁ ଭିତର ପଟେ କବାଟ ପାଖରେ ଥୋଇ ଗଛ ପାଖକୁ ଗଲେ । ଏହି ଦିନାରମ୍ଭ ବେଳେ ବିଡ଼ି ପିଇବା ପିଲାଟା ସେଠି ଅଛି ନା ନାହିଁ ? ସେ ତା'ର ଉପସ୍ଥିତି ପରୀକ୍ଷା କରିନେବାକୁ ଚାହୁଁଥିଲେ । ଯାହା ଦିଶୁଥିଲା ତାହା ଦିନର ଆରମ୍ଭର ଜାଣି ଭର୍ତ୍ତିବେଳ ଥିଲା । ସେ ତା'ର ହାଜିରା ଦେଉଥିଲା । ସେ ଯେମିତି ସୂର୍ଯ୍ୟ ବୋଲି କହିଲେ ସେ ଉପସ୍ଥିତ ବୋଲି କହିବା ରଘୁବର ପ୍ରସାଦଙ୍କ ଉପରେ ସକାଳର ଖରା ପଡ଼ିବା ଥିଲା । ଉପର ଆଡ଼େ ଶିରୀଷ ଗଛ ଆଡ଼କୁ ସେ ମଥା ଟେକି ଉଙ୍କିମାରିଲେ । ଟୋକା ସେଠି ନାହିଁ । ସେ ଫେରିବାକୁ ଯାଉଛନ୍ତି, ସେତେବେଳେ ଶୁଣିଲେ 'ମୁଁ ଏଇଠି ଅଛି ।'' ରଘୁବର ପ୍ରସାଦ ପାଖ ଆଖର ଗଛକୁ ଚାହିଁଲେ । ''ସେଠି ନାହିଁ ଏଠି ।'' ତାଙ୍କର ମନେ ହେଲା ଗୁଲର ଗଛର ଡାକ ଆସୁଛି । ତଥାପି ସେ ପଚାରିଲେ ''କୋଉଠି ଅଛ ?''

''ଗୁଲର ଗଛରେ ।''

ରଘୁବର ପ୍ରସାଦ ରାସ୍ତା ତଳକୁ ଓହ୍ଲାଇ ଗୁଲର ଗଛ ପାଖକୁ ଗଲେ । ସେ ଗଛରେ ଟୋକା ଲୁଚିଥିଲା ।

''ତୁ ଗଛ ବଦଳାଇ ଦେଇଛୁ ?'' ରଘୁବର ପ୍ରସାଦ ଏପରି ପଚାରିଲେ ଯେମିତି ସେ ତାର ବେଞ୍ଚ ବଦଳାଇ ଦେଇଛି ।

''ହଁ ।'' ଟୋକା କହିଲା । ଦିନାରମ୍ଭର ଶ୍ରେଣୀ ଭିତରେ ସେ ହାଜିରା ନେଉଥିଲେ । କିନ୍ତୁ ଏଇଟା ସମସ୍ତଙ୍କୁ ନିଜର ଉପସ୍ଥିତି ଦେବା ପରି ବି ତ ଥିଲା ।

''ଗଛ କାହିଁକି ବଦଳାଇଲୁ ?'' ସେ ପଚାରିଲେ ।

''ଏ ଗଛଟା ଭଲ ।'' ଟୋକା କହିଲା ।

''ଆଗ ଗଛରେ କ'ଣ ଖରାପ ଥିଲା ?'' ରଘୁବର ପ୍ରସାଦ ଏପରି ଭାବରେ କହିଲେ ଯେପରି ଏମିତି ତ ବଡ଼ ଲୋକସାନ ହୋଇଯିବ । ଗୋଟିଏ ଗଛ ନଷ୍ଟ ହୋଇଗଲା ନା ।

''ଗଛ ସମସ୍ତଙ୍କର ଜଣା ହୋଇଯାଇଥିଲା । ଉଚ୍ଚା ବି ଥିଲା ।''

''ଏ ଗଛ ତ ମୋତେ ଜଣା ହୋଇଗଲା ।''

''କାହାରିକି କହିବ ନାହିଁ । ପରେ ଆଉ କେଉଁ ଗଛକୁ ଚାଲିଯିବି ।''

''ମୁଁ କାହାରିକି କହିବି ନାହିଁ । ମୁଁ ଗଛ କଥା କାହାରିକି କହି ନାହିଁ । କିନ୍ତୁ ଏ ଗଛକୁ କେବେ ବଦଳାଇବୁ ନାହିଁ । ତୋର ଠିକଣା ଆମକୁ ଜଣା ଥିବା ଦରକାର । ଗଛ ବଦଳାଇଲେ କହିଦେବୁ ।''

''କହି ଦେବି ।'' ଟୋକା କହିଲା ।

କେଡ଼େ ଭଲ କଥା ହେଲା ଯେ ଏହି ଦିନାରମ୍ଭ ବେଳେ ମାଆ ଓ ଛୋଟୁ ରିକ୍ସାରେ ଆସୁଥିବାର ଦେଖାଗଲା । ମାଆ ଓ ଛୋଟୁ ରଘୁବର ପ୍ରସାଦଙ୍କୁ ଦେଖି ନାହାନ୍ତି । ଗଛବାଲା ଟୋକା ମାଆ ଓ ଛୋଟୁଙ୍କୁ ଚିହ୍ନିନେବ । ଯଦି ରଘୁବର ପ୍ରସାଦ ତା' ସଙ୍ଗେ କଥାବାର୍ତ୍ତା କରୁ ନ ଥାନ୍ତେ ତେବେ ସେ ଆଗରୁ ତାଙ୍କୁ କହିଦେଇଥାନ୍ତେ ରଘୁବର ପ୍ରସାଦ ରିକ୍ସା ଆଡ଼କୁ ଧାଇଁଲେ । ସେ ରିକ୍ସା ପାଖରେ ପହଞ୍ଚିବା ଆଗରୁ ରିକ୍ସା ତାଙ୍କ ଘର ସାମନାରେ ଠିଆ ହୋଇଯାଇଥିଲା । ସୋନସୀକୁ ବି ଜଣା ନଥିଲା । ଛୋଟୁ ଗୋଟିଏ ଝୁଲାମୁଣି ନେଇ ଓହ୍ଲାଇଲା । ଛୋଟୁ ତନ୍ଦ୍ରାରେ ଥିବାପରି ଲାଗୁଥିଲା । ବସ୍‌ରେ ଢୁଳେଇ କରି ଆସିଥିବ । ତା'ପରେ ମା ଓହ୍ଲାଇଲା । ଛୋଟୁ ରଘୁବର ପ୍ରସାଦଙ୍କୁ ଦେଖିଦେଲା । ରଘୁବର ପ୍ରସାଦ ରିକ୍ସା ପାଖରେ ପହଞ୍ଚିବା ମାତ୍ରକେ ସୋନସୀକୁ ପାଟିକରି ଶୁଣାଇଲେ । ''ମାଆ ଆସିଲେଣି ।'' ଯେତେବେଳେ ରଘୁବର ପ୍ରସାଦ ମାଆର ପାଦ ଛୁଉଁଥିଲେ ଠିକ୍ ସେତିକିବେଳେ ଛୋଟୁ ରଘୁବର ପ୍ରସାଦଙ୍କ ପାଦ ଛୁଇଁଲା । ଛୋଟୁର ମଥା ରଘୁବର ପ୍ରସାଦଙ୍କ ମଥାରେ ଧକ୍କା ଖାଇଗଲା । ରଘୁବର ପ୍ରସାଦ ଛୋଟୁକୁ କହିଲେ ପୁଣିଥରେ ମୁଣ୍ଡ ବଜା, ନ ହେଲେ ଶିଙ୍ଗ ବାହାରିବ। ରଘୁବର ପ୍ରସାଦ ବେଶ୍ ଦିହକୁ ଲାଗିକରି ଠିଆ ହୋଇଗଲେ । ଛୋଟୁ କେମିତି ମୁଣ୍ଡ ବଜାଇଥାନ୍ତା । ଡେଇଁ ପଡ଼ି ସେ ରଘୁବର ପ୍ରସାଦଙ୍କ କାନ୍ଧରେ ଝୁଲି ପଡ଼ିଲା । ତଥାପି ରଘୁବର ପ୍ରସାଦଙ୍କ ମୁଣ୍ଡରେ ନିଜର ମୁଣ୍ଡ ଲଗାଇବା ସମ୍ଭବ ହେଲାନାହିଁ । ଯେତେବେଳେ ରଘୁବର ପ୍ରସାଦ ନଇଁ ପଡ଼ିଲେ ତେବେ ଯାଇ ଛୋଟୁ ମଥାକୁ ଛୁଆଁଇ ପାରିଲା । ରିକ୍ସାବାଲାକୁ ପଇସା ଦେଉ ଦେଉ ମାଆ ରଘୁବର ପ୍ରସାଦଙ୍କୁ ଆଶୀର୍ବାଦ ଦେଇଥିଲା । ରଘୁବର ପ୍ରସାଦ ବି ଛୋଟୁକୁ 'ସୁଖୀ ହୁଅ'ର ଆଶୀର୍ବାଦ ଦେଇଥିଲେ । ମାଆ ପହଞ୍ଚିଯାଇ ଆଶୀର୍ବାଦ ଲାଗି ଯାହା କହିଥିଲା ସେସବୁ ବିଡ଼ି ବିଡ଼ି କରି କହୁଥିଲା । ରଘୁବର ପ୍ରସାଦ ଶୁଣି ପାରିନଥିଲେ । ତାଙ୍କର ଧ୍ୟାନ ବି ସେଆଡ଼େ ନଥିଲା । ସୋନସୀ ଆସି ଯାଇଥିଲା । ସୋନସୀ ମଥାକୁ କାନିରେ ଗୋଡ଼ାଇ ନେଇଥିଲା । ସେ ମାଆର ପାଦ ଛୁଇଁଲା ମାଆ ତା' ମଥାରେ ହାତ ଦେଇ ମନେ ମନେ ଆଶୀର୍ବାଦ କଲା । ହୁଏତ ସୋନସୀ ଶୁଣିଥିବ । ମାଆ ଲେଙ୍ଗଡ଼େଇ ଚାଲୁଥିଲା । ମାଆ ଦେଖିଥିଲା ବ୍ୟାଟେରୀର କୁଣ୍ଡରେ ଲଗା ଯାଇଥିବା ଗଛ ଯାକ ଗହଳ ହୋଇଯାଇଛନ୍ତି । ତୁଳସୀ କମ୍ ବଢ଼ିଥିଲା ।

''ତୁଳସୀ ବଢ଼ିନାହିଁ'' ବୋହୂ ! ପାଣି ଦବା ତ ଆଉ ବନ୍ଦ ହେଉନାହିଁ ?''

''ନିୟମିତ ଦିଏ ମା । ମୁଁ ଯଦି ନ ଦିଏ ତେବେ...

''ରଘୁବର ପାଣି ଦେଇ ଦିଏ, ନା ?''

''ହଁ ମା ।

''ଏବେ କେବେ ପକେଇବ ?'' ସୋନସୀକୁ ଛୋଟ ଝିଅ ପରି ଆଲିଙ୍ଗନ କରି ମାଆ

ପଚାରିଲା ।

''ଏଇଲେ ସମୟ ଅଛି ।'' ଆସ୍ତେକରି ସୋନସୀ କହିଲା ।

''ବାପା ଆସିଲେ ନାହିଁ ? ସୋନସୀ ପଚାରିଲା ।

''ସେଠାକାର କାମଦାମ ବି ଦେଖିବାକୁ ହୁଏ । ତୁମମାନଙ୍କୁ ଦେଖିବାକୁ ମନ ହେଲା । ଛୋଟୁକୁ ବାପା ପଠେଇଲେ । ଦି' ଦିନ ରହିକରି ଚାଲିଯିବୁ । ତୁମର ପିଲାପିଲି ହୋଇଗଲେ ତାଙ୍କର କାମ ଛାଡ଼ି ଆସିବାକୁ ମନ ହେବ ।

''ମା' କମ୍‌ରେ ସପ୍ତାହେ ଖଣ୍ଡେ ରହିଯାନ୍ତୁ ।

''ନାଇଁ ତୋ ବାପାଙ୍କର ଖାଇବା ପିଇବାରେ କଷ୍ଟ ହେବ । ଚୁଲିରେ କରାଇ ଖାଇବେ । ଛୋଟୁର ପଢ଼ାପଢ଼ି ହେଉ ନାହିଁ । ଇସ୍କୁଲ ବନ୍ଦ ।''

''କ'ଣ ପାଇଁ ବନ୍ଦ ?'' ରଘୁବର ପ୍ରସାଦ ପଚାରିଲେ ।

''ଚାରି ପାଞ୍ଚ ଦିନ ହେଲା ରୋଜ ଗୋଟେ ଦିଟା ହେଲା ସାପ ବାହାରୁଥିଲା । ଗୋଟିଏ ପିଲାର ବସ୍ତାନି ଭିତରେ ପଶି ବନ୍ଦୀ ହୋଇ ଯାଇଥିଲା । ଶେଷକୁ ମାଷ୍ଟର ଛୁଟି କରିଦେଲେ ।

ସୋନସୀ ଅଖା ବିଛାଇ ଦେଇଥିଲା । ତହିଁରେ ଶୋଉ ଶୋଉ ମାଆ ପଚାରିଲା, ''ହାତୀ ଆସିଛି ନା ? କାଲି ପରଦିନ ଛୋଟୁକୁ ତହିଁରେ ନିଶ୍ଚୟ ବସାଇଦେବ । ସେହି ଲୋଭରେ ସେ ମୋ ସାଙ୍ଗରେ ଆସିଛି ।''

''କେବେ କେମିତି ଆସେ । ସାଧୁର ଦିହ ଖରାପ । ଦି ଚାରି ଦିନ ନ ଆସିପାରେ ।'' ରଘୁବର ପ୍ରସାଦ କହିଲେ ।

''ଦୁଇ ପଡ଼ିଶା ଘରେ ତାଲା ପଡ଼ିଛି ?''

''ହଁ କେତେ ଦିନରୁ ନାହାନ୍ତି ।'' ସୋନସୀ କହିଲା ।

''ଆସି ଯାଇଥିଲେ ତାଙ୍କ ସାଙ୍ଗରେ ବି ଭେଟ ହୋଇଯାଇଥାନ୍ତା ।''

''ଯାହା ଯାହା ପଚାରିବାର ଥିଲା ମାଆ ସବୁକଥା ପଚାରି ନେଇଛି ।'' ସୋନସୀ ଚାହା କରି ନେଇ ଆସିଲା । ଚାହା ପିଇସାରି ମାଆ ପୁଣି ଶୋଇଗଲା । ସୋନସୀ ମାଆ ପାଖରେ ବସିଗଲା । ମାଆ ଛୋଟେଇ ଚାଲୁଛ କାହିଁକି ? ଗୋଡ଼ ବିନ୍ଧୁଛି କି ? ଚିପି ଦିଏ ?'' ସୋନସୀ ଆସ୍ତେ ଆସ୍ତେ ଗୋଡ଼ ଚିପିଦେଲା । କିନ୍ତୁ ମାଆ ମନା କରି ଦେଲା ।

''ସକାଳଠୁଁ ଗୋଡ଼ ଚିପାଇବାକୁ ଭଲ ଲାଗେନା । ଆଣ୍ଠୁର ଦରଜ । ସେଠୁ ଗାଧୋଇ ପାଧୋଇ ବାହାରିଥିଲି । ରାତି ତିନିଟା ବେଳୁ ଗାଧୋଇ ପଡ଼ିଥିଲି । ପହିଲି ବସ୍ ଧରିବାକୁ ଥିଲା । ଛୋଟୁ ବି ଗାଧୋଇଛି, ତୁ ରୋଷେଇ ବାସର ଯୋଗାଡ଼ କର । ମୁଁ କିଛି ବେଳ ଶୋଇବି । ବୋହୂ, ଝୁଲା ମୁଣିରେ ଦୁଇଟା ଛୋଟ ଲାଉ ଅଛି, ତରକାରୀ ଲାଗି ବାହାର କରିନବୁ ।

ସୋନସୀର ମନେ ପଡ଼ିଗଲା । ସେ କନା ପୁଡ଼ିଆରେ ବନ୍ଧା ଥିବା ସୁନାର କଡ଼ା ନେଇ ଆସିଲା । ମାଆ ପାଖରେ ବସିପଡ଼ିଲା ।

''ମା, ଶୋଇ ପଡ଼ିଲେଣି କି ?'' ସୋନସୀ ପଚାରିଲା ।

''ନାଇଁ, କ'ଣ ହେଲା ?''

ସୋନସୀ ମାଆ ହାତରେ ସେ କଡ଼ା ପିନ୍ଧାଇ ଦେଲା ।

''କ'ଣ ସେ ?''

''କଡ଼ା, ବୁଢ଼ୀ ମାଆ ଦେଇଥିଲା ।'' ମାଆ କଡ଼ାକୁ ଦେଖିଲା । ସେ ଖୁବ୍ ଖୁସି ହୋଇଗଲା ।

''ଭଲ ଜିନିଷ ଯତ୍ନ କରି ରଖିଦେ ।''

ସୋନସୀ କଡ଼ାକୁ ପୁଟୁଳି ବାନ୍ଧି କ୍ୟାଲେଣ୍ଡରର କଣ୍ଟାରେ ପୁଣି ଟାଙ୍ଗିବାକୁ ଯାଉଥିଲା। କିନ୍ତୁ ମା' ଯତ୍ନରେ ରଖିବାକୁ କହିଥିଲା । ତେଣୁ ବାକ୍ସରେ ରଖି ଦେଲା ।

''ବୋହୂ ଚୁଡ଼ିକୁ ପିନ୍ଧିନେ ମୁଁ ଦେଖିବି ।'' ମାଆ ଶୋଇ ଶୋଇ ପୁଣି କହିଲା । ସୋନସୀ ଚୁଡ଼ି ପିନ୍ଧିନେଲା ।

''ପିନ୍ଧିଲୁ ?'' କିଛି ସମୟ ପରେ ମାଆ ପଚାରିଲା

''ହଁ ମାଆ ।''

''ତେବେ ଦେଖେଇଲୁନି କାହିଁକି ?'' ମାଆ କହିଲା । ସେ ମାଆ ପାଖରେ ଠିଆ ହୋଇ ଗଲା । ମାଆ ଉଠିକରି ବସିପଡ଼ିଲା । ସୋନସୀର ଦୁଇ ହାତକୁ ଧରି ମାଆ କଡ଼ା ଦେଖିଲା । କଡ଼ା ଛଡ଼ା ବି ଆଉ ଯାହା ସବୁ ମୁଣ୍ଡ ପାନିଆ ଆଦି ସାଜସଜ୍ଜା ଥିଲା ମାଆ ଦେଖିଲା । ସୂର୍ଯ୍ୟ ପ୍ରତିଦିନ ଉଦୟ ହୁଏ । ଆଜି ବି ଉଦୟ ହୋଇଛି । ସୋନସୀ ନିତ୍ୟ ନୂତନ ସକାଳ ଥିଲା । ଆଜିର ସକାଳେ ବି ସେ ନିତ୍ୟ ନୂତନ ସକାଳ ଥିଲା ।

''ଆଉ କଡ଼ାକୁ ଖୋଲିବୁ ନାହିଁ । ପିନ୍ଧିଥିବୁ ।'' ମାଆ କହିଲା ।

ଝରକା ବାଟେ ହୋମର ବାସ୍ନା ଆସୁଥିଲା । ଯୋଉଠି ବରଗଛ ଅଛି ସେଇଆଡୁ ପବନ ଆସୁଥିବ । ପର୍ବ ପର୍ବାଣିର ପବନ ଥିଲା ।

''ହୋମର ବାସ୍ନା ଆସୁଛି ।'' ମାଆ କହିଲା । ନିଃଶ୍ୱାସ ନେଇ ସୋନସୀ କହିଲା । ''ହଁ ମା'' । ରଘୁବର ପ୍ରସାଦ ବି ଲମ୍ୱା ନିଃଶ୍ୱାସ ନେଲା । ଛୋଟୁ ସେଠାକୁ ଆସି ଯାଇଥିଲା। ଦେଖା ଦେଖି କରି ସେ ବି ଗଭୀର ନିଃଶ୍ୱାସ ନେଲା ।

''ଆଜି କ'ଣ କିଛି ପର୍ବ ଅଛି କି ବୋହୂ । କ୍ୟାଲେଣ୍ଡର ଦେଖ ତ !''

''ନାହିଁ ମା ।'' ସୋନସୀ କ୍ୟାଲେଣ୍ଡର ଦେଖି ସାରି କହିଲା ।

ହୋମର ବାସ୍ନାରୁ ରଘୁବର ପ୍ରସାଦଙ୍କର ବରଗଛ କଥା ମନେ ପଡ଼ିଲା । ସୋନସୀର ବି ମନେ ପଡ଼ିଗଲା ଯେ ବରଗଛ ପାଖରେ ଶିବଲିଙ୍ଗ ପରି ଗଛଟିଏ ଅଛି ।

ଛୋଟୁ ଓ ରଘୁବର ପ୍ରସାଦ ଖାଇ ନେଇଥିଲେ । ଛୋଟୁ ପଢ଼ାକୁ ଚାଲିଗଲା । ବେମାରୀ ପରେ ବି ସାଧୁ ଆସି ଯାଇଛି । ସାଧୁ ଛୋଟୁକୁ ହାତୀ ଉପରେ ବସାଇ ନେଇଛି । ଯେତେବେଳେ କଲେଜ ଯିବା ଲାଗି ରଘୁବର ପ୍ରସାଦ ବାହାରିଲେ ତାଙ୍କ ପଛେ ପଛେ ସୋନସୀ ଆସିଲା । ଛୋଟୁ ହାତୀରୁ

ଓହ୍ଲାଇଲା । ରଘୁବର ପ୍ରସାଦ ହାତୀ ଉପରେ ବସିଗଲେ । ସେ ସାଧୁକୁ କହିଲେ, ''ନ ଆସିଥିଲେ ଭଲ ହୋଇଥାନ୍ତା । ମୁଁ ଟେମ୍ପୋରେ ବସି ଚାଲିଯାଇଥାନ୍ତି ।''

ହାତୀକୁ ଗାଧୋଇ ପାଧୋଇ ସଫା କରିବାକୁ ବାହାରିବା ଦରକାର ଥିଲା । ସେଇ ବାଟରେ ତ କଲେଜ ପଡ଼ିବ । ମୋ ଦେହ ଭଲ ଅଛି ।

ରଘୁବର ପ୍ରସାଦ ଓ ସୋନସୀ ମନଦେଇ ଶୁଣୁଥିଲେ ସାଧୁ ହାତୀକୁ ଉଠିବାକୁ ଓ ଚାଲିବାକୁ କ'ଣ କହୁଛି । ହାତୀ ଚାଲିଗଲା । ଛୋଟୁ କିଛି ବେଳ ସେଇଠି ଠିଆ ହୋଇ ରହିଲା । ସୋନସୀ ଭିତରକୁ ଚାଲିଯାଇଥିଲା ।

ସନ୍ଧ୍ୟାବେଳକୁ ରଘୁବର ପ୍ରସାଦ ଫେରିଲା ବେଳେ ସୋନସୀ ମାଆ ପାଖରେ ପଦାରେ ବସିଥିଲା । ସୋନସୀ ଚାହା ଲାଗି ଆଗରୁ ସବୁ ଯୋଗାଡ଼ କରି ରଖିଥିଲା । ହାତୀ ଆସିବା ଦେଖି ସେ ଯାଇ ଚାହା ବସାଇ ଆସିଲା । ମାଆ କହିଲା ଯେ ଚାହା ନ ପିଆଇ ସାଧୁକୁ ଯିବାକୁ ଦେବନାହିଁ । ରଘୁବର ପ୍ରସାଦ ଓହ୍ଲାଇଲେ । ଛୋଟୁ ପୁଣି ଥରେ ହାତୀରେ ବସିବାକୁ ଚାହୁଁଥିଲା । ରଘୁବର ପ୍ରସାଦ ମନା କରି ଦେଲେ । ମାଆ ସାଧୁକୁ ଚାହା ପିଇକରି ଯିବାକୁ କହିଲା । ସାଧୁ କିଛି ତରବର ହେଉଥିଲା । କିନ୍ତୁ ସୋନସୀ କହିଲା । ଚାହା ହୋଇଗଲାଣି । ସେ ଟିକିଏ ପରେ ଚାହା ନେଇ ଆସିଲା । ରଘୁବର ପ୍ରସାଦ ଓ ସାଧୁ ଚାହା ପିଇଲେ । ତା ପରେ ସାଧୁ ଚାଲିଗଲା ।

ରାତିରେ ଛୋଟୁ ଖିଆପିଆ ପରେ ଖଟିଆ ଉପରେ ଆଗରୁ ଶୋଇ ପଡ଼ିଥିଲା । ମାଆ କହିଲା । ''ଯାଅ ତୁମେ ଦୁହେଁ କୋଉଠି ବୁଲି ଆସ ।''

''ନାଇଁ ମାଆ ଯିବାକୁ ମନ ହେଉନାହିଁ ।'' ସୋନସୀ କହିଲା । ସୋନସୀ ମାଆ ପାଖରେ ଚଟାଣ ଉପରେ ବସିଥିଲା । ରଘୁବର ପ୍ରସାଦ ଖଟିଆ ଉପରେ ମାଆ ଆଖି ବୁଜି ପଡ଼ିଥିଲା । ଥକି ଯାଇଥିଲା । ରାତି ଦୁଇ ବା ତିନିଟାରେ ଉଠିଥିଲା । ଦି ପହର ବେଳେ ପାଞ୍ଚ ମିନିଟ ଲାଗି ଆଖି ବୁଜିଥିଲା । ସୋନସୀ ଓ ମାଆ ସାରା ଦିପହରରେ ଗପ ସପ କରିଥିଲେ ।

ରଘୁବର ପ୍ରସାଦ ଓ ସୋନସୀ ଚୁପ୍ ରହିଲେ । କିଛି ବେଳ କ୍ରମାଗତ ନୀରବତାରେ ସୋନସୀ ଉଠି ବତୀର ସୁଇଚ୍ ଦବାଇ ବତୀ ନିଭାଇଦେଲେ । ମାଆ ପାଖରେ ସୋନସୀ ଶୋଇଗଲା । ଦୁହେଁ ଚୁପ୍ ଥିଲେ । ତଥାପି ସୋନସୀର ମନେ ହେଲା ଯେ ରଘୁବର ପ୍ରସାଦ କହିଲେ, ''ତମର ଯିବାକୁ ମନ ନ ଥିଲା, କିନ୍ତୁ ମୋର ମନ ହେଉଥିଲା ।''

ସୋନସୀ କଡ଼ ଲେଉଟାଇବାରୁ ରଘୁବର ପ୍ରସାଦଙ୍କ ଆଡ଼କୁ ତା'ର ପିଠି ଥିଲା । ସୋନସୀର ନୀରବତାରେ ରଘୁବର ପ୍ରସାଦଙ୍କୁ ଶୁଣାଗଲା ''ମାଆକୁ ଏକୁଟିଆ ଛାଡ଼ିଦେଇ ଯିବାଟା ଠିକ୍ ହୋଇ ନଥାନ୍ତା ।'' ସୋନସୀ ଶୋଇ ପଡ଼ିଲା । ତଥାପି ଶୋଇବା ଭିତରେ ସେ ଶୁଣିଲା, ''ଏକୁଟିଆ କ'ଣ ? ଛୋଟୁ ତ ଥିଲା ''

ରଘୁବର ପ୍ରସାଦ ବି ଶୋଇଗଲେ । ତଥାପି ସେ ସୋନସୀକୁ କହିଲେ– ''ମାଆ ପାଖରେ ରହିଲେ ମାଆକୁ ଭଲ ଲାଗିବ ।''

''ଏଇଲେ କ'ଣ ତମେ ଉଠି ପାରିବ ।''

''ନାଇଁ ମୁଁ ଗଭୀର ନିଦରେ ଶୋଇଛି । ତମେ ଉଠେଇଲେ ଉଠି ପଡ଼ିବି ।''

''ମୁଁ ବି ଗଭୀର ନିଦରେ ଶୋଇଛି, ତମେ ଉଠେଇଲେ ଉଠି ପଡ଼ିବି ।''

''ତମେ ଉଠେଇ ଦିଅ ।''

''ମାଆ କାଳେ ଉଠି ପଡ଼ିବ ? ମୁଁ ଉଠାଇ ପାରିବି ନାହିଁ । ତମେଇ ଉଠାଇଦିଅ ।''

''ମୋତେ ଉଠାଇବାକୁ କାହିଁକି କହୁଛ ?''

ରାତିରେ ଯେତେବେଳେ ରଘୁବର ପ୍ରସାଦ ପାଣି ପିଇବାକୁ ଉଠିଲେ ସେତେବେଳେ ମାଆର ନିଦ ଭାଙ୍ଗିଗଲା ।

''ରଘୁବର ପ୍ରସାଦ କି ? ମତେ ବି ପାଣି ଦେ' ବାପା'' ମାଆ କହିଲା । ରଘୁବର ପ୍ରସାଦ ମାଆକୁ ପାଣି ଦେଲେ । ସୋନସୀ ଶୋଇଥିଲା । ରଘୁବର ପ୍ରସାଦ ଖଟିଆ ଉପରେ ଯାଇ ଶୋଇଗଲେ । ସେତେବେଳେ ମାଆ ପାଖରେ ଶୋଇଥିବା ଛୋଟୁ ନିଦରେ କହିଲା, ''ମାଆ ମୋର ମୁଣିଟା କାହିଁ ?'' ଛୋଟୁ ସ୍କୁଲ ଯିବାର ସ୍ୱପ୍ନ ଦେଖୁଥିଲା । ''ସକାଳେ ନେବୁ ଏଇଲେ ଶୋଇପଡ଼ ।''

ମାଆ ଦେଖିଲା ଯେ ଛୋଟୁର ଗୋଡ଼ ଖଟିଆରୁ ତଳେ ଝୁଲୁଛି । ଛୋଟୁର ଶୋଇବା ନେଇ ବିଡ଼ି ବିଡ଼ି କରି କହି ମାଆ ଉଠିଲେ । ଛୋଟୁ ପାଇଁ ଖଟିଆରେ ଜାଗା ନାହିଁ । ରଘୁବର ପ୍ରସାଦ କେଜାଣି କେମିତି ଶୁଏ ।

''ରଘୁବର ! ରଘୁବର ! ସେ କଡ଼କୁ ଘୁଞ୍ଚି ଶୋ'' ସେ ଜୋର୍‌ରେ ରଘୁବରକୁ ଘୁଞ୍ଚାଇ ଟିକିଏ ଜାଗା ଛୋଟୁ ଲାଗି କରିନେଲା । ଛୋଟୁର ସେଇ ଝୁଲିଥିବା ଗୋଡ଼କୁ ଖଟିଆ ଉପରେ ରଖିଦେଲା ପରେ ବି ଛୋଟୁ ତାକୁ ପୁଣି ଝୁଲାଇ ଦେଲା । ଏହାଠାରୁ ଭଲ ହୋଇଥାନ୍ତା ଯେବେ ଛୋଟୁ ତଳେ ଶୋଇଯାଇଥାନ୍ତା । ଖଟିଆରୁ କାଳେ ତଳେ ଆସି ପଡ଼ିଯିବ ବୋଲି ମାଆର ଚିନ୍ତା ହେଲା ।

''ଛୋଟୁ ତଳେ ଆସି ଶୋ । ତଳେ ଆସି ଶୋଇପଡ଼ ବାପା ।'' ମାଆ ଦୁଇ ତିନିଥର ଶୋଇବାକୁ କହିଲା । ଛୋଟୁ ଉଠିଲା ନାଇଁ । କିନ୍ତୁ ରଘୁବର ପ୍ରସାଦଙ୍କୁ ନିଦରେ ଲାଗୁଥିଲା ଯେ ମାଆ ତାକୁ ତଳେ ଶୋଇବାକୁ କହୁଛି । ସେ ଉଠିକରି ତଳେ ସୋନସୀ ପାଖରେ ଶୋଇଗଲେ । ମାଆ ''ଆରେ ! ଆରେ !'' ବୋଲି କହୁଥାଏ । ମାଆ ବୁଝିପାରିଲା ନାହିଁ ସେ କ'ଣ କରିବ । ଶେଷକୁ ହାରିକରି ସେ ଖଟିଆ ଉପରକୁ ଚାଲିଗଲା । ତା'ପରେ କାନ୍ଥକୁ ମୁହଁ କରି ଶୋଇଗଲା । ସୋନସୀ କୁଞ୍ଚିକାଞ୍ଚି ହୋଇ ଚେପଟି କରି ଶୋଇଥିଲା ଯେ କଡ଼ା ପିନ୍ଧା ହାତ ମାଆ ଦିହରେ ଯେମିତି ବାଜି ନଯାଏ । ଗଭୀର ନିଦ ଭିତରେ ସେ ଯେତେବେଳେ କଡ଼ ଲେଉଟାଏ, ସେଇ କଡ଼ା ଚୁଡ଼ି ପିନ୍ଧା ହାତ ରଘୁବର ପ୍ରସାଦଙ୍କ ମୁହଁ ଉପରେ ଲାଗିଗଲା । ସେ ଚମକି ପଡ଼ି ଉଠିବସିଲେ ।

''କେମିତି ଶୋଉଛ ?'' ସୋନସୀକୁ ଦେଖି ସେ କହିଲେ । କିନ୍ତୁ ସୋନସୀ ତାଙ୍କ ପାଖକୁ କେମିତି ଆସିଗଲା ? ସୋନସୀ ତ ମାଆଙ୍କ ପାଖରେ ଶୋଇଥିଲା । ପୁଣି ମାଆ ଖଟିଆ ଉପରେ ଶୋଇଛି । ତାଙ୍କର ମନେ ହେଲା ସେ ତଳେ ଛୋଟୁ ପାଖରେ ଶୋଇଥିଲେ । ସୋନସୀ ଖଟିଆରୁ

ଓହ୍ଲାଇ ତଳକୁ ଆସିଲା । ଛୋଟୁକୁ ମାଆ ପାଖରେ ଥାନ ଦେଖାଯାଇଥିବ । ସେ ମାଆ ପାଖକୁ ଚାଲିଗଲା । ସେ ସୋନସୀକୁ ଫୁସ୍ ଫୁସ୍ କରି ଉଠାଇଲେ ।

"ସୋନସୀ, ହେ ସୋନସୀ, ଉଠିଲ ।"

"କ'ଣ ହେଲା ?" ସୋନସୀ ଉଠି ବସିପଡ଼ିଲା ।

"ଆସ୍ତେ କହ । ତମେ ତ ମାଆ ପାଖରେ ଶୋଇଥିଲ । ଏଠି ମୋ ପାଖକୁ କେମିତି ଆସିଲ ।"

"ହଁ ! ମୁଁ ମାଆ ପାଖରେ ଶୋଇଥିଲି । ଛୋଟୁ କାହିଁ ଗଲା ?" ସୋନସୀ ଅବାକ୍ ହୋଇଗଲା ।

"ଛୋଟୁ ମାଆ ପାଖକୁ ଚାଲିଗଲା ।"

"ଏବେ କ'ଣ କରିବା ?" ସୋନସୀ କହିଲା ।

"ତୁମର କଡ଼ା ମୁହଁରେ ବାଜିଗଲା, ତେଣୁ ନିଦ ଭାଙ୍ଗିଗଲା । ନ ହେଲେ ସକାଳ ଯାକେ ଶୋଇରହିଥାନ୍ତେ ।"

"ପାଣି ପିଇବ ?" ଆସ୍ତେ କରି ସୋନସୀ ପଚାରିଲା ।

"ହଁ ପିଇଦେବି ।" ରଘୁବର ପ୍ରସାଦ ବସିପଡ଼ିଥିଲେ । ସେ କୁଣ୍ଡିରୁ ପାଣି ବାହାର କରି ଆଣିଲା । ତାର କଡ଼ାଯାକ ଛଡ଼ୀ ସାଙ୍ଗରେ କାଳେ ବାଜି ଶବ୍ଦ ହେବ ସେଥିପାଇଁ ସେ ଉପରକୁ ଟେକି ଦେଇଥିଲା ଯେ ହାତରେ କଷି ହୋଇ ରହିଯିବେ । ପାଣି ପିଇ ରଘୁବର ପ୍ରସାଦ ଶୋଇପଡ଼ିଲେ । "ତମେ ବି ଶୋଇଯାଅ ।"

"ମୁଁ ଶୋଇବିନି । ମାଆ ଦେଖିଲେ କ'ଣ ଭାବିବେ । କୋଉଠି ବାଜିଲା ?"

"ମଥାରେ ।" ସୋନସୀ ରଘୁବର ପ୍ରସାଦଙ୍କ ମଥାକୁ ଏପରି ଛୁଇଁଲା ଯେପରି ସ୍ପର୍ଶର ମଲମ ଲଗାଉଛି । ରଘୁବର ପ୍ରସାଦ ହାତକୁ ଦୂରେଇ ଦେଲେ ।

"ଦୂରେଇ କରି ଶୋଇଯିବା ।" ସୋନସୀ କହିଲା । ସେ ରଘୁବର ପ୍ରସାଦଙ୍କଠାରୁ ଦୂରକୁ ଘୁଞ୍ଚି ଶୋଇଗଲା । ରଘୁବର ପ୍ରସାଦ ଡେଙ୍ଗା ଥିଲେ । ସୋନସୀର ଗୋଡ଼ ସାଙ୍ଗରେ ସେ ନିଜ ଗୋଡ଼କୁ ଜାଣି ଶୁଣି ଛୁଆଁଇବାରୁ ସୋନସୀ ନିଜ ଗୋଡ଼ ଟାଣିନେଲା । ରଘୁବର ପ୍ରସାଦଙ୍କ ଟିକେ ଟିକେ ମନେ ହେଉଥିଲା ଯେ ସେ ହିଁ ଖଟିଆ ଉପରେ ଶୋଇଥିଲେ । ସେମିତି ହୋଇଥିଲେ ସୋନସୀ କହିଥାନ୍ତା ମା ଘୋର ନିଦରେ ଶୋଇଥିଲା । ରଘୁବର ପ୍ରସାଦ ଭାବୁଥିଲେ ଯେ ଯଦି ଲମ୍ବା ଚଉଡ଼ା ଜମି ଥାନ୍ତା ଓ ଦୁହେଁ ମାଟି ଉପରେ ଶୋଇଥାନ୍ତେ ତେବେ ବି ଏଇଭଳି ଲାଗିଥାନ୍ତା ଯେ ଦୁହେଁ ପାଖା ପାଖି ଶୋଇଛନ୍ତି । ସେ ଉତ୍ତରମେରୁ ପାଖରେ ହୋଇଥାନ୍ତୁ ଆଉ ସୋନସୀ ଦକ୍ଷିଣ ମେରୁ ପାଖରେ ଥାଉ । ଉତ୍ତରମେରୁ ଆଉ ଦକ୍ଷିଣମେରୁ ନିଜ ଭିନ୍ନ ଭିନ୍ନ ଖଟିଆ ହୋଇ ନପାରନ୍ତି । ଉତ୍ତର ମେରୁ ଓ ଦକ୍ଷିଣ ମେରୁ ମଝିରେ ଛୋଟୁକୁ ଶୁଆଇ ଦିଆ ହେଲେ ଭଲ ହେବ । ସେ ଉଠିଲେ ଓ ଛୋଟୁକୁ ଦୁଇ ହାତରେ ଟେକି ନେଲେ । ମଝିରେ ଛୋଟୁକୁ ଶୁଆଇ ଦେଲେ ।

"ତମେ ଇଚ୍ଛା ହେଲେ ମାଆ ପାଖରେ ଯାଇ ଶୋଇପଡ଼ ।" ଆସ୍ତେ କରି ସେ କହିଲେ । ସୋନସୀ ଅନ୍ଧାର ଭିତରେ ଆଖି ଖୋଲି ଦେଖୁଥାଏ ଝରକା ବାଟେ ଜହ୍ନ ଆଲୁଅ ଘର ଭିତରକୁ ଆସୁଥିଲା । ଛୋଟୁକୁ ସୋନସୀ ଚାଦର ଘୋଡ଼ାଇ ଦେଲା । କଡ଼ ଲେଉଟାଇବା ମାତ୍ରେ ରଘୁବର

ପ୍ରସାଦଙ୍କ ଗୋଡ଼ ସୋନସୀ ଦେହରେ ଛୁଇଁ ଗଲା । ସୋନସୀ ନିଜର ଗୋଡ଼ ଟାଣି ନେଲା ନାହିଁ । ରଘୁବର ପ୍ରସାଦଙ୍କର ନିଦ ଆସିଗଲା । ଦୁହେଁ ଶୋଇଗଲେ । ଶୋଇବା ଭିତରେ ସୋନସୀ ଶୁଣିଲା, ''ତମେ ଗୋଡ଼ ଟାଣିନେଲ ନାହିଁ ।'' ଶୋଇବା ଭିତରେ ରଘୁବର ପ୍ରସାଦ ଶୁଣିଲେ ''ହଁ, ଦୁହେଁ ଗଭୀରଠାରୁ ଗଭୀରତର ନିଦରେ ଶୋଇଥିଲେ ।''

ସକାଳେ ଯେତେବେଳେ ମାଆ ଚେଇଁଲା, ସେ ନିଜ ଛଡ଼ା ବାକି ସମସ୍ତଙ୍କୁ ଚଟାଣ ଉପରେ ଶୋଇଥିବାର ଦେଖିଲା । ସେ ଭାବିଲା ଆଜି ରାତିକୁ ଖଟିଆକୁ ରଖିଦେଇ ସମସ୍ତେ ଚଟାଣ ଉପରେ ଖୋଲା ଜାଗାରେ ଶୋଇଯାଇ ପାରିବେ । ମାଆର କାହାରିକି ଉଠାଇବାକୁ ମନ ହେଲା ନାହିଁ। ଯେତେବେଳେ ମନ ହେଉଛି ଶୋଇଥାନ୍ତୁ । ମାଆ ଉଠାଇନାହିଁ କିନ୍ତୁ ସକାଳର ଆଲୁଅ ସୋନସୀକୁ ଉଠାଇଲା । ସୋନସୀ ଉଠିବା ମାତ୍ରେ ମା' କଥା ଆରମ୍ଭ କଲା; ''ଛୋଟୁ ଖଟିଆରୁ ଗୋଡ଼ ଝୁଲାଇ ଶୁଏ । ଚଟାଣ ଉପରେ ଶୁଆଇବା ଲାଗି ତାକୁ ଯେତେ ଉଠାଇଲି ସେ କାହିଁକି ଉଠିବ ?'' ରଘୁ ଭାବିଲା ତାକୁ ଉଠାଯାଉଛି ସେ ଉଠିକରି ଚଟାଣରେ ଶୋଇଲା । ସୋନସୀ ଦୁଇ ହାତଦେଇ ସାମନା ପଟରୁ ବାଳକୁ ଏକାଠି କରି ଜୁଡ଼ା ବନାଉ ବନାଉ ହସି ଦେଇଥିଲା ।

''ଛୋଟୁ କେତେବେଳେ ଚଟାଣକୁ, ତଳକୁ ଆସିଲା ? ଖଟିଆରୁ ପଡ଼ି ନାହିଁ ତ ?''

ସୋନସୀ କିଛି କହିଲା ନାହିଁ ।

''ବୋହୂ ! ଛୋଟୁ ଖଟିଆରୁ ପଡ଼ି ନାଇଁ ତ ?''

''ପଡ଼ିନାହିଁ । ଇୟେ ଟେକିଆଣି ତଳେ ଶୁଆଇଥିଲେ'' ସୋନସୀ କହିଲା ।

''ହଉ ହଉ ହେଲା । ଖଟିଆ ଉପରେ ତାକୁ କାନ୍ଥ ପଟକୁ ଶୁଆଇବା ଉଚିତ । ତଳେ ପଡ଼ିବାର ଭୟ ରହିବନି । ରଘୁବରକୁ ଉଠାଇ ଦେ' ବୋହୂ । ଦୁହେଁ ମିଶି ପୋଖରୀରେ ଗାଧୋଇ ପାଧୋଇ ଆସିବ, ଛୋଟୁ ଉଠିଲେ ମୁଁ ଝାଡୁ ଦେଇଦେବି ।

''ହଉ ମୁଁ ରଘୁବରକୁ ଉଠାଇ ଦଉଛି ।'' ମାଆ ପୁଣି କହିଲା ଓ ରଘୁବରକୁ ଉଠାଇଦେଲା ।

ଝରକା ପାଖକୁ ପିଲାମାନେ ଆସିନାହାନ୍ତି । ତାଙ୍କର ଆସିବାର ବେଳ ଆହୁରି ହୋଇ ନାହିଁ । ସୋନସୀ ରଘୁବର ପ୍ରସାଦଙ୍କର ଲୁଗାପଟା ଧରିଥିଲା । ଦୁହେଁ ଝରକା ବାଟେ ଡେଇଁଗଲେ । ସୋନସୀ ଆଗ ଡେଇଁଥିଲା । ରଘୁବର ପ୍ରସାଦ ଏକପଦୀ ଉପରେ ସୋନସୀର ପଛେ ପଛେ ଚାଲୁଥାନ୍ତି । ସୋନସୀର ପଛେ ପଛେ ଚାଲିବାକୁ ତାଙ୍କୁ ଭଲ ଲାଗୁଥାଏ । ସୋନସୀ କୌଣସି ଦିଗକୁ ଯାଉ ନଥିଲା ତେଣୁ ମନେ ହେଉଥିଲା ଯେ ଦିଗମାନେ ସୋନସୀ ପଛେ ପଛେ ଚାଲି ଆସିଛନ୍ତି । କେବଳ ଗୋଟିଏ ଦିଗ ରଘୁବର ପ୍ରସାଦଙ୍କ ପାଇଁ ସାମନାରେ ଯାଉଥିବା ସୋନସୀ ଥିଲା । ସାମନାର ଓ ପାଖ ଆଖର ଦୃଶ୍ୟ ସୋନସୀ ପଛେ ପଛେ ଆସିବା ପାଇଁ ନିଜ ପାଳି ପାଇଁ ଠିଆ ହୋଇଥାନ୍ତି । ସୋନସୀ ଆଗକୁ ବାହାରି ଯିବା ପରେ ପରେ ସେଠାକାର ଜମି, ଗଛ ପତ୍ର ସୋନସୀର ପଛେ ପଛେ ଆସିଯାନ୍ତି । ଯେତେବେଳେ ଗୋଟିଏ ପୋଖରୀ ଯାହାକି ଧଳା ଜଇଁରେ ଭରା ଥିଲା ସେଇଟି ପଛକୁ ରହିଗଲା, ସେତେବେଳେ ରଘୁବର ପ୍ରସାଦ ପଚାରିଲେ, ''କେଉଁ ପୋଖରୀରେ ଗାଧୋଇବା ?''

''ଏଇ ପୋଖରୀରେ'' ସୋନସୀ କହିଲା । ପୋଖରୀ ସେଇଠି ଥିଲା । ସତେ ଯେମିତି ସୋନସୀ ସେଇଠି ଗାଧୋଇବ ଏପରି ଇଚ୍ଛା ସେ ପୋଖରୀ ରଖିଥିଲା, ସେହିଭଳି ବୁଝିବା ଉଚିତ ।

ରଘୁବର ପ୍ରସାଦ ଓ ସୋନସୀ ପୋଖରୀ କୂଳରେ ଗୋଟିଏ ପଥର ଉପରେ ଠିଆ ହୋଇ ରହିଲେ । ପୋଖରୀ ସେମାନଙ୍କ ଗୋଡ଼ ପାଖରେ ଅପେକ୍ଷା କରି ରହିଥିଲା । ପାଣିରେ ଗାର ଗାର ଭଳି କମ୍ପନ ଥିଲା । ସେମାନେ ଡେଇଁବେ ବୋଲି ଆଶା କରି ପୋଖରୀର ଶିହରଣ ଥିଲା । ଅଥବା ତାଙ୍କର ଛାୟା ପଡ଼ିବାର 'ଛପାକ୍' ହେତୁରୁ ସେଇ ଗାର ପରି ଲହରୀମାନ ଉଠିଥିବ । ସେତିକି ବେଳେ ଆଖି ପଛୁଳାକେ ଶାଢ଼ି ବାହାର କରି ସୋନସୀ ପୋଖରୀରେ ଶୋଇଲା ଭଙ୍ଗୀରେ ଡେଇଁପଡ଼ିଲା ଏବଂ ପାଣିରେ ଶୋଇଲା ଭଳି 'ଛପାକ୍' ହେଲା ଯେମିତିକି ପାଣିର ବିଛଣା ଥିଲା । ସୋନସୀ ପଛେ ପଛେ ରଘୁବର ପ୍ରସାଦ ପଡ଼ିଗଲା ପରି ଡେଇଁ ପଡ଼ିଲେ ଯେମିତି କି ସୋନସୀ ସାଙ୍ଗରେ କେଉଁ ଅଦୃଶ୍ୟ ଡୋରିରେ ବନ୍ଧାଅଛନ୍ତି । ସୋନସୀ ଡେଇଁବା ଫଳରେ ସେ ଝିଙ୍କି ହୋଇଗଲେ ।

''ଆରେ ଲୁଗାପଟା ଖୋଲିଲ ନାହିଁ ।'' ପହଁରି ପହଁରି ସୋନସୀ ପଚାରିଲା । ଦୁହେଁ ପାଖାପାଖି ଆରାମରେ ପହଁରୁଥିଲେ । ବେଶୀ ଗଭୀର ପାଣିରେ ନ ଥିଲେ । ସ୍ୱଚ୍ଛ ଗଭୀର ପାଣିର ଲମ୍ବା ଚଉଡ଼ା ବିସ୍ତୃତ ପୋଖରୀ ଥିଲା । ନିଃଶ୍ୱାସ ରୋକି ଦୁହେଁ ବୁଡ଼ ପକାଇଲେ । ବୁଡ଼ ପକାଇବା ପରେ ପଦାକୁ ବାହାରି ହୋମର ବାସ୍ନା ଭର୍ତ୍ତି ପବନର ଗଭୀର ନିଃଶ୍ୱାସ ନିଅନ୍ତି । ପବନର ସୁଗନ୍ଧର ଅନୁଭବ ତାଙ୍କର ପାଣି ଭିତରେ ନିଃଶ୍ୱାସ ବନ୍ଦ ଥିବା ବେଳେ ବି ହେଉଥାଏ ।

ଗାଧୋଇ ପାଧୋଇ ଦୁହେଁ ବରଗଛ ଆଡ଼କୁ ଗଲେ । ସେଠି ଶିବଲିଙ୍ଗ ଭଳି ଗଛ ଥିଲା । ଗଛର ମଥାରେ ଲତାମାନଙ୍କର ଡାଳ ବାହାରିଥିଲା । ସେହି ଲତାମାନଙ୍କରେ ନାନା ରଙ୍ଗର ଫୁଲ ଥିଲା । ହୁଏତ ଗଛରେ ଯେତେବେଳେ ଫୁଲ ଦିଆଯାଏ ସେସବୁ ଗଛ ହୋଇ ଜନ୍ମିଯାଉଥିବେ । ଏହା ବି ସମ୍ଭବ ଯେ ଭିନ୍ନ ଭିନ୍ନ ସମୟରେ ଫୁଲର ରଙ୍ଗ ବଦଳି ଯାଉଥାଏ । ବର୍ତ୍ତମାନ ଧଳା ରଙ୍ଗର ଫୁଲ ଥିଲା । ଫୁଲ ଗଛ ଉପରେ ମଉଳି ପୂର୍ବରୁ ପଡ଼ି ଯାଇ ତଳେ ବିଛେଇ ହୋଇଯାଉଥିଲା । ଯାହା ପାଖରେ ସେ ଫୁଲ ଥିବ ତାହାରି ଲାଗି ସମର୍ପିତ ଭଳି ଲାଗେ । ସୋନସୀ ପାଖରେ ବହୁତ ଫୁଲ ପଡ଼ିଥାଏ । ସୋନସୀ ଫୁଲ ବାଛିଲା ଓ କାନିରେ ପୁଡ଼ିଆରେ ଅଣ୍ଟାରେ ଖୋସିଦେଲା ।

ବାଟରେ ବସି ବସି ପହଁରାରେ ଓଳାଉଥିବା ବୁଢ଼ୀ ମାଆ ସାଙ୍ଗେ ଭେଟ ହେଲା । ବୁଢ଼ୀ ମାଆକୁ ଦେଖି ରଘୁବର ପ୍ରସାଦଙ୍କର ମନେ ପଡ଼ିଗଲା ଯେ ସୋନସୀ ହାତରେ ତ କଡ଼ା ନାହିଁ । ''କଡ଼ା ନାହିଁ ?''

''ତମର ଲୁଗା ବାହାର କଲାବେଳେ ମୁଁ ବାକ୍ସରେ ରଖିଦେଇଛି ।''

''ବୁଢ଼ୀ ମାଆ ଟିକେ ଆରାମ କର ।'' ସୋନସୀ କହିଲା । ବୁଢ଼ୀ ମାଆଠାରୁ ଝାଡୁ ନେଇ ସୋନସୀ ସେଠି ଝାଡୁ ଲଗାଇଲା । ଶୀଘ୍ର ଶୀଘ୍ର ସେ ପାଖ ଆଖ ପହଁରି ଦେଇଥିଲା ।

''ଥାଉ ଥାଉ । ଏତିକି ଜାଗା ବଳିଥିଲା ।'' ବୁଢ଼ୀ ମାଆ କହିଲା ।

''ଗାଧୁଆ ପାଧୁଆ ହୋଇଗଲାଣି ?'' ବୁଢ଼ୀ ମାଆ ପୁଣି ପଚାରିଲା ।

''ହଁ ମାଆ।'' ଦୁହେଁ କହିଲେ । ବୁଢ଼ୀ ମାଆ ପାଖରେ ଗୋଟିଏ ଛୋଟିଆ ଟୋକେଇ ମକାରେ ଭର୍ତ୍ତି ହୋଇଥିଲା । ମୁଠାଏ ଲେଖା ମକା ସେମାନେ ନେଲେ ।

''ଛୋଟୁ ବି ତ ଆସିଛି ।'' ବୁଢ଼ୀ ମାଆ ପଚାରିଲା । ସୋନସୀ ଆଉ କିଛି ମକା ନେଇ ନିଜ କାନିରେ ବାନ୍ଧି ରଖିଲା । ଧୁଆ ଲୁଗାପଟାଯାକ ସୋନସୀର କାନ୍ଧରେ ଥିଲା । ତାହାରି ଉପରେ ସୋନସୀ ବାନ୍ଧିଥିବା ଫୁଲ ଓ ମକାର ପୁଟୁଳି ଲଟକାଇ ଦେଇଥିଲା । ଠାଏ ଗଛରେ ବନ୍ଧା ହୋଇ ଦୁଇଟି ଦୋଳି ଟଙ୍ଗାହୋଇଥିଲା । ସେଇ ଦୋଳି ଭିତରେ ଛୋଟ ଛୋଟ ପିଲା କାନ ପାଖରେ ମୁଠା ଦେଇ ଶୋଇଥିଲେ । ଗୋଟିଏ ଶୁଖିଲା ନଳା ଥିଲା । ସେଇ ନଳା ଉପରେ ଗଛରୁ ଝଡ଼ା ଶୁଖିଲା ପତ୍ର ଭର୍ତ୍ତି ଥିଲା । ସେ ନଳାରେ ମାଟିଆ ରଙ୍ଗର ଅନେକ ଚଢ଼େଇ ପତ୍ରମାନଙ୍କୁ ଥଣ୍ଟରେ ଲେଉଟାଇ ତା' ତଳେ ପୋକ ଜୋକ ଖୋଜୁଥିଲେ । ଝିଅର ଦୃଷ୍ଟି ସେହି ଚଢ଼େଇଙ୍କ ଉପରେ ଥିଲା । ପବନରେ ଦୋଳିମାନ ଆସ୍ତେ ଆସ୍ତେ ଝୁଲୁଥାନ୍ତି । ଦୁଇଟି ବଳିଲା ଦଉଡ଼ି ଉପରେ ପୁରୁଣା ଶାଢ଼ିକୁ ଭାଙ୍ଗକରି ସେ ଦୋଳି ଦୁଇଟି ତିଆରି ହୋଇଥିଲା ।

''ତୋର ବାଇ (ମା) କାହିଁ ?'' ସୋନସୀ ପଚାରିଲା ।

''ମକା ତୋଳି ଯାଇଛି।'' ଝିଅ ଲାଜ ଲାଜ ହୋଇ କହିଲା । ଗଛ ମୂଳେ ଟୋକେଇ ଉପରେ ମକା ଥୁଆ ହୋଇଥିଲା । ଗୋଟିଏ ଚିରା କନା ଦେଇ ଟୋକେଇ ଢଙ୍କା ହୋଇଛି । ସୋନସୀର ଇଚ୍ଛା ହେଲା ଯେ ସେଇଠି ସେ ପିଲା ଦୁଇଟିଙ୍କୁ ନିଜର କୋଳକୁ ଆଣି ବସାନ୍ତା ।

ଏକପଦୀ ଉପରେ ରଘୁବର ପ୍ରସାଦ ପୁଣି ସୋନସୀର ପଛକୁ ଆସିଗଲେ । ଯେପରି ଗୋଡ଼ର ଚିହ୍ନ ଛାଡ଼ି ହୋଇଯାଏ ସେହିଭଳି ସାମନାରେ ଯାଉଥିବା ସୋନସୀ ପଛରେ ସୋନସୀର ଚାଲିର ତାଳରୁ ଛାଡ଼ ପାଇ ଥିବା ଚିହ୍ନ ଭଳି ସବୁ କିଛି ସବୁ ଆଡ଼େ ଥିଲା । ସେଇ ତାଳର ଦୃଶ୍ୟ ଥିଲା । ପୋଖରୀ ସେଇ ତାଳର ପୋଖରୀ ଥିଲା । ଗଛ ବି ସେହି ତାଳର । ଗଛରେ ଫୁଟିଥିବା ଫୁଲଙ୍କ ତାଳ ଥିଲା । ସେଇ ତାଳର ଏକପଦୀ ଥିଲା । ରଘୁବର ପ୍ରସାଦଙ୍କ ଚାଲିରେ କମ୍ପନ ଥିଲା । ଆକାଶ ଠାରୁ ମାଟିଯାଏ ସୋନସୀ ଓ ରଘୁବର ପ୍ରସାଦଙ୍କର 'ଘରାନା' ଥିଲା । ଯାହା ସ୍ଥିର ଥିଲା ତାର ଦୋହଲିବା ସ୍ଥିର ଦୋହଲିବା ଥିଲା। ଗୋଟିଏ ବଡ଼ ଚାଲି ଦୋହଲି ଦୋହଲି ସ୍ଥିର ଦିଶୁଥିଲା । ରଘୁବର ପ୍ରସାଦ ସୋନସୀ ର ଚାଲି ଦେଖି ଦେଖି ଚାଲୁଥିଲେ ।

''ତମେ ମୋ ପଛେ ପଛେ କାହିଁକି ଚାଲୁଛ ?'' ସୋନସୀ ମନେ ମନେ ସବୁ ଜାଣି ପଚାରିଲା ।

''ତୁମର ଚାଲିବା ଦେଖି ଦେଖି ଚାଲୁଛି ।'' ରଘୁବର ପ୍ରସାଦ ଚୁପ୍ ଥାଇ ମନେ ମନେ ଉତ୍ତର ଦେଲେ । ବୁଦାରେ ଲୁଗା ଶୁଖାଇବା ପରେ ସୋନସୀ ବଖରାକୁ ଡେଇଁଲା । ରଘୁବର ପ୍ରସାଦ ଆଗରୁ ଡେଇଁ ସାରିଥିଲେ ।

''ମାଆ କାହିଁ ଗଲା ?

''ଛୋଟୁ ବି ନାହିଁ, ପଦାରେ ବସିଥିବେ । ଡେରି ହୋଇଗଲା ।''

''ହଁ ଡେରି ହୋଇଗଲା ।'' ଝାଡୁ ହୋଇଯାଇଥିଲା । ମାଆ ପହଁରି ଦେଇଛି ।

ଦୁହେଁ ବାହାରକୁ ଆସିଲେ । ଛୋଟୁ ମା ପାଖରେ ବସିଥିଲା । ଛୋଟୁ ରହିବାକୁ ଜିଦି ଲଗାଇଥିଲା । ଆଉ ମା' କାଲି ସକାଳ ବସ୍‌ରେ ଯିବାକୁ କହୁଥାଏ । ଛୋଟୁ କହୁଥିଲା ଯେ ମାଆ ଏକୁଟିଆ ବସ୍‌ରେ ଚାଲିଯାଉ । 'ସ୍କୁଲ ଖୋଲିଯିବଣି' ମା ଛୋଟୁକୁ କହୁଥିଲା ।

''ମାଆ ଦିନେ ଦି ଦିନ ଆଉ ରହିଯାଅ ।'' ସେତେବେଳେ ସୋନସୀ କହିଲା ।

ଯିବାକୁ ପଡ଼ିବ । ରଘୁବରର ବାପାଙ୍କୁ ଏକୁଟିଆ କଷ୍ଟ ହେବ । ଦୁଇଦିନ ବୋଲି କହିକରି ଆସିଛି ।'' ମାଆ ଏକଥା ଜାଣେ ଯେ ଛୋଟୁ ବର୍ତ୍ତମାନ ରହିଯିବାକୁ ଏତେ ଜିଗର କରୁଛି, କିନ୍ତୁ କାଲି ଯିବା ବେଳକୁ ସେଇ ସବାଆଗ ରିକ୍ସାରେ ବସିପଡ଼ିବ । ମାଆ ମାନିଗଲା ଯେ ଛୋଟୁ ରହିଯାଉ । ଛୋଟୁ କହିଲା ଯେ ମାଆକୁ ଛାଡ଼ିବାକୁ ସେ ବସ୍‌ଷ୍ଟାଣ୍ଡ ଯାକ ଯିବ ।

''ତୁ ପୁଣି କାହା ସଙ୍ଗେ ଗାଁ କୁ ଯିବୁ ?'' ରଘୁବର ପ୍ରସାଦ ପଚାରିଲେ ।

''ଏକୁଟିଆ ଚାଲିଯିବି ।'' ଛୋଟୁ କହିଲା ।

ଛୋଟୁ ରଘୁବର ପ୍ରସାଦଙ୍କୁ ପଚାରିଲା । ''ଆଜି ହାତୀ ଆସିବ ?''

''ଆଜି ଆସିବ ନାହିଁ । ଆଜି ରବିବାର । ସାଧୁର ଦିହ ବି ଭଲ ନାହିଁ ।''

''ସେ କୋଉଠି ରହେ ?''

''ଖଇରାଗଡ଼ ବାଡ଼ାରେ । କାଲି ମୁଁ ତାକୁ ପଚାରିଥିଲି । ସେଠି ରଜାଙ୍କର ଭଙ୍ଗା ଘର ଅଛି । ସେ ପକ୍କା ଘର ଭିତରେ ସେ ରହେ ଆଉ ହାତୀ ଗଛରେ ବନ୍ଧାଥାଏ ।

''ସେଠିକି ବୁଲି ଯିବା ?'' ଛୋଟୁ ପଚାରିଲା ।

''ତୁ ତ ରହୁଛୁ । ପରେ କେବେ ଯିବା ।''

ଛୋଟୁ କିଛି କହିଲା ନାହିଁ । ମା' ଭିତରକୁ ଚାଲିଗଲା ପରେ ସୋନସୀ ରଘୁବର ପ୍ରସାଦଙ୍କୁ କହିଲା ''ମା' ରହିଯାଇଥିଲେ ଭଲ ହୋଇଥାନ୍ତା । ଛୋଟୁର ବି ଇଚ୍ଛା ଅଛି ।'' ଗଛରେ ଲୁଚିବା ଟୋକାର ବାପ ଠେଙ୍ଗାଟି ଧରି ରାସ୍ତାରେ ଯାଉଥିବାର ସୋନସୀକୁ ଦେଖାଗଲା । ସୋନସୀ ରଘୁବର ପ୍ରସାଦଙ୍କୁ କହିଲା ''ସେ ଲୋକଟା ବିଡ଼ିପିଆ ଟୋକାର ବାପ ।''

ଠେଙ୍ଗାବାଲା ଲୋକଟା ଏଣେ ତେଣେ ଚାହିଁ ଚାହିଁ ଯାଉଥାଏ । ''ନିଜ ପୁଅକୁ ଖୋଜୁଛି, ପାଇଲେ ଧରିକରି ଘରକୁ ନେଇଯିବ ।''

''ଧରିକରି ଘରକୁ ନେବାକୁ ନୁହେଁ, ପିଲାକୁ ଯେମିତି ଦେଖାଯିବ ସେଇଥିପାଇଁ ଖୋଜୁଛି । ପୁଅକୁ ସେ ଦେଖିନପାରୁ କିନ୍ତୁ ଲୁଚିଥିବା ପୁଅ ତାକୁ ଦେଖିନେଉ । ଯାହା ଫଳରେ ସେ ଜାଣିଯିବ ଯେ ତାର ବାପା ଘରେ ନାହିଁ । ପୁଅ କହୁଥିଲା ଯେ ଯେତେବେଳ ଯାକେ ବାପ ଘରେ ରହିଥାଏ ସେ ଘରକୁ ଯାଏନା ।''

''ନିଜ ଘର ଠାରୁ ଦୂରକୁ ଚାଲିଯାଉଛି ଏଇଥିପାଇଁ ଯେ ପୁଅ ବୁଝିଯାଉ ଯେ ସେ ବହୁତ ବେଳ ଯାକେ ଫେରିବ ନାହିଁ ।'' ରଘୁବର ପ୍ରସାଦ କହିଲେ ।

ଠେଙ୍ଗାଧରି ଖୁବ୍ ହୁସିଆରିରେ ଚାରି ଆଡ଼କୁ ଚାହୁଁଥାଏ । ପୁଅକୁ ଯେବେ ସେ ଭୁଲରେ ଦେଖିଦିଏ ତେବେ ପୁଅକୁ ଯେମିତି ଜଣା ନ ଯାଏ ଯେ ସେ ତାକୁ ଦେଖି ନେଇଛି । ରାତିରେ ଯେତେବେଳେ ପିଲାମାନଙ୍କୁ ପଢ଼ାଉଥିଲେ ସେତେବେଳେ ସେ ଠେଙ୍ଗା ଧରି ରାସ୍ତାରେ ବୁଲୁଥିବାର ଦେଖାଯାଉଥିଲା । ବିଜୁଳିବତୀ ତଳେ ପାଠ ପଢୁଥିବା ପିଲାଙ୍କ ପାଖରେ ଖାଲିଟାରେ ଏଇମିତି ଠିଆ ହୋଇଯାଉଥିଲା । ରଘୁବର ପ୍ରସାଦ ରାସ୍ତା ଉପରେ ପଢ଼ାଉଥିଲେ ସେଥିପାଇଁ କିଛି କହି ପାରୁ ନଥିଲେ । ରାସ୍ତା ତ ସମସ୍ତଙ୍କର, ଯା ଆସ ପାଇଁ ଅଛି । ଏଠି ପିଲାମାନଙ୍କ ଚାରିକଡ଼େ ବହୁତ ଲୋକ ଯେବେ ଭିଡ଼ ଜମାଇ ଦେବେ ତ, ସେ କ'ଣ ବା କରିପାରନ୍ତେ ? ମନା ତ କରି ପାରି ନଥାନ୍ତେ । ଶ୍ରେଣୀରେ ପଢ଼ାଉଥିଲେ ତ ମନା କରି ପାରିଥାନ୍ତେ । ସଡ଼କ ଉପରେ ଗାଈ ଆସି ଠିଆ ହୋଇଯାଏ । ପାକୁଳି କରି ସେଇଠି ବସିଯାଉଥିଲା । ପିଲାଙ୍କ ପାଖରେ ଗୋବର ହଗା କି ମୁତା ବି କରିଥାଏ । ସେତେବେଳ ସେଠୁ ଘୁଞ୍ଚିବାକୁ ହେଉଥିଲା । ବିଜୁଳି ଖମ୍ବ ତଳେ ବହୁତ ଆଲୁଅ ଥାଏ । ବିନା କ୍ୟାଣ୍ଡେଲରେ ପାଠପଢ଼ା ହେଇଯାଉଥିଲା ଏବଂ କିରାସିନିର ବି ଖର୍ଚ୍ଚ କମିଯାଉଥିଲା । ବିଜୁଳି ଖମ୍ବକୁ ଟେବୁଲ ଲ୍ୟାମ୍ପ ଭଳିଆ ଏଠୁ ସେଠିକି ନେଇ ପାରୁଥିଲେ ତାକୁ କୌଣସି ନିର୍ଜନ ଜାଗାକୁ ଘେନି ଯାଉଥାନ୍ତେ । ଏତେ ଗୁଡ଼ାଏ ଖମ୍ବ ଅଛି । ତହିଁରୁ ଗୋଟାଏ ଦିଟା କମି ଯାଇଥିଲେ କିଛି ତଫାତ୍ ହୋଇ ନ ଥାନ୍ତା । ସଡ଼କ ଉପରେ ଅନ୍ଧାର ହେବା ମାତ୍ରକେ ନୀରବତା ହୋଇଯାଏ । ଲୋକଙ୍କର ପାଟିତୁଣ୍ଡ ମୋଟେ ନଥାଏ । ସଡ଼କରେ କୁକୁର ଭୁକିବାର ଶବ୍ଦ ବେଳେ ବେଳେ ଖୁବ୍ ଗଣ୍ଡଗୋଳ କରିଥାଏ । ରାତିରେ ଯା ଆସ କରୁଥିବା ଶଗଡ଼ଗାଡ଼ି ପ୍ରତି ମଧ୍ୟ ଦୃଷ୍ଟି ରଖିବାକୁ ପଡୁଥିଲା । ଗାଡ଼ି ଚାଳକ ଯେତେବେଳେ ଢୁଳାଉଥାନ୍ତି ସେତେବେଳେ ଏକବାରକେ କଡ଼କୁ ଆସିଯାନ୍ତି । ତା'ପରେ ସେଇ କଡ଼ଠାରୁ ଘୁଞ୍ଚି ଘୁଞ୍ଚି ସଡ଼କର ଅନ୍ୟ କଡ଼ଯାକ ଚାଲିଯାନ୍ତି । ଏମିତି ଅବସ୍ଥାରେ ସବୁ ସମ୍ଭାଳିବାକୁ ହେଉଥିଲା । ବିଜୁଳି ଖମ୍ବ ପାଖରେ ଗଛ ଥାଏ । ସେ ଗଛ ଉପରେ ଆଲୁଅରେ ପୋକ ଯୋକଙ୍କୁ ଖାଇବାକୁ ଘୁଘୁ ଓ ପେଚା ସେଠି ବସିଥାନ୍ତି । କାଳେ ଘୁ ଘୁ ଓ ପେଚା ଶୁଣିନେବେ ସେଇ ଭୟରେ ପିଲାମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେବାବେଳେ କାହାରି ନାଁ କହୁନଥିଲେ । ପିଲାମାନଙ୍କର ଧାରଣା ଏହି ଯେ ଯେବେ ପେଚା କାହାରି ନାଁ ଶୁଣିନିଏ ତେବେ ସେଇ ନାଁକୁ ସେ ମନେ ପକାଇବ । ଯାହା ନାଁ ସେ ମନେପକାଏ ସେ ଧୀରେ ଧୀରେ ରୋଗିଣା ହୋଇ ପରେ ମରିଯାଏ । ଭୁଲରେ ନାଁଟା ପାଟିରୁ ବାହାରିଗଲେ ରାମ ନାମ ନେଉଥିଲେ ।

ଠେଙ୍ଗାଧାରୀ ଲୋକଟି ରଘୁବର ପ୍ରସାଦଙ୍କୁ ଚିହ୍ନିବାକୁ ଆରମ୍ଭ କରିଥିଲା ଏବଂ ରଘୁବର ପ୍ରସାଦଙ୍କୁ ହାତ ଯୋଡ଼ି ଜୁହାର କରିବାକୁ ବି ଆରମ୍ଭ କରିଥିଲା ।

ରଘୁବର ପ୍ରସାଦ ଓ ସୋନସୀଙ୍କୁ ''ରାମ ରାମ''କହିଲା ।

''ନିଜ ପୁଅକୁ ଖୋଜୁଛ ପରା'' ସୋନସୀ ପଚାରିଲା ।

''ହଁ ସାନ୍ତାଣି ଘରକୁ ଆସେନା । ମୋତେ ପଦାରେ ବୁଲୁଥିବାର ଦେଖିନେଲେ ଘରକୁ ଚାଲିଯିବ ।

''ତାକୁ ମାରିବନି । ସବୁ ଆଦରରେ ବୁଝାଇଦେବି ।''

''ଥରଟିଏ ମାରିଥିଲି, ସାନ୍ତାଣୀ ବିଡ଼ି ଟାଣେ । ତା'ପରେ ସେ ପଳେଇ ବୁଲେ । ପାଖକୁ ଆସିଲେ ସିନା ବୁଝାଇବି ଘରକୁ ଆସେ ନାହିଁ ।'' ଲୁଚି କରି ଦୂରରୁ ଅନେଇଥାଏ । ଘରେ ଥିଲେ ମୁଁ ଠେଙ୍ଗାଟି ବାହାରେ ରଖିଦିଏ । ଠେଙ୍ଗାଟି ଦେଖିଲେ ସେ ଜାଣିପାରେ ଯେ ମୁଁ ଘରେ ଅଛି ।

''ତମ ପୁଅ ଖାକି ପ୍ୟାଣ୍ଟ ପିନ୍ଧେ ନା ?'' ଦଶ କି ବାର ବର୍ଷର । ତାକୁ ମୁଁ ଚିହ୍ନେ । ସେ କେବେ ମୁଣ୍ଡ କୁଣ୍ଡାଏ ନାହିଁ ।''

''ସେଇ ଟୋକା ମହାରାଜ ! ଦଶ ବର୍ଷର ।'' ଛୋଟୁ ଆଡ଼େ ଚାହିଁ ସେ କହିଲା,''ୟାଙ୍କ ପରି ।''

''ତୁମେ କାଲି ସକାଳୁ ଲୁଚି କରି ମୋ ଘରକୁ ଆସିବ । ତୁମ ପୁଅକୁ ମୁଁ ବୁଝାଇ ଦେବି । ଯଦି ବୁଝିଥାଏ ତାକୁ ନିଜ ସାଙ୍ଗରେ ଘରକୁ ନେଇଯିବ ।''

''ଘରୁ ବାହାରିଲେ ଠେଙ୍ଗାକୁ ଆଣିବ ନାହିଁ । ଦରଜା ପାଖରେ ଛାଡ଼ି ଦେବ । ପୁଅ ଘରକୁ ଯିବ ନାହିଁ । ପୁଅ ବି କହିଥିଲା ଯେ ବାପର ଠେଙ୍ଗା ଦେଖି ଘରକୁ ସେହି ହିସାବରେ ସେ ଯା ଆସ କରେ ।''

ସୋନସୀ ଯେତେବେଳେ ତାକୁ ଗଛରେ ଚଢ଼ିଥିବାର ଦେଖେ ସେତେବେଳେ ତା ସାଙ୍ଗରେ ବେଳେ ବେଳେ କଥା କହିଥାଏ । ସୋନସୀ ସାଙ୍ଗରେ ଆଖି ମିଳାଇ ସେ କଥା କହି ପାରେ ନାହିଁ । ସୋନସୀ ଯେବେ ଗଛ ମୂଳରେ ଠିଆ ହୋଇଥିବ ଆଉ ଖୋଳିତାଡ଼ି ପଚାରିଥିବ ସେତେବେଳେ ଯାଇ ସେ କିଛି କହିବ । ଗଛ ଉପରକୁ ଅନାଇ ସୋନସୀ କଥା କହୁଥିବାର ଯେବେ କେହି ଦେଖିବ ସେ ବିଚାରିବ ସୋନସୀ ଗଛ ସାଙ୍ଗରେ କି ଚଢ଼େଇଙ୍କ ସାଙ୍ଗରେ କଥା ହେଉଛି । ଗୁଣ୍ଡୁଚି ମୂଷା ସାଙ୍ଗରେ ବି ଭାବି ପାରିଥାନ୍ତେ । ଦିପହର ବେଳେ ଯେତେବେଳେ ଖାଇବସେ ଗଛ ଆଡ଼କୁ ଥରେ ଅନାଇ ଦିଏ । ଯେବେ ପିଲାଟା ଦିଶିଯାଏ ତାକୁ ଖାଇବାଲାଗି ଡାକିଆଣେ । ବେଳେ ବେଳେ ସେ ନିଜେ ନିଜେ ଆସିଯାଏ । ଯଦି ସୋନସୀର ଖାଇବା ପରେ ହେବାର ଥିବ, ସେ ଆଗ ପିଲାଟାକୁ ବାଢ଼ିଦିଏ । ନୋହିଲେ ସେ କୋଣ ପାଖରେ ମୁହଁକୁ ପୋତି ଖାଇବା ପାଇଁ ବସିଯାଏ ।

ରାତିରେ ସମସ୍ତେ ଚଟାଣରେ ଶୋଇବେ ବୋଲି ମାଆ ଖଟିଆକୁ କାନ୍ଥରେ ଡେରି ରଖି ଦେଇଥିଲା । ଚଟାଣରେ ବିଛଣା ପାରି ଦିଆ ହୋଇଥିଲା । ମାଆକୁ ସକାଳୁ ପାଞ୍ଚଟା ବେଳର ପହିଲି ବସ୍ ଧରିବାକୁ ହେବ । ମାଆ ସୋନସୀକୁ ମନେକରି କଡ଼ା ପିନ୍ଧିବାକୁ ପୁଣି କହିଥିଲା । ସୋନସୀ କଡ଼ାକୁ ପିନ୍ଧିଦେଇ ଥିଲା । ଖଟିଆ ପାଖରେ ରଘୁବର ପ୍ରସାଦ ଶୋଇଥିଲେ । ତା'ପରେ ମା', ଛୋଟୁ ଆଉ ସୋନସୀ। ସମସ୍ତେ ଜଲଦି ଶୋଇ ପଡ଼ିଥିଲେ, କାରଣ ସକାଳୁ ଉଠିବାକୁ ହେବ । ସୋନସୀ ପୁରି ଛାଣି ଦେଇଥିଲା ସକାଳୁ ଖାଇବା ପାଇଁ, ଆଉ ରାସ୍ତାରେ ଛୋଟୁ ପାଇଁ ।

''ମାଆ ! ଏଇଲେ କଡ଼ା ଖୋଲି ଦେଉଛି କାଳେ ଶୋଇବା ବେଳେ ଛୋଟୁ ଦିହରେ ବାଜିଯିବ ।'' ସୋନସୀ କହିଲା ।

''ତୁ ମୋ ପାଖକୁ ଆସିଯା, ଛୋଟୁ କଡ଼କୁ ଚାଲିଯିବ ।'' ଛୋଟୁ ସୋନସୀର ବାଆଁ ପଟକୁ ଥିଲା । ସୋନସୀ ମାଆ ପାଖକୁ ଚାଲିଯାଇଥିଲେ ଛୋଟୁ ସୋନସୀର ଡାହାଣ ପଟକୁ ରହିଥାନ୍ତା ।

ଛୋଟୁ ଦିହରେ ତେବେ ବି ବାଜିପାରେ । ''ମା, ଛୋଟୁ ଦିହରେ ତେବେ ବି କଡ଼ା ବାଜି ଯାଇପାରେ,'' ସୋନସୀ କହିଲା, ''ମୁଁ ସେଠିକି ଯାଏଁ, ତୁ ମୋ ଜାଗାକୁ ଆସିଯା ।'' ମା' କହିଲା । ସେମିତି ହେଲେ ସୋନସୀ ରଘୁବର ପ୍ରସାଦଙ୍କ ପାଖକୁ ଚାଲିଯାଇଥାନ୍ତା। ମା'ର ଖିଆଲ ନଥିଲା।' ଉଠିକରି ବସି ପଡ଼ିଥିଲା ସେମିତି ସୋନସୀ ସେଠାକୁ ଆସିଯାଏ ।

''ଏଠିକି ଆସିଯା' ମାଆ ପୁଣି କହିଲା । ସୋନସୀର ଇଚ୍ଛା ହେଲା ଚୁପ୍ କରି ଚାଲିଯିବ ।

''ସେଠି, ମା' ? ଆସ୍ତେ କରି ତଥାପି ସୋନସୀ କହିଲା । ମା'ର ସେତେବେଳେ ଖିଆଲ ହେଲା ।''

''ଆଚ୍ଛା ଛୋଟୁକୁ ରଘୁବର ପ୍ରସାଦ ପାଖକୁ କରିଦେବା । ମା', କହିଲା । ଛୋଟୁକୁ ରଘୁବର ପ୍ରସାଦଙ୍କ ପାଖକୁ ଘୁଞ୍ଚାଇ ଦିଆଗଲା । ମା' ସୋନସୀ ପାଖକୁ ଚାଲିଗଲା । ଏଇଲା କାଳେ ମା ଦିହରେ କଡ଼ା ବାଜିଯିବ । ସେ ନ କହି ରହିପାରିଲା ନାହିଁ ।

''ମା' ତମ ଦେହରେ ବାଜିଗଲେ ? କାଲି ପୁଣି ବସ୍‌ରେ ଯିବାକୁ ଅଛି ।''

ମା' ସୋନସୀଠାରୁ କିଛିଟା ଦୂରକୁ ଘୁଞ୍ଚିଯାଇ ବିରକ୍ତ ହୋଇ କହିଲା, ''ନାଇଁ ବାଜିବନି ଏତେ ଜାଗା ଅଛି । କାହାକୁ କେବେ କଡ଼ା ବାଜିଯାଇଛି କି ?'' ସୋନସୀ ଚୁପ୍‌ଚାପ ଅନ୍ୟ ଆଡ଼କୁ କଡ଼ ମୋଡ଼ି ଶୋଇଗଲା ।

''ହଉ କଡ଼ାକୁ ଖୋଲିଦେ । କାଲି ସକାଳୁ ପିନ୍ଧିନବୁ ।'' ମା କହିଲା । ସୋନସୀ କଡ଼ା ଖୋଲିକରି ନିଜର ତକିଆ ତଳେ ରଖିଦେଲା । ରଘୁବର ପ୍ରସାଦ ଚୁପ୍‌ଚାପ ଆଖିବୁଜି ପଡ଼ି ଭାବୁଥିଲେ ସୋନସୀ ଶୋଇଗଲେ ସେ ଶୋଇବେ । ଛୋଟୁ ଶୋଇପଡ଼ିଛି । ସୋନସୀ ଆଉ ମା' ବହୁତ ରାତିଯାକେ ଗପି ଚାଲିଲେ । ମଝିରେ ମଝିରେ କଥା କହୁ କହୁ ଚୁପ୍ ହୋଇଗଲେ ରଘୁବର ପ୍ରସାଦ ଭାବନ୍ତି ଦୁହେଁ ଶୋଇପଡ଼ିଲେ ପରା । ସୋନସୀ ସେତିକିବେଳେ ପଚାରିବ ''ମା ଶୋଇପଡ଼ିଲ କି ?''

''ଶୋଇ ନାହିଁ । ତତେ ଯଦି ନିଦ ମାଡୁଛି ତେବେ ଶୋଇପଡ଼ ମୋର କଥାବାର୍ତ୍ତା ହେବାକୁ ମନ ହେଉଛି । କିନ୍ତୁ କ'ଣ କହିବି । କିଛି ପଚାରିଲେ ସିନା କହିବି ।''

''ମା' ତୁମର ବାହାଘର ବେଳେ ତମେ କେତେ ବଡ଼ ହୋଇଥିଲ ?'' ସୋନସୀ ପଚାରିଲା ।

''ଏଗାର ବର୍ଷର ହୋଇଥିଲି । ବାହାଘର ପରେ ବି କଣ୍ଢେଇ ଖେଳ ଭଲ ଲାଗୁଥିଲା । ବାପଘରକୁ ଗଲେ କଣ୍ଢେଇ ନେଇ ବହୁତ ଖେଳୁଥିଲି । ତୋ ଠାରୁ ବହୁତ ସାନ ଥିଲି । ଶ୍ୱଶୁର ଘରେ ଖେଳି ପାରୁନଥିଲି । ମା ବାପାଙ୍କ କଥା ଖୁବ୍ ମନେ ପଡୁଥିଲା ଆଉ କାନ୍ଦୁଥିଲି । ରଘୁବର ପ୍ରସାଦର ବାପା ଚଉଦ ବର୍ଷର ହୋଇଥିଲେ ମୋତେ ତୁନି କରାଉ କରାଉ ସେ ବି କାନ୍ଦି ପକାଉଥିଲେ ।''

''ମା' ତମେ ପାଠଶାଳାକୁ ଯାଉ ନ ଥିଲ ?'' ସୋନସୀ ପଚାରିଲା । ଏ କଥାରେ ମା' ହସିଲା । ଆଖିବୁଜି ରଘୁବର ପ୍ରସାଦ ମଧ୍ୟ ମୁରୁକି ମୁରୁକି ହସିଲେ । ମାଆର ହସ ଶୁଣି ନିଦରେ ଛୋଟୁ ବି ହସିଥିବ ।

''ଦ୍ୱିତୀୟ ଶ୍ରେଣୀ ଯାକେ ପଢ଼ିଥିଲି । ବୋହୂ ତୋର ଯେବେ ଆଉ ପଢ଼ିବାକୁ ମନ ହେବ ତେବେ ରଘୁବର ପ୍ରସାଦ ଠାରୁ ନିଶ୍ଚୟ ପଢ଼ିନେବୁ । ରଘୁବର ପ୍ରସାଦର ବାପା ଲୁଚି ଛପି ମୋତେ ପଢ଼ାଉଥିଲେ । ମୋର ବାପ ଭାଇ ତ ଶୀଘ୍ର ମରିଗଲେ । ଶାଶୁ କଠୋର ଥିଲେ । ଶ୍ୱଶୁର ମୋ ବାହାଘରର ଚାରିମାସ ପରେ ମରିଗଲେ ।''

''କେମିତି ମଲେ ମା' ?''

''ସକାଳେ ପଦା ଆଡୁ ନିତ୍ୟକର୍ମ ସାରି ଫେରିଥିଲେ । ବାଟରେ ଗୋଟିଏ ଓସ୍ତ ଗଛ ଥିଲା । ସେ ଗଛ ମୂଳ ଦେଇ ଆସିଲା ବେଳକୁ କେହି ନାଁ ଧରି ଡାକିଦେଲା । ସେ କଡ଼ାକରି କହିଲେ କିଏ ସେ ? ସେଇଠୁ ସେ କହିଲା ରହି ଯା', ରହିବିନି ବୋଲି କହି ଚାଲି ଆସିଲେ । ବଡ଼ ବଡ଼ ନିଶ ଥିଲା । ଠେଙ୍ଗା ଧରିଥାନ୍ତି । ପଗଡ଼ି ବାନ୍ଧନ୍ତି । ଭୋରବେଳେ ଅନ୍ଧାରିଆ ହେଇଥିଲା ଆଉ କ୍ୟାଣ୍ଡେଲ୍ ନେବାକୁ ଭୁଲିଯାଇଥିଲେ । ଘରକୁ ଆସିବା ବେଳକୁ ଦିହରେ ଜର । ତା'ପରେ ଆଉ ଉଠି ନାହାନ୍ତି ।'' ମା' ଚୁପ୍ ହୋଇ ଗଲେ । ସୋନସୀ ବି କିଛି କହିଲା ନାହିଁ । କିଛି ବେଳପରେ ମା ପଚାରିଲା, ବୋହୂ ଶୋଇପଡ଼ିଲୁଣି କି ?''

''ନା ମା' ।''

''ରଘୁବର ପ୍ରସାଦ ଠାରୁ ବଡ଼ ଗୋଟିଏ ଝିଅ ଥିଲା ଯେ ସେ ଶ୍ୟାମଳୀ ଥିଲେ ବି ରଘୁବର ପ୍ରସାଦ ଠାରୁ ରଙ୍ଗଟା ସଫା ଥିଲା । ସୁନ୍ଦର ବି ଥିଲା । ବଡ଼ ମାତା ଲାଗିଲାରୁ ସେ ବି ମରିଗଲା ।

''କେତେ ବଡ଼ ହୋଇଥିଲା ମା ?''

''ତିନି ବର୍ଷର ହୋଇଥିଲା । ରଘୁବର ପ୍ରସାଦ ସେତେବେଳକୁ ହୋଇଗଲାଣି । ଛୋଟିଆଟିଏ ହୋଇଥିଲା । ମାସକର ହେବ । କାଳିଆ, ରୋଗିଣା ପାତଳାଟିଏ । ରଘୁବର ଜନ୍ମ ହେବାରୁ ଶାଶୁ ଖୁବ୍ ଖୁସି ହେଲେ । ଦେଖିବାକୁ ଭଲ ନ ଥିଲା । ତାକୁ ଦେଖି ଶାଶୁ କହିଥିଲେ, ଲଡୁ ଗୋଲ ହୋଇନାହିଁ କିନ୍ତୁ ଲଡୁ ତ ଲଡୁ । ରଘୁବର ପ୍ରସାଦକୁ ଚାହିଁ ଶାଶୁଙ୍କର ସବୁ ରୋଗ ପଳେଇଗଲା । ପରାଗାର ଦୁଃଖରେ ବେମାର ହୋଇଯାଇଥିଲେ । ପରାଗା ତାଙ୍କରି ପାଖରେ ଶୋଉଥିଲା ।''

''ପରାଗା କିଏ ମାଆ ?''

''ମୋର ବଡ଼ ଝିଅ, ଝିଅ ।'' ମା' ଚୁପ୍ ହୋଇଗଲା । ସୋନସୀ ବିଚାରିଲା ମା' କାହାକୁ ଝିଅ କହିଲା । ପରାଗାକୁ ନା ତାକୁ । ସୋନସୀ ଆଉ ସମ୍ଭାଳି ପାରିଲା ନାହିଁ । ସେ ପଚାରିଦେଲା ।''ମା ତମେ ଝିଅ ବୋଲି କାହାକୁ କହିଥିଲ ?''

''ହଁ ଝିଅ । ଦୁହିଁଙ୍କୁ ।'' ମା ପୁଣି କହିଲା । ସୋନସୀର ମନ ହେଉଥିଲା ରଘୁବର ପ୍ରସାଦଙ୍କ କଥା ପଚାରିବ । ବହୁତ ବେଳ ଚୁପ୍ ହୋଇ ରହିବାରୁ ମା' ପୁଣି ପଚାରିଲା, ଶୋଇପଡ଼ିଲୁ ନା କ'ଣ ?''

''ନାଇଁ ମା' ।''

''ଏଇମିତି କଥା ହେଉଥା । ଭଲ ଲାଗୁଛି ।

''ମା' ଯାଙ୍କ ଗୋଡ଼ରେ ଆଣ୍ଠୁତଳେ ଆଘାତର ଦାଗ କେମିତି ହେଲା ?''

''ଆରେ ରଘୁବର ପ୍ରସାଦକୁ ସର ଆଉ ଖୁର୍ଚ୍ଚନ (ଶୁଖିଲା ସରର ମିଠା) ବହୁତ ଭଲ ଲାଗୁଥିଲା । ଦିନେ କଡ଼େଇରେ ଦୁଧ ଆଉଟୁଥିଲି ଯେ ତାହାରି ଖୁର୍ଚ୍ଚନ (କୋରୁଅ)ଥିଲା । ରଘୁବର ପ୍ରସାଦକୁ ମୁଁ ଡାକିଲି ଆ ଖୁର୍ଚ୍ଚନ ଖାଇବୁ । ସେ ଦଉଡ଼ିକରି ଆସିଲା ଯେ ରୋଷେଇଘର ଆଗରେ ଶିଳ ସାଙ୍ଗରେ ଧକ୍କା ହୋଇଗଲା । ତା'ର ମାଉଁସ ଯାକ ଆଞ୍ଜୁଡ଼ି ହୋଇଯାଇଥିଲା, ହାଡ଼ ଦିଶୁଥିଲା । କାନ୍ଦୁ ଥିଲା ଯେ ମୁହଁରେ ଟିକିଏ ଖୁର୍ଚ୍ଚନ ଦେଇ ଦେବାରୁ ଟିକେ ଚୁପ୍ ହୋଇଗଲା । ରଘୁବର ପ୍ରସାଦର ବାପା ହସ୍ପିଟାଲରୁ ଯାଇ ପଟି ବନ୍ଧେଇ ଆଣିଥିଲେ । ଆଉଟା ଦୁଧରୁ ଯାହା ଟିକେ ରଘୁବର ପ୍ରସାଦ ବାପାଙ୍କ ଲାଗି ଥିଲା ତାକୁ ରଘୁବର ପ୍ରସାଦ ପିଇଥିଲା । ତାର ଜଂଘରେ ବି କଟା ଦାଗ ଅଛି ।

''ହଁ ! ମା' ।'' କହୁ କହୁ ସୋନସୀ ଅଟକି ଗଲା । ବାଁ ଜଘରେ ଲମ୍ବା କଟା ଦାଗ ରହିଛି ।

''ଶୋଇ ପଡ଼ିନୁ ତ ?''

''ନାଇଁ ମା' ।''

''ଶୁଣୁଛୁ ତ ?''

''ହଁ ମା' ।''

''ଗାଁ କୁ ସର୍କସ ଆସିଥିଲା । ଲୁହା ତାରର ଘେର ହୋଇଥିଲା । ସମସ୍ତେ ସର୍କସ ଦେଖିବାକୁ ଗଲେ । ଛୋଟୁ ହୋଇ ନ ଥିଲା । ରଘୁବର ବହୁତ ଚଞ୍ଚଳ ଥିଲା । ସିଧା ବାଟରେ ତ ଚାଲୁନଥିଲା ମୋଟେ । ତାର ବାଡ଼ ଦେଇ ବାହାରିବା ବେଳେ ସେଥିରେ ଛନ୍ଦି ହୋଇଗଲା । ଲୁହାର କଣ୍ଟା ଦେଇ ଚିରା ହୋଇଛି ବୋଲି ବହୁତ ରକ୍ତ ବୋହିଥିଲା । ସର୍କସ ଗଲେ ନାହିଁ । ସିଧା ହସ୍‌ପିଟାଲକୁ ଗଲେ । ରଘୁବର କାନ୍ଦୁଥାଏ । ହସପିଟାଲ୍ ନୁହେଁ ସର୍କସକୁ ଚାଲ ବୋଲି ଜିଗର କରୁଥାଏ ।''

ମା' ଚୁପ୍ ହୋଇଗଲା । ବହୁତ ବେଳ ଯାକେ ଚୁପ୍ ରହିଲା । ସୋନସୀ ଥରେ ପଚାରି ବି ଦେଇଥିଲା । ''ମା' ଶୋଇଗଲ କି ?'' କିନ୍ତୁ ମା' କିଛି କହିଲା ନାହିଁ । ଏହାରି ଭିତରେ ସୋନସୀ ଶୋଇପଡ଼ିଲା । ମା' ଶୋଇ ନଥିଲା । ଅତୀତକୁ ଚାଲି ଯାଇଥିଲା । ଟିକିଏ ପରେ ସେ ପଚାରିଲା ।

''ବୋହୂ ଶୋଇପଡ଼ିଲୁ କି ? ସୋନସୀ କିଛି ଜବାବ ଦେଲା ନାହିଁ ।''

''ହଉ, ଶୋଇପଡ଼ ।'' କହିକରି ମାଆ ସୋନସୀ ଆଡ଼କୁ କଡ଼ ଲେଉଟାଇ ଶୋଇଗଲା । ମା'ର ବାଆଁ ହାତ ସୋନସୀ ଉପରେ ପଡ଼ିଥିଲା । ରଘୁବର ପ୍ରସାଦ ବି ଶୋଇ ପଡ଼ିଥିଲେ । ସୋନସୀ ରଘୁବର ପ୍ରସାଦଙ୍କ କଣ୍ଠସ୍ୱର ନିଦରେ ଶୁଣିଲା । ''ତୁମେ ଶୋଇପଡ଼ିଲ ?''

''ହଁ ତୁମେ ଶୋଇନ କି ?''

''ମୁଁ ବି ଶୋଇପଡ଼ିଲି ।''

''କେତେବେଳ ହେଲା ଶୋଇଛ ?''

''ତୁମର ଶୋଇଯିବା ପରେ ।''

''ଶୋଇଥାଅ ସକାଳୁ ଶୀଘ୍ର ଉଠିବାକୁ ହେବ ।''

''ହଁ, ରିକ୍ସା ଡାକିବାକୁ ଆଗ ମୋଟରର ଷ୍ଟାଣ୍ଡକୁ ଯିବାକୁ ହେବ ।'' ସମସ୍ତେ ଗଭୀର ନିଦରେ ଶୋଇଯାଇଛନ୍ତି । ଦୂରରେ ବିଜୁଳି ଘଡ଼ି ଘଡ଼ି ଚାଲିଛି ତା'ପରେ ପାଖରେ ବିଜୁଳି ଘଡ଼ ଘଡ଼ି ହେଲା । କାହାରି ନିଦ ଭାଙ୍ଗିଲା ନାହିଁ । ଆଗ ଅଳ୍ପ ଅଳ୍ପ ବର୍ଷା ହେଲା, ପରେ ଜୋର୍‌ରେ ହେଲା । ରଘୁବର ପ୍ରସାଦ ନିଦରେ ସୋନସୀ କହିବାର ଶୁଣିଲେ । ''ବୋଧହୁଏ ବର୍ଷା ହେଉଛି ।''

''ହଁ ବର୍ଷା ହେଉଛି ।'' ଗଭୀର ନିଦରେ ସୋନସୀ ଶୁଣିଲେ ।

''ଗଛ ଉପରେ ଟୋକାଟା ବସିଥିବ । ତିନ୍ତି ଯାଉଥିବ ।''

''ହଁ ତିନ୍ତି ଯାଉଥିବ ।''

''ତମେ ଉଠ, ଯାଇ ତାକୁ ଏଠିକି ଡାକି ଆଣ ।'' ବିଜୁଳି ପୁଣି ଡାକରେ ରଘୁବର ପ୍ରସାଦ ଉଠି ବସିପଡ଼ିଲେ । ଅଣ୍ଡାଳି ଅଣ୍ଡାଳି ସେ ଛିଟକଣୀ ଖୋଲିଲେ । ସୋନସୀ ବି ଉଠିପଡ଼ିଲା । ମାଆ ପଚାରିଲା ''ତିନିଟା ବାଜିଗଲାଣି କି ?''

''ନାଇଁ ମାଆ ଦୁଇଟା ବାଜିଛି, ଶୋଇପଡ଼ ।''

''ମୁଁ ଶୋଉଛି, ତିନିଟା ବେଳେ ମୋତେ ଉଠାଇଦେବୁ ।''

''ହଉ ।'' ରଘୁବର ପ୍ରସାଦ କହିଲେ ।

''କାଳେ ସେ ଗଛ ଉପରେ ବିଜୁଳି ପଡ଼ିଯିବ ।'' ରଘୁବର ପ୍ରସାଦ ରବରର ଚଟି ପିନ୍ଧି ଛତା ଧରି ଦରଜାର କବାଟ ହୁସିଆର ହୋଇ ଖୋଲି ପଦାକୁ ବାହାରିଲେ । ଅନ୍ୟ କବାଟଟି ଖୋଲିବା ମାତ୍ରେ ମାଆର ମୁଣ୍ଡରେ ବାଜିଗଲା । ସୋନସୀ ଦରଜାକୁ ଭିଡ଼ି ଦେଇଗଲା । ପାଣିର ଛିଟା ଭିତରକୁ ଆସୁଥିଲା । ବାହାରେ ବିଜୁଳି ଆଲୁଅରେ ପଡୁଥିବା ପାଣିର ବୁନ୍ଦାମାନ ଜୀବିତ ବୁନ୍ଦାପରି ଦିଶୁଥିଲ । ପତଙ୍ଗ ଭଳି ପାଣି ଟୋପା ଯାକ ଦିଶୁଥାନ୍ତି । ଦଳକୁ ଦଳ ପତଙ୍ଗମାନେ ବିଜୁଳି ଆଲୁଅରେ ପୃଥିବୀ ଆଡ଼କୁ ଆସୁଛନ୍ତି ଅଥବା ପବନର ଦମକା ଧକ୍କାରେ ଦଳକୁ ଦଳ ଏଣେ ଅବା ତେଣେ ହୋଇଯାଉଥାନ୍ତି ଯାହାକି ଧାରା ବର୍ଷଣ ଥିଲା ।

**ରାତି ସାରା ଅନ୍ଧାରରେ ଏତେ ନିକଟତ୍ୱ ଥିଲା ଯେ ଦିନର ଆଲୋକ ବହୁତ ବେଶୀ ପରି ଲାଗୁଥିଲା । ମନେହେଲା ଗୋଟିଏ ସୂର୍ଯ୍ୟ ଠାରୁ ଏତେ ଆଲୋକ ହୋଇ ନପାରେ, ଅନ୍ତତଃ ଦୁଇଟି ସୂର୍ଯ୍ୟ ହୋଇଥିବେ ।**

ରଘୁବର ପ୍ରସାଦ 'ଛପ୍' 'ଛପ୍' କରି ପାଣିରେ ଛିଡ଼ିଥିବା ସଡ଼କ ଦେଇ ଆସୁଥିଲେ ପାଦ ଦୁଇଟି ବୁଡ଼ ପକେଇ ପକେଇ ଆସୁଥାଏ । ବର୍ଷା କାଳର ସଡ଼କ ପାଣିର ସଡ଼କ ହୋଇଯାଇଛି । ବିଜୁଳି ଖମ୍ଭର ଆଲୁଅ ଗୁଳର ଗଛ ଉପରେ ବି ଥିଲା । ଟୋକା ବି ଗଛ ଉପରେ ଥିଲା । ଟୋକା ରଘୁବର ପ୍ରସାଦଙ୍କୁ ଆସୁଥିବାର ଦେଖିଦେଇଥିଲା ।

''ଗଛ ଉପରେ ବସିଛୁ ?

''ହଁ । ବସିଛି ।''

''ଘରକୁ ଚାଲ୍ । ତିନ୍ତି ଯିବୁ ।''

''ଗଛ ଉପରେ ରହିବି । ଯିବି ନାହିଁ ।''

''ତୁ ମୋ ଛତାକୁ ରଖିଥା ।

''ଜରି ଅଛି । ଜରି ପିନ୍ଧି ବସିଛି । ଅଖା ଘୋଡ଼େଇ ହେଇଛି ।''

''ଘରକୁ ଯିବୁ ନାହିଁ ?''

''ନାଇଁ ଏଇଲେ ସକାଳ ହେବାକୁ ଯାଉଛି ।''

''ଗଛ ଉପରେ ବିଜୁଳି ପଡ଼ିପାରେ ।'' ରଘୁବର ପ୍ରସାଦ ତାକୁ ଡରାଇଲେ । କାଳେ ଡରିକରି ଘରକୁ ଆସିଯିବ ।

''ବର୍ଷା କମିଗଲାଣି । ବନ୍ଦ ହେବାକୁ ଯାଉଛି ।''

ବର୍ଷା ସତରେ କମି ଯାଇଥିଲା । ଟୋକା ଟିକେ ତଳେ ଥିଲେ ରଘୁବର ପ୍ରସାଦ ତାକୁ ହାତଧରି ଟାଣି ଆଣିଥାନ୍ତେ ।

''ଓହ୍ଲେଇବୁ ନାହିଁ ?''

''ନାଇଁ ।'' ରଘୁବର ପ୍ରସାଦ ଫେରି ଆସିଲେ। ରଘୁବର ପ୍ରସାଦ ଦରଜା ବନ୍ଦ କଲେ । ଛତାରୁ ପାଣି ପଡୁଥିଲା । ଛତା ବନ୍ଦ କରି ରଘୁବର ପ୍ରସାଦ ହୁସିଆର ହୋଇ ସୋନସୀକୁ ଛତା ଆଉ ଚପଲ ଧରାଇ ଦେଲେ ଯେମିତି କି ମାଆ ଉପରେ ପାଣି ନପଡ଼େ ।

''ନଳା ମୁହଁ ପାଖରେ ଡେରି କରି ରଖିଦିଅ ।' ସୋନସୀ ନଳା ମୁହଁ ପାଖରେ ଚପଲ ଓ ଛତାକୁ ରଖି ଦେଲେ । ଗାମୁଛାରେ ହାତ ଗୋଡ଼ ପୋଛି ରଘୁବର ପ୍ରସାଦ ଶୋଇ ପଡ଼ିଲେ । ଆଲୁଅ ନିଭାଇ ସୋନସୀ ବି ଶୋଇପଡ଼ିଲେ ।''

''ଟୋକା ଗଛ ଉପରେ ନାହିଁ ନା କ'ଣ ?'' ସୋନସୀ ପଚାରିଲା ।

''ଅଛି ଜରି ପିନ୍ଧି ବସିଛି । ଅଖା ବି ଘୋଡ଼ାଇ ହୋଇଛି । ବହୁତ କହିଲି କିନ୍ତୁ ଆସିଲା ନାହିଁ ।''

''ଏଇଲେ ତ ବର୍ଷା ବନ୍ଦ ହୋଇଗଲାଣି । ତମେ ଶୋଇପଡ଼, ମୁଁ ଉଠେଇ ଦେବି ।'' ମାଆର ନିଦ ଭାଙ୍ଗିଗଲା । ''ବେଳ ହୋଇଗଲା ?'' ମାଆ ପଚାରିଲା ।

''ନାଇଁ ମା' ଆଉ କିଛି ସମୟ ଶୋଇରୁହ ।''

ରଘୁବର ପ୍ରସାଦ ଶୋଇ ପଡ଼ିଥିଲେ ।

ଖୁଟ୍ ଖାଟ୍ ଶବ୍ଦରେ ରଘୁବର ପ୍ରସାଦଙ୍କର ନିଦ ଭାଙ୍ଗିଗଲା । ଯିବାର ସବୁ କିଛି ପ୍ରସ୍ତୁତ ହୋଇଯାଇଛି । ଚାରିଟା ବାଜିଲାଣି । ମାଆ, ସୋନସୀ ଗାଧୋଇ ସାରିଲେଣି ।

''ମୁହଁ ହାତ ଧୋଇ ପକା । ଚାହା ହୋଇଛି ।'' ମା' ରଘୁବର ପ୍ରସାଦଙ୍କୁ କହିଲା । ଉଠିକରି ରଘୁବର ପ୍ରସାଦ ଝରକା ପାଖକୁ ଗଲେ । ଝରକା ବାଟେ ହାତ ଗଳେଇ କହି ଦେଖିଲେ ଯେ ବର୍ଷା ହେଉନାହିଁ ।

''ଏଇ ବସ୍‌ଟା ଭଲ ହେବ । ଛୋଟୁ ଇସ୍କୁଲକୁ ବି ଚାଲିଯିବ ।''

''ଛୋଟୁର ତ ରହିଯିବାକୁ ମନ ହେଉଛି ମା' ।''

''ରହିବନି ତାକୁ ଉଠେଇ ଦେ,'' ମାଆ କହିଲା । ସେ ନିଜର ଝୁଲାମୁଣି ସଜାଡୁଥିଲା ।''

''ମୁଁ ଉଠେଇ ଦଉଛି ।'' ରଘୁବର ପ୍ରସାଦ କହିଲେ ।

''ଛୋଟୁ ଉଠିଯା ମାଆ ଯାଉଛି । ରଘୁବର ପ୍ରସାଦ ଛୋଟୁକୁ ଉଠାଇ ବସାଇଦେଲେ । ଛୋଟୁ ବସି ବସି ଶୋଇଥାଏ । ଢଳି ପଡ଼ିବାକୁ ଗଲେ ରଘୁବର ପ୍ରସାଦ ଢଳିବାକୁ ଦିଅନ୍ତି ନାହିଁ । ସୋନସୀ ଏସବୁ ଦେଖୁଥାଏ ।

''ତାକୁ ବ୍ୟସ୍ତ କରନା ।'' ସୋନସୀ କହିଲା । ସେ ଛୋଟୁକୁ ଉଠାଇଲା । ବହୁ କଷ୍ଟରେ ଛୋଟୁ ଉଠି ଠିଆ ହେଲା । ମା' ତା'ର ମୁହଁ ହାତ ଧୁଆଇ ଦେଲା । ସେତିକିବେଳେ ସୋନସୀ ରଘୁବର ପ୍ରସାଦଙ୍କ ପାଖକୁ ଆସିଲା । ରଘୁବର ପ୍ରସାଦଙ୍କୁ କିଛି ମନେ ପକାଇ ଦେଲା । ରଘୁବର ପ୍ରସାଦ ଉଠିଯାଇ ମାଆକୁ ପଞ୍ଚସ୍ତରି ଟଙ୍କା ଦେଲେ । ସତୁରୀ ଟଙ୍କା ତ ମାଆ ରୁମାଲରେ ବାନ୍ଧି କରି ମୁଣିର ତଳଯାକେ ପୂରାଇ ଦେଲା । ପାଞ୍ଚ ଟଙ୍କିଆ ନୋଟଟି ନିଜ ପାଖରେ ରଖିଲା ।

ରଘୁବର ପ୍ରସାଦ ରିକ୍ସା ଡାକିବାକୁ ମଟର ଷ୍ଟାଣ୍ଡକୁ ଚାଲିଗଲେ । ସକାଳର ନୀରବତା ଭେଦକରି ରିକ୍ସାର ହ୍ୟାଣ୍ଡଲରେ ବନ୍ଧା ଘୁଙ୍ଗୁରର ଶବ୍ଦ ଦୂରରୁ ଶୁଣାଗଲା । ଆବୁଡ଼ା ଖାବୁଡ଼ା ରାସ୍ତା ଉପରେ ଘୁଙ୍ଗୁରର ଶବ୍ଦ ବେଶୀ ହୋଇଯାଇଥିଲା । ସୋନସୀ କହିଲା, ''ମା ରିକ୍ସା ଆସୁଛି ।'' ମା ଛୋଟୁକୁ ଏପରି ଭାବେ ସଜିଲ କରିଦେଇଥିଲା । ଯେମିତି ସେ ବି ଯାଉଛି । କିନ୍ତୁ ଛୋଟୁ ମା' ସାଙ୍ଗରେ ଯିବ କି ନ ଯିବ ତାହା ବୁଝିପାରୁ ନ ଥିଲା । ରାସ୍ତାର ବତୀର ଆଲୁଅ ଥିଲା । ମା ଓ ସୋନସୀ ବାହାରକୁ ବାହାରିଲେ । ଦୁହିଁଙ୍କ ଆଖିରେ ପାଣି ଭର୍ତ୍ତି ହୋଇଗଲା ।

''ଭଲ ଥା' ବୋହୂ ।'' ମା କହିଲା ।

''ହଁ ମା ।'' ସୋନସୀ ଗୋଡ଼ ଛୁଇଁଲା । ରିକ୍ସାରେ ଆଗ ମା ବସିଲା । ମା ବସିବା ମାତ୍ରେ ଝଟ୍‌କରି ଛୋଟୁ ରିକ୍ସାରେ ଚଢ଼ିଗଲା । ରଘୁବର ପ୍ରସାଦ ବି ବସିବେ ସେକଥା ବିଚାରି ଛୋଟୁକୁ ସାମନାର ପଟା ଉପରେ ବସିଗଲା । ମାଆର ଝୁଲା ମୁଣି ନେଇକରି ରଘୁବର ପ୍ରସାଦ ଚଢ଼ିଲେ । ଏଯାକେ ପକ୍ଷୀଙ୍କ କାକଳି ଆରମ୍ଭ ହୋଇନାହିଁ ।

ରିକ୍ସା ଚାଲିଗଲା । ଯିବାବେଳେ ମାଆ ସୋନସୀକୁ ମୁହଁ ବୁଲାଇ କରି ଦେଖିବାକୁ ଚେଷ୍ଟା କରିଥିଲା । ସେ ଏତେଟା ମୁହଁକୁ ବୁଲାଇ ପାରୁ ନ ଥିଲା ଯେ ସୋନସୀକୁ ଦେଖି ପାରିବ । ସେ ରଘୁବର ପ୍ରସାଦଙ୍କୁ କହିଲା, ''ଦେଖିଲୁ କ'ଣ ସୋନସୀ ବାହାରେ ଠିଆ ହୋଇଛି ନା ଚାଲିଗଲାଣି ।'' ରଘୁବର ପ୍ରସାଦ ମୁଣ୍ଡକୁ ବୁଲାଇ ଦେଖିଲେ ସୋନସୀ ଠିଆ ହୋଇଛି ।

''ଠିଆ ହୋଇଛି ମା' ।''

''ଭିତରକୁ ଚାଲିଗଲେ ଭଲ ହୋଇଥାନ୍ତା ।'' ମାଆ କହିଲା ।

ରିକ୍ସା ଆଉ ଟିକିଏ ଯାଇଛି କି ନାହିଁ ମାଆ ପୁଣି ପଚାରିଲା ।

''ଦେଖ୍ ତ ଅଛି ନା ଗଲାଣି ।'' ରଘୁବର ପ୍ରସାଦ କହିଲେ ସୋନସୀ ଏଯାକେ ଠିଆ ହୋଇଛି ।

ବିଜୁଳି ଖମ୍ବର ଆଲୁଅ ପଡ଼ିଥିଲା । ସେ କହିବାକୁ ଯାଉଥିଲେ ଯେ ବୋଧେ ଚାଲିଗଲାଣି କିନ୍ତୁ ସେତିକିବେଳେ ଛୋଟୁ କହିଲା "ଯାଇନାହିଁ ମା ।"

ଛୋଟୁ ପୁଣି କହିଲା, "ଏଯାକେ ଠିଆ ହୋଇ ରହିଛି ।"

ଛୋଟୁ ପୁଣି କହିଲା, "ଏବେ ବି ଠିଆ ହୋଇଛି ।" ଭଲ କରି ଦେଖିବା ପାଇଁ ।" ଛୋଟୁ ରିକ୍ସା ଉପରେ ଠିଆ ହୋଇଗଲା । ଛୋଟୁକୁ ଭଲଭାବେ କିଛି ଦେଖାଯାଉନାହିଁ । ତେବେ ବି ସେ କହିଲା, "ମାଆ ଯାଇନାହିଁ ।" ରଘୁବର ପ୍ରସାଦ ବୁଲିପଡ଼ି କହିଲେ "ଚାଲି ତ ଗଲାଣି ।"

ଛୋଟୁ କହିଲା, "ଯାଇନାହିଁ ମାଆ ।" ଏତିକିରେ ରିକ୍ସା ମୋଡ଼ ଦେଲା ଯେତେବେଳେ ରିକ୍ସା ମୋଡ଼ ନେଇଛି ସେତିକିବେଳେ ପକ୍ଷୀ ତାଙ୍କର କାକଳି ଆରମ୍ଭ କଲେ ।

ପକ୍ଷୀଙ୍କର କାକଳି ଆରମ୍ଭ ହେବାଯାକେ ସୋନସୀ ସେଠି ଠିଆ ହୋଇଥିଲା । ରାସ୍ତାର ଆଲୁଅ ସେଯାକେ ଜଳୁଥିଲା । ସକାଳର ଆଲୁଅ ବତିର ଆଲୁଅର ଉଢ଼ାଳରେ ରହିଥିଲା । ରାସ୍ତାର ବତି ଲିଭିଲା ମାତ୍ରେ ସେ ଉଢ଼ାଳଟା ଚାଲିଯାଇଥିଲା । ସକାଳର ଆଲୁଅ ଦେଖାଯିବା ଆରମ୍ଭ ହେଲା । ସକାଳର ନୀରବତା ଭିତରେ ମୋଟର ଚାଲିବାର ଶବ୍ଦ ଶୁଣାଗଲା । ତା'ର ମନେ ହେଲା ମାଆ ବସ୍‌ଷ୍ଟାଣ୍ଡକୁ ପହଞ୍ଚିବା ପୂର୍ବରୁ ବସ୍ ଚାଲିଗଲା । ସେ ଆହୁରି କିଛି ବେଳ ଠିଆ ହୋଇ ରହିଲା କାଳେ ରିକ୍ସା ଫେରୁଥିବ । ତହିଁରେ ଛୋଟୁ ଓ ମାଆ ବି ଥିବେ । ସକାଳର ଆଲୁଅରେ ସବୁକିଛି ଧୁଆ ଧୋଇ ହେଲା ପରି ଲାଗୁଥିଲା । ତିନ୍ତିଲା ଧୁଆ ଲୁଗା ମଧ୍ୟରୁ ପାଣିର ବାସ୍ନା ଆସେ । ଧୁଆ ବାସ୍ନା ଗଛ, ରାସ୍ତା, ପବନ ଆକାଶକୁ ଆସୁଥିଲା । ସେ ଘରକୁ ଆସିଗଲା । ବସ୍‌ରେ ମା'କୁ ସାମନା ପଟେ ଭଲ ଜାଗା ମିଳି ଯାଇଥିଲା । ଛୋଟୁ ଖିଡ଼ିକି ପାଖରେ ବସିଥିଲା । ମାଆ ସାଙ୍ଗରେ ଘରକୁ ଯିବାର ଖୁସିରେ ସେ ବଡ଼ ଭାଇ ଭାଉଜଙ୍କର ପାଦ ଛୁଇଁବା ଭୁଲିଯାଇଥିଲା । ରଘୁବର ପ୍ରସାଦ ମାଆର ପାଦ ଛୁଇଁଲେ । ତାହା ଦେଖି ଛୋଟୁର ରଘୁବର ପ୍ରସାଦଙ୍କ ପାଦ ଛୁଇଁବା କଥା ମନେ ପଡ଼ିଗଲା । ମାଆ ରଘୁବର ପ୍ରସାଦକୁ ତା' ମୁଠାରେ ଥିବା ପାଞ୍ଚ ଟଙ୍କିଆ ନୋଟ ଦେଲା ।

"ବାଟରେ ଗରମ ଗରମ ଜଲିବି ଛଣା ହେଉଥିଲା, ଫେରିବା ବେଳେ ନିଶ୍ଚୟ ନେଇଯିବୁ । ଛୋଟୁକୁ ରଘୁବର ପ୍ରସାଦ ଟଙ୍କାଟିଏ ଦେଲା । ଛୋଟୁ ସେ ଟଙ୍କାକୁ ମାଆ ପାଖରେ ରଖାଇଲା । ମାଆ କହିଲା, "ବଡ଼ ହୋଇଗଲୁଣି ନିଜ ପାଖରେ ରଖ ।" ତା'ପରେ ଝୁଲା ମୁଣି ଭିତରେ ତଳ ପଟକୁ ରଖିଦେଲା ।

"ଭଲ ଜାଗା ମିଳିଯାଇଛି ତ ?" ସୋନସୀ ପଚାରିଲା ।

"ହଁ, ଝରକା ପାଖରେ ଛୋଟୁ ବସିଗଲା । ମାଆ ପାଞ୍ଚ ଟଙ୍କା ଦେଇଥିଲା । କହୁଥିଲା ଜଲିବି ନେବାକୁ ।" ଜଲିବିର ଠୁଙ୍ଗା ଧରାଇ ଦେଇ ରଘୁବର ପ୍ରସାଦ କହିଲେ । ସୋନସୀ ଗାଧୋଇ ସାରିଥିଲା । ଗୋଟିଏ ଗରମ ଜଲିବି ସେ ଖାଇଲେ । ରଘୁବର ପ୍ରସାଦ ବି ଗୋଟିଏ ଜଲିବି ଖାଇଲା । ସୋନସୀ ରୋଷେଇବାସର କାମରେ ଲାଗିପଡ଼ିଲା । ଏତିକିବେଳେ ରଘୁବର ପ୍ରସାଦଙ୍କ ଦରଜା ପାଖରେ ଶବ୍ଦ ଶୁଣାଗଲା । ସେ ଦରଜା ଖୋଲି ଦେଖିଲେ ଯେ ଦରଜା ପାଖରେ ଟାୟାରର ଗାମଲାର

ଟିକିଏ ଆଢୁଆଳ ଭିତରେ ଟୋକାଟାର ବାପ ବସିଥିଲା । ସକାଳୁ ସକାଳୁ ଆସିଯାଇଥିଲା ।

"ଭିତରକୁ ଆସିଯାଅ ।" ଆସ୍ତେ କରି ରଘୁବର ପ୍ରସାଦ କହିଲେ ।

"ହଁ ମହାରାଜ।" କହିକରି ସେ ନଇଁ କରି ଭିତରକୁ ଆସିଲା । ରଘୁବର ପ୍ରସାଦ ଦରଜା ଆଉଜେଇ ଦେଇଥିଲେ ।

"ଠେଙ୍ଗା କାହିଁ ?" ଘରେ ଛାଡ଼ି କରି ଆସିଛ ନା ?

"ଏଇଠି ଅଛି ।"

"କୋଉଠି ?"

"ଦରଜା ପାଖରେ ରଖିଛି । ସୋନସୀ ଦରଜା ଖୋଲି ଠେଙ୍ଗାକୁ ଭିତରକୁ ନେଇ ଆସିଲା ଆଉ ଚଟାଣର ଗୋଟିଏ କୋଣରେ ରଖିଦେଲା । ସୋନସୀ ଖଟିଆର ଉଢ଼ାଳ ତିଆରି କଲା । ଟୋକାର ବାପକୁ ସେ ଖଟିଆ ଆଢୁଆଳରେ ବସାଇ ଦେଲା ।

"ତୁମେ ଏଇଠି ଥାଅ । ତୁମ ପୁଅକୁ ଡାକି ଆଣିବା ।" ସୋନସୀ କହିଲା ।

"ମୁଁ ଡାକି ଆଣୁଛି," ରଘୁବର ପ୍ରସାଦ କହିଲେ । ସେ ସିଧା ଗୁଲର ଗଛ ମୂଳକୁ ଚାଲିଗଲେ । ଗଛ ଉପରେ ଟୋକା ଥିଲା ।

"ଘରକୁ ଗଲୁ ନାହିଁ ।"

"ନା ।"

"ଚାଲ କିଛି ଖାଇନବୁ ।"

"ରୁଟି ଅଛି ?"

"ରୁଟି ଅଛି କି ନା କେଜାଣି । କିନ୍ତୁ ଜଲିବି ଅଛି ।" ଜଲିବି ର ନା' ଶୁଣି ସେ ଧପ୍ କରି ଡେଇଁବା ପରି ଡେଇଁଲା ନାହିଁ । ପଡ଼ିଲା ପରି ଡେଇଁଲା । ଜଲିବି ଠିକ୍ ନିଶାଣରେ ବାଜିବା ପରି ଗୁଲିଟିଏ ଥିଲା । ରୁଟି ନ ଥିବାରୁ ତା'ର ମନଟା ଆଉଟୁ ପାଉଟୁ ହେଉଥିଲା । ରାତିଯାକ ବିତିଗଲା ପରେ ସେ ନିଜ ଘରକୁ ବି ଯିବାକୁ ଚାହୁଁଥିଲା । ସେ କେମିତି ନିଜର ବାପାକୁ ଦେଖି ପାରି ନାହିଁ କେଜାଣି ।

"ପଡ଼ି ଯାଇଥାନ୍ତୁ ନା ।"

"କେମିତି ପଡ଼ିବି ?" ରଘୁବର ପ୍ରସାଦ ତାର ହାତକୁ ଧରିଥିଲେ କାଳେ ପଳାଇଯିବ ବୋଲି ।

"ଚାଲ ।" ରଘୁବର ପ୍ରସାଦ କହିଲେ ।

"ସୋନସୀ ?" ରଘୁବର ପ୍ରସାଦ ଡାକିଲେ ଦରଜା ତ ଖାଲି ଆଉଜା ହୋଇଥିଲା ।

ଭିତରେ ହୁସିଆର କରିବା ପାଇଁ ସେ ଡାକଟା ଦେଇଥିଲେ । ସୋନସୀ ଦରଜା ଖୋଲିଲା । ଟୋକାକୁ କହିଲା "ଭିତରକୁ ଆ ।" ସାରା ରାତି ଅନିଦ୍ରା ପରି ଲାଗୁଥିଲା । ବାଳରେ ତଥାପି ବହୁତ ତେଲ ଥିଲା, କାନ ମୂଳରେ ତେଲ ମଇଳା ସାଙ୍ଗରେ ଜମି ରହିଲା ପରି ଦିଶୁଥିଲା ।

"ଗାଧୋଇ ପାଧୋଇ ମୁଣ୍ଡଟା କୁଣ୍ଡେଇବୁ । ତେଲ କମ୍ ଲଗାଇବୁ ।" ସୋନସୀ କହିଲା ।

ଖଟିଆ ଉଢ଼ାଳରୁ ତା'ର ବାପ ଚୁପ୍ ଚାପ ବସି ସବୁ ଶୁଣୁଥାଏ । ନିଜ ପୁଅକୁ ଦେଖିବାକୁ ସେ ଚାହୁଁଥିଲା । କେତେ ଦିନ ହେଲାଣି ନିଜ ପୁଅକୁ ଭଲ କରି ଦେଖି ପାରିନାହିଁ । ଖଟିଆରୁ ଉଙ୍କିମାରିବାକୁ ତାର ମନ ହେଉଥାଏ ।

"ବିଡ଼ି ପିଇଛୁ ?" ସୋନସୀ କହିଲା ।

"ନାଇଁ ।"

"ରାତିରେ ପିଇଥିଲୁ ?"

"ରାତିରେ ବି ପିଇ ନାହିଁ । ଜଲିବି ଦେ ନା ।" ଆସ୍ତେ କରି ସେ କହିଲା ।

"ରୁଟି ବି ଅଛି । ଖାଇବୁ ?"

"ଜଲିବି ଖାଇବି ।" ସେ ଚିଡ଼ିକରି କହିଲା ।

"ହଉ, ଦିଟା ଯାକ ଖାଇନବୁ । ଶୁଣ, ତୋ ବାପା ବି ଏଇଠି ଅଛି । ପଳାନା, ସେ ମାରିବ ନାହିଁ । ତା' ସାଙ୍ଗରେ ଘରକୁ ଚାଲିଯିବୁ । ଖଟିଆ ଆଢୁଆଳରେ ଅଛି । ବୁଝି ପାରିଲୁ ?"

ବାପା ନାଁ ଶୁଣି ସେ ଚମକି ପଡ଼ିଲା । କୋଉଠି ଅଛି ଏହି ଚାହାଣୀ ଦେଇ ସେ ଚାରିଆଡ଼େ ଅନାଉଥାଏ ।" ନାହିଁ ସେ କହିଲା ।

"କହିଲି ପରା ଖଟିଆ ପଛରେ ସେ ଅଛି ।" ସୋନସୀ କହିଲା । ବାପା ଖଟିଆ ସେକଡୁ ଉଙ୍କିମାରିଲା । ସେ ଅତି ସ୍ନେହରେ ନିଜ ପୁଅକୁ ଚାହୁଁଥିଲା । "ଯା ଚାଲିଯା" କହି ରଘୁବର ପ୍ରସାଦ ପୁଅକୁ ଖଟିଆ ପଛକୁ ଘେନିଗଲେ । ସେ ନିଜ ପୁଅକୁ ଡୁଙ୍ଗୁଥିଲା । "ଆସେ' ସେ କହିଲା । ତା'ପରେ ହାତକୁ ଧରି ଖଟିଆ ସେକଡ଼େ ନିଜ ପାଖରେ ବସାଇଦେଲା । ତା' ମଥାରେ ହାତ ଆଉଁସିଲା ପରେ ତା' ହାତରେ ତେଲ ଲାଗିଗଲା । ହାତର ତେଲକୁ ସେ ନିଜ ଗୋଡ଼ରେ ରଗଡ଼ି ରଗଡ଼ି ପୋଛିଲା । ପୁଣି ଦୁଇ ହାତରେ ପୁଅର ବାଳକୁ ପୋଛିକରି କେବେ ନିଜ ହାତ, କେବେ ପୁଅର ହାତରେ ପୋଛିଦେଲା । ମଥାରୁ ଗାମୁଛା ବାହାର କରି ପୁଅର ମୁହଁକୁ ପୋଛି ଦେଲା ।

"ସାନ୍ତାଣୀ, ପାନିଆଁ ଅଛି ?" ଉଙ୍କିମାରି ସେ ସୋନସୀକୁ ପଚାରିଲା ।

"ହଁ ।" ସୋନସୀ କହିଲା । ରଘୁବର ପ୍ରସାଦ ନିଜର ଗୋଟିଏ ପାନିଆକୁ ପୋଛାପୋଛି କରି ତାକୁ ଧରାଇ ଦେଲେ । ଯେତେବେଳେ ଖଟିଆ ଉଢ଼ାଳରେ ସେ ନିଜ ପୁଅର ମୁଣ୍ଡ କୁଣ୍ଡାଉଥିଲା ସେତିକିବେଳେ ସୋନସୀ ଡାକିଲା, "ଆ ରୁଟି ଖାଇନେ ।" ପୁଅ ଯିବାକୁ ଉଠିଲା ଯେ ବାପ ତାକୁ ଅଟକାଇ ଜଲଦି ଜଲଦି ମୁଣ୍ଡ କୁଣ୍ଡାଇ ଦେଲା ।

ଦୁଇଟି ଥାଳିରେ ବଢ଼ା ହୋଇଥିଲା । ଥାଳିରେ ଦୁଇଟି ରୁଟି ଆଉ ଟିକିଏ ଭାତ ଥିଲା । ଦୁଇଟି ଜଲିବି ଥିଲା । ଜଲବି ଜାଗାରେ ଥିଲା ରାତିର ବଳକା ରୁଟି ଥିଲା । ମାଆ ବି କହିଥିଲା ଯେ ରୁଟି ବେଶୀ ହୋଇଯାଇଛି । ବାସି ବଳିଯିବ ।

ଟୋକାର ବାପ ଲାଜ ଲାଜ ହେଉଥିଲା । ଖଟିଆ ଉଢ଼ାଳରୁ ବାହାରୁନଥିଲା । ସୋନସୀ ପୁଅକୁ କହିଲା, "ବାପାଙ୍କୁ ଡାକି ଆଣ ।"

''ଚାଲ୍ ବାପା ଖାଇଦବୁ ।'' ତା'ର ବାପ ଆସିଲା । ଦୁହେଁ ଖାଇବାକୁ ଲାଜ କଲେ । ବାପ ନିଜ ଭାଗର ଜଲିବି ଗୋଟିଏ ପୁଅର ଦୋନାରେ ଦେଇଦେଲା । ପୁଅ ଦୁଇଟି ଜଲିବି ରଖି ଦେଇଥିଲା । ରଘୁବର ପ୍ରସାଦ ଖଟିଆ ପାଖରେ ବସିକରି ଦୁହିଁଙ୍କ ଖାଇବା ଦେଖୁଥିଲେ । ସୋନସୀ ଆହୁରି ରୁଟି ଦେଲା । ଖାଇ ପିଇ କରି ଜଲିବିର ଦୋନା ନେଇ ପୁଅ ଘରକୁ ଯିବାକୁ ବାହାରିଲା । ଗୁଲର ଗଛ ପାଖକୁ ଆସିବା ମାତ୍ରେ ସେ ବାପକୁ ଦୋନା ଧରାଇ ଦେଇ ଆଉ ଗଛ ଉପରେ ଚଢ଼ିଗଲା । ପୁଅ ଗଛର କୋଟରରେ ଥୁଆ ହୋଇଥିବା ପ୍ଲାଷ୍ଟିକ୍ ଥଳିରେ ଦିଆସିଲି ଓ ବିଡ଼ିର ବଣ୍ଡିଲ ଉପରୁ ପକାଇଲା, ''ୟାକୁ ନେ ବାପା'' ପୁଅ କହିଲା । ଡାଳରେ ପାଛୁଡ଼ାଟା ବନ୍ଧା ହୋଇଥିଲା । ସେ ପାଛୁଡ଼ାକୁ କାଢ଼ିଲା । ପାଛୁଡ଼ା ଆଢୁଆଳରେ ଗୋଟିଏ ଗୁଣ୍ଡୁଚି ବସିଥିଲା । ଯେ ସେ ଚମକି ପଡ଼ି ଗଛର ଡାଳର ଗଳିକନ୍ଦିକୁ ପଳାଇଗଲା । ଉପରୁ ସେ ତା'ର ପାଛୁଡ଼ା ଫୋପାଡ଼ିଲା ଯେ ବାପ ତାକୁ ଶୂନ୍ୟରୁ ଧରିନେଲା  ଗଛର କୋଟରରେ ଗୋଟିଏ ଖାକି ପେଣ୍ଟ ଥିଲା, ଯାହା ରାତିର ବର୍ଷାରେ ତିନ୍ତି ଯାଇଥିଲା । ତାକୁ ଧରି ସେ ତଳକୁ ଓହ୍ଲାଇଲା । ଗଛରେ ତା'ର ନିଜର ଘର ସଂସାର ସେ ଗୋଟେଇ ଆଣିଛି । କୋରଡ଼ରେ ଗୋଟିଏ ଅଧୁଲି ଥିଲା । ଘରୁ ବାହାରି ଆସି ସେ ସେଇଠି ରହୁଥିଲା । ଏବେ ସେ ନିଜ ଘରକୁ ଯାଉଛି । ବାଟରେ ସେ ଅଧୁଲିଟିକୁ ନିଜେ ବାପକୁ ଦେଇଦେଲା । ପୁଅ ତା'ର ପାଛୁଡ଼ାକୁ ନିଜ ମଥାରେ ପିନ୍ଧି ନେଇଥିଲା । ସେତେବେଳେ ସେ ବହୁତ ଖୁସି ଥିଲା । ସେତେବେଳେ ନା ବେଶୀ ଖରା, ନା ବର୍ଷା ପଡୁଥିଲା । ବାପା ହାତରୁ ସେ ଜଲିବିକୁ ମାଗି ନେଇଥିଲା ।

ଘରର କବାଟ ବନ୍ଦ ଥିଲା । ''ମାଆ'', ବୋଲି ପୁଅ ଡାକିଲା ।

''କ'ଣ ହେଲା କିରେ ?'' ମାଆ କହିଲା ।

''କବାଟ ଖୋଲ ମାଆ ।''

''ବାପା ଆସିବାର ବେଳ ହେଲାଣିରେ ।''

ମାଆ କବାଟ ଖୋଲିଦେଲା । ମା ଦୁହିଁଙ୍କୁ ଦେଖିଲା । ଆଜି ପରି ଦିନ ସେ କେବେ ଦେଖିନାହିଁ । ବହୁତ ଆଗକାଳର କୋଉ ଦିନ ଯେ ବା ଆଗାମୀ କେଉଁ ଦିନ, ରୋଜ-ରୋଜର ଦିନ ଯେ ଦୁହେଁ । ପୁଅ ମା ହାତକୁ ଜଲିବିର ଦୋନା ବଢ଼ାଇ ଦେଲା ।'' ମାଆ ଜଲବି ଖା' ।'' ମାଆ କହିଲା ଭିତରକୁ ଚାଲ । ତା'ପରେ ମାଆ ପୁଅର ବାପ ଆଡ଼କୁ ଚାହିଁଲା । ଯେମିତି ଏମିତିକା ଦିନେ ତ ହବାର ଇ ଥିଲା । ସେଇ ଦିନକ ଆଜିର ଦିନ ହୋଇଥିବ ଏକଥା ତାକୁ ଜଣା ନ ଥିଲା । ପୁଅକୁ କୁଣ୍ଢେଇ କୁଣ୍ଢେଇ ସେ ଘରକୁ ନେଇଗଲା ।

କଲେଜ ଯିବାର ସମୟ ହୋଇଯାଇଛି । ସାଧୁ ଆସିନାହିଁ । ରଘୁବର ପ୍ରସାଦ ଟେମ୍ପୋରେ କଲେଜ ଯିବାକୁ ବାହାରିଲେ । ସେ ଗୁଲର ଗଛ ଆଡ଼କୁ ଅନାଇଲେ ଟୋକାଟା ତ ସେଠାରେ ନ ଥିବ ଭାବି। ଟୋକା ସେଇଠି ଥିବାର ଦେଖାଗଲା । ଏଇଲେ ପୁଣି କାହିଁକି ଆସିଗଲା ? ବିଡ଼ିର ଅଭ୍ୟାସ ଭାଙ୍ଗିନାହିଁ ।

''ଏଠିକି କାହିଁକି ଆସିଗଲୁ ? ବିଡ଼ି ଟାଣୁଛୁ ? ବାପା ସାଙ୍ଗରେ ଘରକୁ ଯାଇଥିଲୁ ନା ?''

''ଘରୁ ଆସିଯାଇଛି । ବିଡ଼ି ଟାଣୁ ନାହିଁ ।'' ସରଳ ଭାବେ ଟୋକା କହିଲା ।

''ତଳକୁ ଓହ୍ଲା ।'' ଟୋକାଟା ଓହ୍ଲାଇଲା । ରଘୁବର ପ୍ରସାଦ କହିଲେ ପକେଟ ଦେଖା ।'' ସେ ପକେଟର ତଲାସି ନେଲେ । ପକେଟରେ କିଛି ନାହିଁ । ପକେଟର ତଲାସି ନେଇଛନ୍ତି । ଗଛର ତ ନେଇ ନାହାନ୍ତି । ସେ ପାଶୋରିଗଲେ ଯେ ତାଙ୍କର କଲେଜ ଯିବାକୁ ଅଛି । ମୋଟା ଡାଳର ଗଛରେ ଚଢ଼ିବା ସହଜ ଥିଲା । ସେ ଚଢ଼ିଗଲେ । ତଳେ ଉଙ୍କିମାରି ଦେଖିଲେ ପିଲାଟା ପଳେଇ ଯାଇନାହିଁ ତ ? ପିଲା ଠିଆ ହୋଇଛି ସେଇମିତି । ଗଛର ଗୋଟିଏ କୋରଡ଼ ରଘୁବର ପ୍ରସାଦଙ୍କ ଦୃଷ୍ଟିରେ ପଡ଼ିଗଲା ଯେମିତି ଏଇଟା ନିଶ୍ଚୟ । ସେ ତ ଡେଙ୍ଗା ମଣିଷ । ଗଛର କୋରଡ଼ ଭିତରେ ହାତକୁ ପୂରାଇ ସେ ଅଣ୍ଡାଳିଲେ । କୋରଡ଼ ଓଦା ହୋଇଥିଲା । ଓଦା ବିଡ଼ି ଓ ଗୋଟିଏ ଖଣ୍ଡିଆ କାଗଜ ବି ଥିଲା । ଆଉ କିଛି ନ ଥିଲା । ଏମିତି କାମ ସବୁ କରିବାକୁ ତାଙ୍କୁ ବେଶ୍ ମଜା ଲାଗୁଥିଲା । ସେ ଗୋଟିଏ ଖେଳ ପରି ଏହି ଖେଳ ଖେଳୁଥାନ୍ତି । ଗୋଟିଏ ଡାଳ ଉପରେ ବସି ସେ ଏଣିକି ତେଣିକି ଅନାଇଲେ । ଗୋଟିଏ ଚଢ଼େଇର ବସା ଥିଲା । ଚଢ଼େଇ ବସା ଭିତରେ ନିଜର କିଛି ଜିନିଷ ରଖି ଦେବାକୁ ଚାହୁଁଥିଲେ । କ'ଣ ରଖିବେ ସେ ବୁଝିପାରୁନଥିଲେ । ଟେମ୍ପୋରେ ଯିବାଲାଗି କିଛି ଖୁଚୁରା ପଇସା ପଡ଼ିଛି । ଗୋଟିଏ ସୁଉକି ପକେଇ ଦେବେ କି ? ସୁଉକିଟା ଦେଖି ଚଢ଼େଇ କ'ଣ ବିଚାରିବ ? ରାଗିଯାଇ ନିଜର ବସାଟାକୁ ଛାଡ଼ି ଦେବନାହିଁ କି ? ସେ ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ । ଗୁଳର ଗଛର ଗୋଟିଏ ପତ୍ର ସେ ଭାଙ୍ଗିଦେଲେ ଓ ସେ ବସା ଭିତରେ ଆସ୍ତେ ଥୋଇଦେଲେ । ତହିଁରେ ଚଢ଼େଇ ନ ଥିଲା କି ତା'ର ଅଣ୍ଡା ଓ ପିଲା କେହି ନ ଥିଲେ । ଗଛର କୋରଡ଼ ଭିତରେ ସେ ଗୋଟିଏ ସୁଉକି ପକାଇ ଦେଲେ । ପୁଣିଥରେ ସେ ସୁଉକିଟାକୁ ଅଣ୍ଡାଳିଲେ ଯେ ଆଉ ମିଳିଲା ନାହିଁ । ସେ ତଳକୁ ଓହ୍ଲାଇ ଆସିଲେ । ରଘୁବର ପ୍ରସାଦ ବିଡ଼ିର ଖଣ୍ଡଟିକି ପିଲାଟାକୁ ଦେଖାଇଲେ ଆଉ କହିଲେ, ''ଏଇଟା କୋରଡ଼ ଭିତରେ ଥିଲା ।'' ପିଲାଟା କହିଲା । ''ସେଇଟା କେତେ ଦିନର ବିଡ଼ି ।'' ରଘୁବର ପ୍ରସାଦ ହୁସିଆର ହୋଇ ଓଦା କାଗଜର ଖଣ୍ଡକୁ ଖୋଲିଲେ । କାଳେ ଛିଣ୍ଡିଯିବ ବୋଲି । ଶ୍ରୀକୃଷ୍ଣଙ୍କର ଚିତ୍ର ଥିଲା । ଶ୍ରୀକୃଷ୍ଣ ଗାଈ ପାଖରେ ଠିଆ ହୋଇଛନ୍ତି। ଛିବିଟିକୁ ପିଲାଟି ନେଇଗଲା । ରଘୁବର ପ୍ରସାଦ କିଛି କହିବା ପୂର୍ବରୁ ପିଲାଟି ଗଛ ଉପରେ ଚଢ଼ିଗଲା । ପିଲାଟା ପାଟିକରି କହିଲା, ''ହାତୀ ଆସୁଛି ।'' ରଘୁବର ପ୍ରସାଦ ପିଲାକୁ କହିଲେ, ''କୋରଡ଼ ଭିତରେ ମୁଁ ସୁଉକିଟାଏ ପକେଇ ଦେଇଛି । ଖୋଜିକରି ନେଇଯିବୁ ।'' ଖୋଜିକରି ନେବା କଥା ଏଇଥି ପାଇଁ କହିଲେ ଯେ ରଘୁବର ପ୍ରସାଦ ଖୋଜିଥିଲେ କିନ୍ତୁ ପାଇ ନ ଥିଲେ । ''ହଁ ।'' ପିଲାଟି ପାଟିକରି କହିଲା ।

ରଘୁବର ପ୍ରସାଦ ହାତୀକୁ ଦେଖି ଗୋଟିଏ ଦୀର୍ଘଶ୍ୱାସ ପକାଇ ସେଇଠି ଅଟକିଗଲେ ହାତୀ ତାଙ୍କ ପାଖକୁ ଆସୁଛି ଭାବି । ହାତୀ ଅସୁସ୍ଥ ଥିଲା ଭଳି ଚାଲୁଥିଲା । ସାଧୁ ଅସୁସ୍ଥ ଥିବା ହେତୁ ହାତୀ ହୁସିଆର ହୋଇ ଚାଲୁଥିଲା । ସେଇଥିପାଇଁ ରୋଗା ଦେଖାଯାଉଥିଲା ।

ପିଲାଟା ଗଛରୁ ଓହ୍ଲାଇ ଏକଥା କହିବାକୁ ଗଲା ଯେ ରଘୁବର ପ୍ରସାଦ ହାତୀରେ ଗଲେ । ଫେରି କରି ସେ ପୁଣି ଗଛ ଉପରେ ବସିଗଲା । ସେ ଗଛ ଉପରେ ଲୁଚିବା ସକାଶେ ବସି ନ ଥିଲା । ସେ

ଉନ୍ମୁକ୍ତ ଥିଲା । ଗୋଟିଏ ବନ୍ଦ ଗଛରୁ ଓହ୍ଲାଇ ଆସି ଏକ ଉନ୍ମୁକ୍ତ ଗଛ ଉପରେ । ପବନରେ ଗଛଡାଳ ଦୋହଲୁଥାଏ। ସେ ମଧ୍ୟ ଦୋହଲୁଥାଏ । ଦୂରରେ ବାପା ଗାଈ ଚରାଇବାର ଦେଖାଗଲା ବୋଲି ସେ ପୁଣି ଗଛରୁ ଓହ୍ଲାଇ ପଡ଼ିଲା ଏବଂ ନିଜର ବାପା ପାଖକୁ ଚାଲିଗଲା ।

''ଶୁଣ ।'' ରାତିରେ ରଘୁବର ପ୍ରସାଦ ସୋନସୀକୁ କହିଲେ ।

''କ'ଣ ହେଲା ?''

''ସାଧୁ ହାତୀକୁ ବସାଇବାକୁ 'ବଇଠ' କହେ ଆଉ ଠିଆ କରିବାକୁ କହେ ''ମଲି''

''ହଁ ମୋତେ ବି ଜଣା ଅଛି ଯେ ଚାଲିବା ଲାଗି ବି ମଲି କହିଥାଏ ।''

''ଚାଲିବା ଲାଗି ଆଉ କ'ଣ କହିଥିବ ।''

''ସାଧୁ ଭ ମଲି କହିଥିଲା ।''

''ତେବେ କ'ଣ ଠିଆ ହେବାକୁ ଆଉ କିଛି କହିଥିବ ?''

''ମଲି ଠିକ୍ । ବସିଥିବା ହାତୀ ମଲି କହିଲେ ଠିଆ ହୋଇଯାଏ । ପୁଣି ମଲି ବୋଲି କହିଲେ ଠିଆ ହୋଇଥିବା ହାତୀ ଚାଲିବାକୁ ଆରମ୍ଭ କରିବ ।''

''ମୁଁ ମନଦେଇ ଶୁଣିବି ।''

''କାଲି ତମେ ସାଧୁକୁ ପଚାରିକରି ମଲି ବୋଲି କହିବ । ହାତୀ ତୁମ କଥା ମାନିଲେ ଆମକୁ ପରେ କିଛି ଅସୁବିଧା ହେବନି ।''

''ହୁଏତ ସେ ଖାଲି ସାଧୁ କଥାକୁ ମାନେ ।''

''କହିକରି ଦେଖନା । କଥା ମାନିଲେ ଭଲ ହେବ ।''

''ମୋର ମନେହୁଏନା ଯେ ହାତୀ ମୋ କଥାକୁ ମାନିବ । ମୁଁ ତାକୁ ଠିଆ ହେବାକୁ କହୁଥାଏ ଆଉ କୋଉ ବାଟଗଲା ଲୋକ ବଦମାସୀ କରି ତାକୁ ବସିବାକୁ କହୁଥିବ ତେବେ ତ ସେ ବସିପଡ଼ିବ । ଆଉ କେହି ଠିଆ ହେବାକୁ କହିଦେଲେ ସେ ଠିଆ ହୋଇଯିବ । ଏଇମିତି ହାତୀ ଉଠ୍ ବସ୍ କରିଯାଉଥିବ । କେତେ ଅସୁବିଧା ହେବ ।''

''ତଥାପି ତମେ କହିକରି ଦେଖିବ । ଆମେ କ'ଣ ସହଜରେ ଜାଣି ପାରିଛେଁ ଯେ ମଲି କହିଲେ ହାତୀ ଚାଲେ ? ସାଧୁ ପରିଷ୍କାର କରି କିଛି କହେନା ।''

''କେତେ ଥର ତ ଖାଲି ବିଡ଼ି ବିଡ଼ି କରିଥାଏ ।''

''ସାଧୁ ଦୁର୍ବଳ ଓ ରୋଗିଣା ହୋଇଯାଇଥିଲା । ସେ ହାତୀରେ ହିଁ ଯିବା ଆସିବା କରୁଥିଲା । ତା'ର ନିଜର ଶକ୍ତି ଅପେକ୍ଷା ହାତୀର ଶକ୍ତି ଉପରେ ବେଶୀ ବିଶ୍ୱାସ ଥିଲା । ତା'ର ବିଶ୍ୱାସ, କିଛି ହେବ ନାହିଁ ।''

କଲେଜ ଯିବାବେଳେ ସାଧୁ ଟେମ୍ପୋ ଷ୍ଟାଣ୍ଡରେ ଅଟକିଲା । ହାତୀରୁ ଓହ୍ଲାଇ ସେ ପାନ ଦୋକାନକୁ ଚାଲିଗଲା । ହାତୀରେ ବସି ରଘୁବର ପ୍ରସାଦ ବିଚାରିଲେ ଏଇ ସୁଯୋଗ । ସେ ହାତୀକୁ 'ବଇଠ୍' ବୋଲି କହିଲେ ହାତୀ ବସିପଡ଼ିବ । ହାତୀ ବସିଗଲେ ତାଙ୍କର କିଛି ବିପଦର ଆଶଙ୍କା ନାହିଁ। ହାତୀର ଗଦି ଉପରେ ବସିରହି ସେ ନିଜକୁ ପ୍ରସ୍ତୁତ କଲେ ଯେମିତି ହାତୀ ବସିଲାବେଳେ ସେ ପଡ଼ି

ନଯିବେ । ତାଙ୍କର ବିଶ୍ୱାସ ଥିଲା ଯେ ବଇଠ କହିଦେଲେ ସେ ବସିପଡ଼ିବ ଓ ବଇଠ ଶବ୍ଦ 'ବୈଠ୍' ଶବ୍ଦ ସଙ୍କେତଟି ମିଶିଯାଉଛି । ବଇଠର ଅର୍ଥ ଆକ୍ରମଣ କରିବା ତ ହୋଇ ନପାରେ । ଆଗକୁ ନଇଁ ପଡ଼ି ସେ ଯେମିତି ହାତୀର କାନ ପାଖରେ କହିପାରିବେ ଓ ପାଖ ଆଖର ଲୋକ କେହି କିଛି ଶୁଣି ନପାରିବେ ସେଥିପାଇଁ ସେ ଆସ୍ତେ କରି 'ବଇଠ୍' କହିଲେ କାଳେ ହାତୀ ଶୁଣି ପାରି ନ ଥିବ ବୋଲି ଆଉଥରେ ବେଶୀ ପାଟିକରି କହିଲେ । ଯଦି ସେ ଶୁଣି ପାରିଥାଏ ତେବେ ସେ ରଘୁବର ପ୍ରସାଦଙ୍କ କଥା ମାନିଲା ନାହିଁ । ରଘୁବର ପ୍ରସାଦ ସାମନାକୁ ଘୁଞ୍ଚୁରି ଆସିଲେ । ସାଧୁ ଯେଉଁଠି ବସେ ସେ ଜାଗାକୁ । ନଇଁପଡ଼ି ସେ ହାତୀର କାନରେ ବଇଠ୍ କହିଲେ । ହାତୀ ବସିଲା ନାହିଁ । ସାଧୁ ଫେରିବା ଆଗରୁ ସେ ଘୁଞ୍ଚି ଆସି ପୁଣି ଗଦି ଉପରେ ବସିପଡ଼ିଲେ ।

ସେ ସୋନସୀକୁ କହିଲେ, ''ସାଧୁ ଠିକ୍ ଯେମିତି ବଇଠ୍ କହେ ସେଇମିତିକା ସେ କହିଥିଲେ । ତାଙ୍କର ଉଚ୍ଚାରଣ ଠିକ୍ ଥିଲା । ''ହାତୀ ମୋ କଥା ମାନିଲା ନାହିଁ ।''

ସାଧୁଠାରୁ ସେ ଏସବୁ ଶିଖିବାକୁ ଚାହୁଁ ନ ଥିଲେ । ଯଦି ଶିଖିନେଇ ଥାନ୍ତେ ତେବେ ନିଶ୍ଚୟ ସାଧୁ ହାତୀକୁ ତାଙ୍କ ଜିମା ଦେଇ ବହୁତ ସମୟ ଯାକେ ବନାରସକୁ ଚାଲିଯାଇଥାନ୍ତା ।

''ଏଥରକ ଯେତେବେଳେ ସାଧୁ ଧୂଆଁପତ୍ର ଖାଇବାକୁ ଓହ୍ଲାଇବ ସେତେବେଳେ ମଲି କହି ଦେଖିବ ହାତୀ ଚାଲୁଛି ନା ନାହିଁ।''

''ଯଦି ଚାଲିବାକୁ ଲାଗିବ ତାକୁ ରୋକିବାକୁ ମୁଁ କ'ଣ କହିବି ? ରୋକିବା ସକାଶେ ସାଧୁ କ'ଣ କହେ ତାହାତ ଜଣାନାହିଁ ।''

''ତମେ ବଇଠ୍ କହିଦବ । ବସି ପଡ଼ିଲେ ତ ରୋକି ହୋଇଯିବ ।'' ସୋନସୀ ମୁରୁକି ହସି କହିଲା ।

''ଚାଲୁ ଚାଲୁ ବସି ପଡ଼ିଲେ ସେ ପଡ଼ିଯିବ।''

''ଅଟକି ଯାଇ ତା'ପରେ ବସିବ । ଆମେ ଚାଲୁ ଚାଲୁ ଅଟକି କହିପାରୁ ନା ନାହିଁ ? ସେଇମିତି ।''

''ହାତୀ ଯେତେ ସମଝଦାର ସେତିକି ଆଜ୍ଞାବହ ବି । ସେ ଆଜ୍ଞା ପାଳନ କରିବାର ସମଝଦାରୀ କରିବ ଅର୍ଥାତ୍ ଅଟକିବ ନାହିଁ । ଚାଲୁ ଚାଲୁ ବସିପଡ଼ିବ ।''

''ଶୁଣ ହାତୀ ଯେତେବେଳେ ବସିପଡ଼ିବ ତାକୁ ମଲି କହି ଠିଆ କରାନ୍ତି । ସେହିପରି ଯେବେ ହାତୀ ଚାଲୁଥିବ ତାକୁ ମଲି କହି ଠିଆ କରାଇ ପାରିବାନି ?

''ହଁ ସେକଥା ହୋଇପାରେ । ତାହା ହେଲେ କ'ଣ ମଲି ଶବ୍ଦର ତିନିଟା ଅର୍ଥ ହେବ । ମଲି ମାନେ ଉଠି ଠିଆ ହେବା, ମଲି ବୋଇଲେ ଚାଲୁଥିବା, ଆଉ ମଲିମାନେ ଅଟକି ଯିବା ।

''ମୋର ବି ମନେ ହୁଏ ଯେ ମଲିର ତିନିଟା ଅର୍ଥ ହୋଇଥିବ । ଯଦି ତାହା ନ ହୋଇଥାଏ ତେବେ ତୁମ କହିବାରେ ହାତୀ ଚାଲିଗଲେ ସାଧୁ ଦଉଡ଼ି ଦଉଡ଼ି ଅଟକିବାର ଆଜ୍ଞା ବଡ଼ ପାଟିରେ ଦେବ । ଏହିଭଳି ଭାବରେ ହାତୀ ଅଟକି ଯିବ ।''

''ସାଧୁ ତ ଅସୁସ୍ଥ । ସେ ଦଉଡ଼ି ପାରିବ ନାହିଁ ।''

''ହଁ । ମୁଁ ଭୁଲିଯାଇଥିଲି ।''

''ସାଧୁକୁ ଯେତେବେଳେ ଜଣାଯିବ ଯେ ତାକୁ ନ କହି ଆମେ ହାତୀକୁ ହୁକୁମ୍ ଦେଉଛେ ତାକୁ ଖରାପ ଲାଗିବ । ମୁଁ ବି ଏତିକି ଚାହୁଁଛି ଯେ ଯେବେ କୌଣସି କାରଣରୁ ହାତୀଟା ଆମର ଦାୟିତ୍ୱରେ ରହିଯାଏ ଆମେ ଯେମିତି ସେ ଦାୟିତ୍ୱକୁ ତୁଲାଇ ପାରୁ ।'' କଲେଜରୁ ଫେରିବା ବାଟରେ ଦିନେ ଟେମ୍ପୋ ଷ୍ଟାଣ୍ଡରେ ସାଧୁ ଅଟକିଲା । ରଘୁବର ପ୍ରସାଦଙ୍କୁ ଇଚ୍ଛା ହେଲା ଯେ ଏଥରକ ହାତୀକୁ ଚାଲିବା ପାଇଁ ମଲି କହିବେ । ସାଧୁ ଧୂଆଁ ପତ୍ର ଆଣିବାକୁ ଗଲାରୁ ସେ ହାତୀର ବେକଘଣ୍ଟାକୁ ଖସି ଆସିଲେ । ସେ 'ମଲି' ବୋଲି କହିଲେ । ଅନେକ ଥର କହିଲେ, ତା'ପରେ ନିରାଶ ହୋଇଗଲେ ।

ପଡ଼ିଶା ଘର ଏବେ ସୁଦ୍ଧା ଆସିନାହାନ୍ତି । ରଘୁବର ପ୍ରସାଦ ପାଇଖାନାର ତାଲା ବାହାର କରିଦେଇଥିଲେ । ତାଲା ଲଗାଇବାର ଦରକାର ନ ଥିଲା । ଘର ମାଲିକକୁ ସେ କହିଲେ, ''ପାଇଖାନାର ତାଲା ମୁଁ ବାହାର କରିଦେଇଛି । ''

''ଠିକ୍ ଅଛି ।'' ଘର ମାଲିକ କହିଲା ।

''ପାଇଖାନାର ଭଡ଼ା ତ ଆଉ ଦେବାକୁ ପଡ଼ିବନି ?''

''କାହିଁକି ଦବାକୁ ହବ ?''

''ପଡ଼ିଶା ଘର ଏତେ ଦିନଯାକେ ଆସି ନାହାନ୍ତି, କେବେ ଆସିବେ ?''

''କେଜାଣି ?'' ଘର ମାଲିକ କହିଲା । ଆଠ ଟଙ୍କା ମାସିକ ଖର୍ଚ୍ଚ ବନ୍ଦ ହେବାରୁ ସୋନସୀ ଖୁସି ଥାଏ । ପାଇଖାନାର ତାଲା ଓ ଚାବିକୁ ରଘୁବର ପ୍ରସାଦ ସାବୁନରେ ଧୋଇ ବାହାରେ ଖରାରେ ରଖି ଦେଇଥିଲେ ଯେମିତିକି ଜଙ୍କ୍ ନ ଲାଗିଯାଏ ।

''ତାଲା ଚାବି ବାପାଙ୍କୁ ଦେଇଦେବା ? ଆଗରୁ ମନେ ପଡ଼ିଥିଲେ ମାଆ ହାତରେ ଇ ପଠାଇ ଦେଇଥାନ୍ତେ । ପ୍ରତିଥର ତାଲା ଦେବାକୁ ଭୁଲିଯାଉ ।'' ରଘୁବର ପ୍ରସାଦ କହିଲେ ।

ସୋନସୀ ଘର କାମରେ ବ୍ୟସ୍ତ ହୋଇଯାଇଥିଲା । ରଘୁବର ପ୍ରସାଦ ପଢ଼ାପଢ଼ି କରୁଥିଲେ । ସୋନସୀ ବାସନ ମାଜୁଥିଲା । ରଘୁବର ପ୍ରସାଦ ପରସ୍ୱର ଶୁଣିଲେ:

ଏଇଲେ ସଜନାର ତରକାରୀ କରିଦେବି, ସନ୍ଧ୍ୟାବେଳକୁ ଛୁଇଁ କାଟିକରି ରାନ୍ଧିଦେବି ।'' କିଛି ସମୟ ପରେ ତା'ର ମନ ବଦଳିଗଲା । ''ଏଇଲେ ଛୁଇଁ କରି ଦେବି ।'' ତା'ପରେ ରଘୁବର ପ୍ରସାଦ ସୋନସୀକୁ ପଚାରିଲେ,''ତୁମେ କ'ଣ କହୁଥିଲ ?''

''କିଛି କହିନି ତ ।'' ସୋନସୀ କହିଲା ।

''ସୋନସୀ ଏଇଲେ ତମେ ସଜନା ଛୁଇଁ ରାନ୍ଧୁଛ ନା ?''

''ତମେ କେମିତି ଜାଣିଲ ?''

''ଜାଣିଛି ।''

କିଛି ସମୟ ପରେ ରଘୁବର ପ୍ରସାଦ ଶୁଣିଲେ । ''ଦେଖିଲ ଝାଡୁ ତ କରିଦେଇଛି କିନ୍ତୁ ପୋଛା କରିବାକୁ ଭୁଲିଗଲି ।''

''ତମେ ଝାଡୁ ଲଗେଇଦେଇଛ କିନ୍ତୁ ପୋଛା ଲଗାଇବାକୁ ଭୁଲିଯାଇଛ । ଏଇଲେ ପୁଣି ପୋଛା ଲଗାଇଲେ ଆଉ ଥରେ ଗାଧୋଇବାକୁ ହେବ । ଏଇକଥା ଭାବୁଥିଲ ନା ? ଗୋଟେ କାମ କର । ଆଜି ତୁମେ ପୋଛା ଲଗାଅ ନାହିଁ ।'

''ହଁ, ମୁଁ ତ ସେଇକଥା ଭାବୁଥିଲି । କିନ୍ତୁ ତମେ କେମିତି ଜାଣିଲ ?''

''ଏଇମିତି,'' କୋଉ କୁହୁକବାଲା ପରି ରଘୁବର ପ୍ରସାଦ କହିଲେ ।

''ଏଇଲେ ମୁଁ ଯାହା ଭାବିବି ସେକଥା ମୋତେ କହିଦବ ।''

''ହଁ କହିଦେବି । କିନ୍ତୁ ଏଇଲେ ନୁହେଁ ।'' ଯେତେବେଳେ କହିବାର ହେବ, କହି ଦେବି ।

''ଚୁଡ଼ିବାଲି ଯେବେ ବାହାରିବ । ତାଠାରୁ ଆଜି ଚୁଡ଼ି ନେବି ।'' ସୋନସୀ କାମ କରୁ କରୁ କହିଲା । ରଘୁବର ପ୍ରସାଦଙ୍କର ମନେ ହେଲା ଯେ ତାଙ୍କୁ ହିଁ କୁହାଗଲା ।

''କ'ଣ କହିଲ ?'' ରଘୁବର ପ୍ରସାଦ ପଚାରିଲେ ।

''କିଛି କହିବନି ତ ।'' କାର୍ଯ୍ୟବ୍ୟସ୍ତ ସୋନସୀ କହିଲା ।

''ଶୁଣ ଆଜି ଦିପହରେ ଚୁଡ଼ିବାଲା ଠାରୁ ତମେ ଚୁଡ଼ି ଖର୍ଦ୍ଦ କରିଦେବି । ରଘୁବର ପ୍ରସାଦ କହିଲେ ।

''ମୁଁ ତ ସେଇକଥା ଭାବୁଥିଲି ।'' ଗୋଟିଏ ଛୋଟ ଝିଅ ଭଳି ଆଶ୍ଚର୍ଯ୍ୟ ହୋଇ ସେ ଠିଆ ହୋଇଗଲା, ଅବାକ୍ ହୋଇ । ତମକୁ କହିଲେ ତ ଆଣି ଦିଅ ନାହିଁ।'' ସେ କହିଲା ।

''ତମର ସେ ଅଣିକିଆ, ଦି ଅଣିକିଆ ମାପର ଚୁଡ଼ିର ସାଇଜ ମୁଁ ବୁଝିପାରେ ନାହିଁ । ତମେ ସାଙ୍ଗରେ ଥିଲେ କିଣିନବା ।''

କିଛି ସମୟ ପରେ ସୋନସୀ କାମ କରୁ କରୁ କହିଲା, ''ମୁଁ ଆଜି ଚୁଡ଼ି ନେଇ ନେବି ।''

ରଘୁବର ପ୍ରସାଦ ଏକଥା ଶୁଣିଲେ । ସେ ବୁଝିଗଲେ ଯେ କଥାଟା ତାଙ୍କୁ କୁହାଯାଇ ନାହିଁ । ସେ ନିଜ ମନକୁ ମନ କହିଛି ।

''ଚୁଡ଼ିବାଲି ଠାରୁ ତୁମେ ଆଜି ଚୁଡ଼ି ନେଇନବ । ସେଇଟା ଠିକ୍ ହବ ।'' ରଘୁବର ପ୍ରସାଦ ସୋନସୀର ମନର କଥାଟି କହିଲେ ।

''ତୁମେ ମୋ ମନର କଥାକୁ ଶୁଣ ନାହିଁ । ଯେବେ ମନର କଥା ଉପରେ ଧ୍ୟାନ ରହିବ ତେବେ ପଢ଼ା ପଢ଼ି କେମିତି କରିବ ?'' ସୋନସୀ ଅଟା ଦଳୁଥିଲା ଆଉ ମନେମନେ ଭାବୁଥିଲା । ରଘୁବର ପ୍ରସାଦ ପଢ଼ାପଢ଼ି କରୁଥିବାରୁ ସେ ରଘୁବର ପ୍ରସାଦଙ୍କ ସଙ୍ଗେ କଥାବାର୍ତ୍ତା କରିପାରୁ ନ ଥିଲା । ସେ ଭାବୁଥିଲା ଯେ ବିଜୁଳି ଖମ୍ବ ତଳେ ପିଲାମାନଙ୍କୁ ପଢ଼ାଉ ପଢ଼ାଉ ସେ ନିଶ୍ଚୟ ଥକି ଯାଉଥିବେ । ଆଜି ରାସ୍ତାର ବତୀ ଯେବେ ଚାଲିଯାଏ ତେବେ କ'ଣ ହେବ ? ଏତେ ରାତି ଯାକେ ପିଲାଙ୍କୁ ପଢାନ୍ତି, ଫଳରେ ବିଛଣାକୁ ଛୁଇଁବା ମାତ୍ରକେ ନିଦ ଆସିଯାଏ । ସେ ବି ବିଚାରିଲେ ଆଜି ରାତିରେ ପିଲାମାନଙ୍କୁ ଛୁଟି ଦେଇଦେବେ । ରଘୁବର ପ୍ରସାଦ ନିଜ ଥୋମଣିରେ ହାତଦେଇ ସୋନସୀକୁ ଅଟା ଦଳିବାର ଦେଖୁଥାନ୍ତି ଓ ଭାବୁଥାନ୍ତି ସେ ସୋନସୀକୁ କହିବାକୁ ଆରମ୍ଭ କଲେ, ''ମୁଁ ଆଜି ରାତିକ ।'' ଏହାପରେ ସେ ଯାହା କହିବାକୁ ଚାହୁଁଥିଲେ ତାହା ସୋନସୀ ମୁହଁରୁ ବାହାରିଲା, ''ପିଲାଙ୍କୁ ଛୁଟି ଦେଇଦେବି ।''

ଏହାପରେ ରଘୁବର ପ୍ରସାଦ ଯେଉଁ ପଦିକ କହିଲେ ସେଇଟା ସୋନସୀ କହିବାକୁ ଚାହୁଁଥିଲା । ''ଆଜି ରାତିରେ ।'' ରଘୁବର ପ୍ରସାଦ କଥାଟା ଶେଷ କରିବା ପୂର୍ବରୁ ସୋନସୀ ଜଲଦି ଜଲଦି କହିଦେଲା, ''ଚେଇଁବା... ଏଇଆ କହିବାକୁ ଯାଉଥିଲ ତ ?''

''ହଁ ସେଇଆ କହୁଥିଲି, କିନ୍ତୁ ଆଉ କିଛି ବି କହିଥାନ୍ତି ।''

ଏହା ପରେ ସୋନସୀ ଲୁଚେଇ କରି ଭାବିଲା ଚୁଡ଼ି ଏଇଲେ କିଣିବା ନାହିଁ ପରେ କିଣିନେବା । ସେ ଲୁଚେଇ କରି ଭାବିଥିବାରୁ ରଘୁବର ପ୍ରସାଦ ଶୁଣିପାରିଲେ ନାହିଁ । କ୍ୟାଲେଣ୍ଡର ପବନରେ ଫଡ଼ ଫଡ଼ କରୁଥିଲା । ତେଣୁ ପର ମାସର ତାରିଖ ଦେଖା ଯାଉଥିଲା । ଆଗାମୀ ଦିନଗୁଡ଼ିକ ଦିଶିଯାଉଥିଲା । ବର୍ତ୍ତମାନର ସୁଖ ଏତେ ବେଶୀ ଥିଲା ଯେ ଭବିଷ୍ୟତ ଯେପରି ଆଗର ରାସ୍ତା ଉପରେ ଉପେକ୍ଷିତ ଭଳି ପଡ଼ି ରହିଥାଏ । ସେଠି ଯାଇ ପହଞ୍ଚିବାବେଳକୁ ମନେହେବ ବିଚରାଟି ନିଜେ ନିଜେ ରାସ୍ତାରୁ ହଟିଯାଇ ଦୂରକୁ ଚାଲିଯିବ ।

ରଘୁବର ପ୍ରସାଦ ବହି ବନ୍ଦ କରିଦେଲେ । ସେ ଏପରି ଉଠିଲେ ସତେ ଯେପରି ସ୍ୱପ୍ନରେ ଉଠିପଡ଼ିଲେ ।

ସୋନସୀକୁ ରଘୁବର ପ୍ରସାଦଙ୍କର ସ୍ୱପ୍ନରେ ଯିବାର ଶବ୍ଦ ଶୁଣାଯାଉଥିବ ବା କିଛି ଆଭାସ ମିଳିଥାଇପାରେ । ସେ ଅଟା ହାତକୁ ଧୋଇ ସାରିଥିଲା । ରୋଷ ଘରର କନାରେ ସେ ହାତ ପୋଛି ନେଇଥିଲା । ଆଉ ସେ ବି ସ୍ୱପ୍ନକୁ ଚାଲିଗଲା । ଦୁଇପାଦ ରଘୁବର ପ୍ରସାଦଙ୍କ ଆଡ଼କୁ ନିଜେ ନିଜେ ଚାଲିଲା ତ ଆଉ ଦୁଇପାଦ ରଘୁବର ପ୍ରସାଦଙ୍କ ଆଶ୍ରୟରେ ଚାଲିଲା । ତା'ର ଇଚ୍ଛା ହେଉଥିଲା ରଘୁବର ପ୍ରସାଦ ତାକୁ ନେଇ କରି ଚାଲୁଥାନ୍ତୁ ।

''ଶୁଣ, ତମେ ଚୁଡ଼ିବାଲି ଠାରୁ ନିଶ୍ଚୟ ଚୁଡ଼ି କିଣିନବ ।'' ରଘୁବର ପ୍ରସାଦ କହିଲେ ।

''ଯେତେ ହୁସିଆର ହେଲେ ବି ଭାଙ୍ଗିଯାଏ ।'' ନିଜ ହାତକୁ ଅନାଇ ସୋନସୀ କହିଲା । ହୁଏତ ଚୁଡ଼ିର ପ୍ରଥାଟି କେଉଁ ପ୍ରେମିକ ଦ୍ୱାରା ସୃଷ୍ଟି ହୋଇଛି ଯେପରି ପ୍ରେମିକାକୁ କିଛି କାମ କରିବାକୁ ନପଡ଼େ ଓ ଚୁଡ଼ିଗୁଡ଼ିକ ଭାଙ୍ଗିବାରୁ ରକ୍ଷା ପାଉଥିବେ ।

''ବାଟରେ ଗଛର ପିଲାଟାକୁ କହିଦେବ ଯେ ଯେବେ ଚୁଡ଼ିବାଲି ଦିପହରକୁ ବାହାରେ ତାକୁ ରୋକିନବ । ମୁଁ ଭିତରେ ଥାଏ ତ, ଜାଣିପାରେ ନାହିଁ ।''

ଗଛ ଉପରେ ପିଲାଟା ଥିଲେ କହିଦେବି ।

ରଘୁବର ପ୍ରସାଦ ଦେଖିଲେ ପିଲାଟା ଗଛ ଉପରେ ଥିଲା ।

''କ'ଣ କରୁଛୁ ?'' ରଘୁବର ପ୍ରସାଦ ପଚାରିଲେ ।

''କିଛି ନାହିଁ ।''

''ଦି'ପହରେ ଚୁଡ଼ିବାଲି ବାହାରିଲେ ତାକୁ ଅଟକାଇ ସୋନସୀକୁ କହିଦବୁ ।''

''ହଁ ଅଟକାଇ ଦେବି ।''

''ସୁଉକି ବାହାର କରିଥିଲୁ ?''

''ହଁ ବାହାର କରିଥିଲି ।''

କୋରଡ଼ରେ ରଖିଥିବା ଗୋଟିଏ ସିଲଟ । ପଟି ଆଉ କଲମ ଆଣିଦେବି ? ତୁ ଉପରେ ବସି ବସି ପଢ଼ିବୁ । ତଳେ ବସିକରି ସୋନସୀ ତତେ ପଢ଼ାଇଦେବ । ତୋ ସାଙ୍ଗରେ ଗଛର ଗୁଣ୍ଡୁଚି ଆଉ କୁଆ ବି ପଢ଼ିନେବେ ।''

''ମୁଁ ପଢ଼ିବି ନାହିଁ ।'' ପିଲାଟି କହିଲା ।

''ବିଡ଼ି ଟାଣିଥିଲୁ ?''

''ଟାଣି ନାହିଁ ।'' ରଘୁବର ପ୍ରସାଦ ଚାଲିଗଲେ ।

ବାପାଙ୍କର ଚିଠି ଆସିଛି । ସୋନସୀକୁ ଗାଁକୁ ଡକାଇଛନ୍ତି । ଦି'ଦିନ ଗାଁରେ ରହି ତା'ପରେ ସେ ବାପଘରକୁ ଚାଲିଯିବ । ବାପାଙ୍କର କହିବା କଥା ଏତିକି ଯେ ରଘୁବର ପ୍ରସାଦ ଯେମିତି ତାକୁ ତା' ବାପଘରେ ଛାଡ଼ିଦେଇ ଆସନ୍ତି । ସୋନସୀ ଖୁବ୍ ଖୁସି ଥିଲା ।

ରାତିରେ ରଘୁବର ପ୍ରସାଦ ସୋନସୀର ହାତ ଦେଖିକରି ପଚାରିଲେ ଚୁଡ଼ିବାଲି ତ ଆସିନାହିଁ ।''

''ଠିକ୍ କଥା, ସେ ଆସିନାହିଁ ।'' ଖାଲି ହାତ ଦେଖିଲେ ମାଆ ରାଗ କରିବେ । କାଲି ପିନ୍ଧିନେବି ।

''ଏଇଲେ ଏତେ ଜଲଦି ଯିବା ନାହିଁ । ପରୀକ୍ଷା ମୁଣ୍ଡ ଉପରେ ଅଛି ।''

''ଗୋଟେ କାମ କର; ଏଇ ରବିବାରକୁ ଗାଁରେ ଛାଡ଼ିଆସ । ତାପରେ ପୁଣି ଥରଟାଏ ଯାଇ ବାପଘରେ ଛାଡ଼ି ଆସିବ ।''

''ବାରମ୍ବାର ଯିବା ଆସିବାରେ ବହୁତ ପଇସା ଖର୍ଚ୍ଚ ହୋଇଯିବ ।''

''ଆଚ୍ଛା ଗାଁରେ ଛାଡ଼ି ଦେଇ ଆସ । ସେଠୁ କେହି ପହଞ୍ଚାଇଦେବ ।''

''ତମେ ମୋ ପାଖକୁ ଚିଠି ଲେଖିବ ନା ?''

''ହଁ, ଲେଖିବି । କେବେ ତ ଲେଖି ନାହିଁ, କ'ଣ ଲେଖିବି ?

''ଯାହା ଇଚ୍ଛା ।''

''ମୁଁ ତୁମକୁ କ'ଣ ବୋଲି ଡାକି ଲେଖିବି ?''

''ଯାହା ଭଲ ଲାଗିବ ।''

''ମା ବାପାଙ୍କୁ କ'ଣ କହିଥିଲା ଜାଣିଛ ?''

''ନାଇଁ ।''

''ମାଲିକ ।''

''ତମେ ମତେ ମାଲିକ ବୋଲି ଲେଖିବ ନାହିଁ ।''

''ମୋର ସାଙ୍ଗ ତା' ସ୍ୱାମୀକୁ 'ଶ୍ରୀମାନ ଜୀ' ବୋଲି ଲେଖୁଥିଲା ।

''ନାଇଁ, 'ଶ୍ରୀମାନଜୀ' ଲେଖିବ ନାହିଁ ।

''ତମେ ଆଗ ଲେଖିବ ।''

''ତମେ ଆଗ ଲେଖିବ ।''

ଦୁହେଁ ଚୁପ୍ ହୋଇଗଲେ । ସୋନସୀ ଭାବୁଥାଏ ଯେ ରଘୁବର ପ୍ରସାଦ ଯଦି ଦୁଇ ହାତରେ ଚିଠି ଲେଖନ୍ତି ସେ ଚିହ୍ନିଯିବ ଯେ ବାଁ ହାତରେ ଏତକ ଲେଖା ହୋଇଛି ଆଉ ଡାହାଣ ହାତରେ ଏତେଟା । ସେ ବାଁ ହାତ ଓ ଡାହାଣ ହାତର ଅକ୍ଷରଗୁଡ଼ିକ ପଢ଼ିବା ଭିତରେ ସେ ଯେପରି ରଘୁବର ପ୍ରସାଦଙ୍କର ଆଲିଙ୍ଗନ ଭିତରେ ପଡୁଥିବ ।

''ଚିଠିର କ'ଣ କିଛି ଠିକ୍ ଠିକଣା ଥାଏ । ପାଞ୍ଚ ଛଅ ଦିନରେ ଚିଠି ପହଞ୍ଚେ ।'' ରଘୁବର ପ୍ରସାଦ କହିଲେ ।

''ଯେତେବେଳେ ସମୟ ମିଳିବ ମୁଁ କଷଟୀ ପଥର ଉପରେ ଯାଇ ଶୋଇ ପଡ଼ିବି । ଆଉ ଆକାଶକୁ ଅନାଇଥିବି ।''

''ମୁଁ ବି ଝରକା ବାଟେ ତମର ଦେଖିଲା ଆକାଶକୁ ଦେଖିନେବି ।'' ରଘୁବର ପ୍ରସାଦଙ୍କର ଆକାଶକୁ ଦେଖିବା ରଘୁବର ପ୍ରସାଦଙ୍କର ଚିଠି ଲେଖା ହେବ । ଚନ୍ଦ୍ରମା ହେବ ସୋନସୀ ଲାଗି ଲେଖା ସମ୍ବୋଧନ । ତାରାମାନଙ୍କର ଅକ୍ଷର ଥିବ ଯାହାକି ସାଙ୍ଗେ ସାଙ୍ଗେ ସୋନସୀ ପଢ଼ିନେବ । ରଘୁବର ପ୍ରସାଦ କଷଟୀ ପଥର ଉପରେ ଶୋଇରହି ଗୋଟିଏ ବଡ଼ ଆକାଶ ଦେଖିବେ । ବଡ଼ ଆକାଶ ଗୋଟିଏ ଲମ୍ବା ଚିଠି ହେବ । ସୋନସୀ ଖିଡ଼ିକି ବାଟେ ଗୋଟିଏ ଛୋଟ ଆକାଶ ଦେଖିବ ତ ସେ ଗୋଟିଏ ଛୋଟିଆ ଚିଠି ହେବ । ଆକାଶ ହେବ ପରସ୍ପରକୁ ଲେଖା ଚିଠି ।

କିଛିଦିନ ହେଲା ସାଧୁ ଆସୁ ନ ଥିଲା । ରଘୁବର ପ୍ରସାଦ ଟେମ୍ପୋରେ ଯା ଆସ କରୁଥିଲେ । କଲେଜରୁ ସେ ଜଲଦି ଫେରିଥିଲେ । ଘରକୁ ଗଲେ ନାହିଁ। ସିଧା ଖୈରାଗଡ଼ ଚାଲିଗଲେ । ଖୈରାଗଡ଼ର ଘେରାଟି ପରିତ୍ୟକ୍ତ ଥିଲା । ସେଠି ଗୋଟିଏ ପରିତ୍ୟକ୍ତ ଘର ଥିଲା । ତାହାର ଦାଣ୍ଡରେ ଆଣ୍ଠୁରେ ମଥା ରଖି ସାଧୁ ବସିଥିଲା । ସେ ଘରର ପାଖଆଖର ଛାତର ବାଙ୍ଗାଲୋରୀ ଖପରଲି ଟାଇଲ୍ ଏଠି ସେଠି ଭଙ୍ଗା ରୁଜା ହୋଇ ପଡ଼ିଥିଲା । ଏଠି ସେଠି ଗହଳ ବୁଦା ସବୁ ଥିଲା । ଆମେ ଏସବୁ ହୁଏତ କାଇଦା ମାଫିକ ବେଢ଼ା ହୋଇଥିବେ ।

ରଘୁବର ପ୍ରସାଦଙ୍କୁ ଦେଖି ସାଧୁ ଖୁବ୍ ଖୁସି ହେଲା । ଉଠିକରି ସେ ରଘୁବର ପ୍ରସାଦଙ୍କୁ ଅଖା ଉପରେ ବସାଇଲା ।

''ଦେହ ଭଲ ନାହିଁ କି ?'' ରଘୁବର ପ୍ରସାଦ ପଚାରିଲେ ।

''ଏଇଲେ ଠିକ୍ ଅଛି । ବୈଦ୍ୟଙ୍କ ଓଷଦରେ ଉପକାର ହେଲା । ତାଙ୍କ ପୁଅ ଓଷଦ ଦେଇଯାଏ । ମୁଁ ଭଲ ଅଛି । ଯୁଆଡ଼େ ଇଚ୍ଛା ଯାଇପାରେ । ହାତୀର ଗୋଡ଼ରେ ବି ଘା' ହୋଇଯାଇଥିଲା । ସେ ବି ଭଲ ହୋଇଗଲାଣି । ତା ଘା'କୁ ମୁଁ ଲୁହା ଛଡ଼ରେ ଚିଆଁ ଲଗାଇ ଦେଇଥିଲି ।''

ରଘୁବର ପ୍ରସାଦ ହାତୀ ପାଖକୁ ଯିବାରୁ ସାଧୁ ବି ତାଙ୍କ ସାଙ୍ଗରେ ଚାଲିଆସିଲା । ଗୋଡ଼ର ନଖ ପାଖରେ ଘା' ହୋଇଥିଲା । କେମିତି ଲାଗିଥିବ ? ରଘୁବର ପ୍ରସାଦ ଭାବୁଥିଲେ ।

''ଜଞ୍ଜିର ଦେଇ କେମିତି ବାନ୍ଧ ?'' ରଘୁବର ପ୍ରସାଦ ଜାଣିବାକୁ ପଚାରିଥିଲେ ।

''ଜଞ୍ଜିରରେ ଅଙ୍କୁଡ଼ା ଥାଏ, ତାକୁ ଗଳେଇ ଦିଏ ।'' ସାଧୁ କହିଲା ।

"ମୁଁ ଯାଏଁ ।"

"ହାତୀରେ ଛାଡ଼ି ଦିଏ । ଏବେ ଠିକ୍ ହୋଇଗଲାଣି । ହାତୀ ସେ ଗୋଡ଼ରେ ଟିକେ କମ୍ ଜୋର ଦିଏ ।

"ମୁଁ ଚାଲିଯିବି ।"

ରଘୁବର ପ୍ରସାଦ ହାତୀର ଆହୁରି ପାଖକୁ ଗଲେ । ସେ ତାକୁ ଥାପୁଡ଼ାଇବାକୁ ଚାହୁଁଥିଲେ । ଥାପୁଡ଼େଇଲେ ନାହିଁ । ସେ କହିଲେ, "ଜଞ୍ଜିରରେ ବନ୍ଧା ହୋଇଥିଲେ ନିଶ୍ଚିନ୍ତ ଲାଗେ, ନା ?

"ହଁ ଜଞ୍ଜିରରେ ବନ୍ଧା ହୋଇଥିଲେ ନିଶ୍ଚିନ୍ତ ଲାଗେ ।" ସାଧୁ କହିଲା ।

ରାତି ହୋଇ ନ ଥିଲା । ଘର ଭିତରେ ଅନ୍ଧାର କିଛି ବେଳ ଆଗର ହୋଇଥିଲା । ଝରକା ବାହାରେ ଏବେ ବି ଆଲୁଅ ଅଛି । ଝରକାର ବନ୍ଧ ଉପରେ ଯୋଡ଼ାଏ ଗୋରାୟା ପକ୍ଷୀ (କଳା ଜଳପକ୍ଷୀ) ଆସି ବସିଯାଇଥିଲେ । ଆଉ କିଛି ଚଢ଼େଇ ଆସି ଚଉବନ୍ଧ ଉପରେ ଲାଇନ୍ କରି ବସିଗଲେ । ସେ ଦୁହେଁ ଝରକାର ଆର ପଟକୁ ଯିବାକୁ ବାହାରିଥିଲେ । ଅଟକି ଗଲେ । କିଛି କିଛି ଚଢ଼େଇଙ୍କର ମୁହଁ ଘର ତରଫକୁ ଥିଲା । ଆଉ କିଛି ଚଢ଼େଇଙ୍କ ମୁହଁ ବାହାର ଆଡ଼କୁ ଥିଲା । ଝରକା ଦେଇ ଯିବାକୁ ହୋଇଥିଲେ ଚଢ଼େଇ ଉଡ଼ିଯାଇଥାନ୍ତେ।

"କିଛି ସମୟ ରହିଯିବା ।" ସୋନସୀ ରଘୁବର ପ୍ରସାଦଙ୍କୁ କହିଲା ।

"ହଁ ରହିଯିବା ।"

"ଘରର ଆଲୁଅ ଜଳେଇ ଦିଏଁ ?'

"ବୋଧେ ଟିକେ ଦିନର ଆଲୁଅ ଘର ଭିତରେ ଏବେବି ବାକି ଅଛି । ସେତକ ଯେତେବେଳେ ରହିବ, ସେ ପର୍ଯ୍ୟନ୍ତ ଆଲୁଅ ଜଳାଇବା ନାହିଁ ।"

"ଏଇଲେ ଜଳାଏ ?" କିଛି ସମୟ ପରେ ସୋନସୀ ପଚାରିଲା । ଖିଡ଼ିକିର ବାହାରକୁ ଅନାଇଁ ଦୁହେଁ ଚୁପ୍‌ଚାପ୍ ଲଗାଲଗି ହୋଇ ଠିଆ ହୋଇଥିଲେ ଯେପରି ସେମାନେ ହଲିଗଲେ ଚଢ଼େଇ ଉଡ଼ି ନଯାନ୍ତି । ଆକାଶରେ ଏବେ ବି ଦିନର ଆଲୁଅ ଥିଲା । ବଖରା ଭିତରେ ଦିନର ପୂରା ଆଲୁଅ ହିଁ ସତରେ ଚାଲିଯାଇଛି । ଏହାର କଳ୍ପନା ରଘୁବର ପ୍ରସାଦ କରିପାରୁ ନ ଥିଲେ ।

"ବୋଧେ ଦିନର ଆଲୁଅ ଚାଲିଗଲା ।"

"ହଁ ମୋର ବି ସେଇଆ ମନେ ହେଉଛି । ସୋନସୀ ସୁଇଚ୍ ଟିପିଲା ଯେ ଚଢ଼େଇ ଫୁର୍ କରି ଉଡ଼ିଗଲା ସତେ ଯେମିତି ବତୀର ଆଲୁଅ ତାକୁ ଉଡ଼ାଇ ଦେଇଛି, ଯେଉଁ ଚଢ଼େଇଙ୍କର ମୁହଁ ଘର ଆଡ଼କୁ ଥିଲା ସେମାନେ ଆଗ ଘର ଭିତରକୁ ଉଡ଼ି ଆସିଲେ । ତା'ପରେ ଝରକା ବାଟେ ବାହାରକୁ ଉଡ଼ିଗଲେ ।

କିଏ କବାଟ ଖଡ଼ ଖଡ଼ କରୁଛି । ରଘୁବର ପ୍ରସାଦ ଦରଜା ଖୋଲିଲେ । ସେଠି ବୈଦ୍ୟର ପୁଅ ଥିଲା ଯେ କି ସାଧୁର ସାଥୀ ।

"ସାଧୁ ବନାରସ ଚାଲିଗଲାଣି ।" ସେ କହିଲା ।

"କେତେବେଳେ ?"

"ଦ୍ୱିପହର ବେଳେ ।"

"ଆଉ ହାତୀ ?"

"ସେଇଠି ବନ୍ଧା ହୋଇଛି ।"

"ସାଧୁଙ୍କୁ ଧରି ନେଇଗଲେ ।"

"ଆଉ ହାତୀକୁ ?" ହାତୀକୁ ବି ଧରିନେଇ ଯାଇଥାନ୍ତେ ବୋଲି ରଘୁବର ପ୍ରସାଦ କହିବାକୁ ଚାହୁଁଥିଲେ ବୋଧହୁଏ ।

"ହାତୀକୁ ଛାଡ଼ିଗଲେ । ଆପଣଙ୍କୁ କହିବା ଉଚିତ ବୋଲି କହିବାକୁ ଚାଲି ଆସିଲି । ମୁଁ ସାଧୁଙ୍କୁ ଔଷଧ ଦେବାକୁ ଯାଇଥିଲି । ଏଇଲେ ଔଷଧଯାକ ବେକାର ହୋଇଗଲା ।" ସେ ଚାଲିଗଲା ।

ରଘୁବର ପ୍ରସାଦ ଓ ସୋନସୀ ଦରଜା ଖୋଲା ରଖି ଠିଆ ହୋଇ ରହିଲେ । କେଜାଣି ଗଛ ଉପରେ ପିଲାଟା ବସିଛି କି ନାହିଁ ।

"ମୁଁ ହାତୀକୁ ଟିକେ ଦେଖି ଆସେ ?" କିଛି ସମୟ ପରେ ରଘୁବର ପ୍ରସାଦ କହିଲେ ।

"ଏଇକ୍ଷେ ରାତି ହେଲାଣି । କାଲି ସକାଳୁ ଚାଲିଯିବ ।"

"ଏଇଲାଗେ ଦେଖି ଆସେ ।"

"ମୁଁ ବି ଯିବି ?"

"ତୁମେ ଯାଇ କ'ଣ କରିବ ? ଏଇଠି ଥାଅ ।"

"ହାତୀକୁ ଆମ ଘର ଆଗରେ ଛାଡ଼ି ଦେଇଯାଇଥାନ୍ତା କି !" ସ୍ତ୍ରୀ କହିଲା ।

"ତାକୁ ହଠାତ୍ ଯିବାକୁ ପଡ଼ିଥିବ । ହାତୀକୁ ସେ ଛାଡ଼ି ଯାଇନି, ରହିଗଲା ।"

ତା' ନୋହିଲେ ଘର ଆଗରେ ଛାଡ଼ି ଦେଇଥାନ୍ତା । ଯାଉଛି ।

"ଗଛ ଉପରେ ପିଲାଟାକୁ ଦେଖିନେବ । ଚେଇଁଥିଲେ ତାକୁ ସାଙ୍ଗରେ ନେଇଯିବ । ହାତୀ ଭୋକେଇ ଥିଲେ ଗଛର ଡାଳ କାଟିନେବ । କଟୁରି ଦେବି ?"

"ନାଇଁ ଆଗ ଦେଖିକରି ଆସେ ।" ଯଦି ଥାଏ ତେବେ ସେ କଟୁରି ନେଇଯିବ ।"

ଗଛ ଉପରେ ପିଲାଟା ନାହିଁ । ଗଛ ମୂଳକୁ ଯାଇ ସେ ଡାକିଲା । ଗୋଟିଏ ଚଢ଼େଇ ଡାଙ୍କ ଡାକ ଶୁଣି ଫଡ଼୍ ଫାଡ଼୍ କରି ଉଡ଼ି ପଳେଇଲା । ବୋଧହୁଏ ପେଚାଟାଏ । ପେଚା ନ ହୋଇ ବି ପାରେ । ପେଚାର ତ ଏଇଟା ଶିକାରର ସମୟ । ଯେଉଁ ଚଢ଼େଇ ବସାରେ ସେ ପତ୍ରଟିଏ ରଖିଥିଲେ ସେ କ'ଣ ପେଚାର ବସା ହୋଇଥିବ ? ସେଇ ବସାରେ ସୁଉକିଟିଏ ଦେଉ ଦେଉ ଅଟକି ଯାଇଥିଲେ । ଏଥରକ ସୁଉକି ପକାଇ ଦେବେ । ଦେଖାଯାଉ କେତେଦିନ ସୁଉକିଟି ସେଠି ରହିଥିବ । ଯେମିତି 'ଗୋଲକ' ଭିତରେ ଜମା କରନ୍ତି ସେଇମିତି ବସା ଭିତରେ ଜମା କରିଦେବେ । ଦରକାର ହେଲେ ଲକ୍ଷ୍ମୀଙ୍କର ବାହନର ବସାରୁ ତାଙ୍କର ସୁଉକି ନେଇଯିବେ ।

ସେଇଠାରୁ ସେ ସୋନସୀକୁ କହିଲେ, "ଏଠି ନାହିଁ ।" ସେ ଆସ୍ତେ କରି ଡାକିଥିଲେ । ରାତିର ନୀରବତା ଭିତରେ "ଏଠି ନାହିଁ ଦୂରଯାକେ ଚାଲିଗଲା । ସୋନସୀକୁ ପାରି ହୋଇ ବହୁତ

ଦୂରକୁ ଚାଲିଗଲା । ସୋନସୀ ତ ଏତକ ଜାଣିଗଲା ଯେ ଗଛ ଉପରେ ଟୋକାଟା ନାହିଁ । ଜଣେ ଲୋକ ନିଜ ଘର ଆଗରେ ବସିଥିଲା । 'ଏଠି ନାହିଁ'କୁ ସେ ବି ଶୁଣିଥିଲା । ଏକଥା ଶୁଣି ସେ ସ୍ୱାଭାବିକ ଭାବରେ କହି ପକାଇଥିଲା, ''କିଏ ନାହିଁ ?''

ରଘୁବର ପ୍ରସାଦ ଖୈରାଗଡ଼ ବାଡ଼ା ଆଡ଼କୁ ଚାଲିଯାଇଥିଲେ । ସୋନସୀ ଘର ଭିତରକୁ ଚାଲିଯାଇଥିଲା । ''କିଏ ନାହିଁ ''କୁ ରଘୁବର ପ୍ରସାଦ ବୁଝିପାରିଥିଲେ ଯେ କଥାଟାକୁ ଆଉ କିଏ ଶୁଣିଛି, ଭାବିଛି କଥାଟା ତାକୁ ହିଁ କୁହାଯାଇଛି । ସେଇଥିପାଇଁ ସେ ପଚାରିଥିଲା । ସେ ଲୋକକୁ ''କିଏ ନାହିଁ ?''ର ଜବାବ ମିଳିନଥିଲା । ତାର କୌତୂହଳ ହେଲା ଯେ କିଏ ନାହିଁ ସେକଥା କେମିତି ଜାଣିପାରିବ । ସେ ଲୋକକୁ ନିଦ ଆସିନଥିବ । ରାତିର ନୀରବତା ଭିତରେ ସେ ଏକୁଟିଆ ବୋଧ କରିଥିବ । ସେ ଜୋର ଦେଇ ପଚାରିଲା, ''କିଏ ସେଠି ନାହିଁ, ଭାଇ ?'' ସେ ଜାଣେ ନାହିଁ ଯେ କିଏ ନାହିଁ । ଆଉ ସେ କାହାକୁ କଥାଟା କହିଥିଲା । ସେ ଶୁଣିଲା ନା ନାହିଁ । କିନ୍ତୁ ସେ ତ ଯିଏ ସେଠି ନାହିଁ କହିଥିଲା ତାକୁ ହିଁ କହିଥିଲା । ସେ ଯେବେ ଜାଣି ଯାଇଥାନ୍ତା ତେବେ କ'ଣ ହୋଇଥାନ୍ତା ? ସେ ଜାଣିବାକୁ ଛାଡ଼ିଦେଇ ପାରିଥାନ୍ତା । ସେ ଏଣିକି ତେଣିକି ଚାହିଁ ଲମ୍ବା ନୀରବତା ଭିତରେ କୁଙ୍କୁଡ଼ି କାଙ୍କୁଡ଼ି ହୋଇ ବସିଥିଲା । ସେ ଉଠିକରି ଗୋଡ଼ ଟିପି ଟିପି ଘର ଭିତରକୁ ଚାଲିଯାଇଥିଲା । ସେ ଯୁବକ, ପ୍ରୌଢ଼ କି ବୁଢ଼ା ହୋଇପାରିଥାଏ । ତା'ର ଦିହ ଭଲ ବି ହୋଇ ପାରିଥାଏ ।

ରଘୁବର ପ୍ରସାଦଙ୍କୁ ସେହି ରାତି ଭିତରେ ଠାଏ ଠାଏ ଘରବାଡ଼ି, ଗଛ ବୃକ୍ଷ ଓ ପାଖ ଆଖରେ ଗଭୀର ଅନ୍ଧକାରର ବିଶାଳକାୟ ଛାୟାମାନ ଦେଖାଯାଉଥିଲେ । ଗଛ ମୂଳରେ ଗୋଟିଏ କୁଡ଼ିଆ ଉପରେ ଗୋଟିଏ ବଡ଼ ଗହୀର ଅନ୍ଧାର ଛାୟା ଦିଶିଲା । ଖପରଲି ଛାତ ଉପରେ ହାତୀ ଭଳିଆ ଛାୟା ଥିଲା । ଅନ୍ଧାରର ଛାୟା ମୂର୍ତ୍ତିର ଓଜନ ନଥିଲା ତେଣୁ ଛାତ ଭାଙ୍ଗି ଯାଇ ନ ଥିଲା । ନହେଲେ ଛାତ ଭାଙ୍ଗି କୁଡ଼ିଆ ଘରଟା ଧସିଯାଇଥାନ୍ତା, ଭଲ ହେଲା ଯେ ଆଲୁଅର ବି ଓଜନ ନ ଥିଲା । ଅନ୍ଧାର ପରେ କିଛି ଆଲୁଅ ଭିତରେ ସେଠି ଯାହା ଦିଶୁଥିଲା ସେସବୁ ଆଲୁଅ ଦ୍ୱାରା ବିସ୍ଥାପିତ ଦିଶୁଥିଲେ । ଯଦି ଆଲୁଅରେ ଭଙ୍ଗାଭଙ୍ଗା କୁଡ଼ିଆ ଦିଶୁଥାଏ, ତାହା ବି ଆଲୁଅ ଦ୍ୱାରା ବିସ୍ଥାପିତ ଭଙ୍ଗା ଭଙ୍ଗା କୁଡ଼ିଆ ହୋଇ ଦେଖା ଯାଇଥାନ୍ତା । ଆଲୁଅ ଭିତରେ ଅଚଳ ଥିବା ପରି ।

ଖୈରାଗଡ଼ ବାଡ଼ା ଭିତରେ ଆହୁରି ଅନ୍ଧାର ମନେ ହେଉଥିଲା । ବହୁତ ବେଶୀ ଅନ୍ଧାର ଭଳିଆ ଦିଶୁଥିବା ଭଙ୍ଗାଘର, ବୁଢ଼ା ଓ ହାତୀକୁ ରଘୁବର ପ୍ରସାଦ ଦେଖୁଥିଲେ । ସେ ହାତୀ ଆଡ଼କୁ ଆଗେଇଗଲେ । ହାତୀ ରଘୁବର ପ୍ରସାଦଙ୍କର ଶବ୍ଦକୁ ଚିହ୍ନିଯାଇଥିବ । ଜଞ୍ଜିରରେ ବନ୍ଧାଥିଲା । ପାଖଆଖରେ ବରଗଛର ଡାଳ ବିଛେଇ ପଡ଼ିଥିଲା । ରଘୁବର ପ୍ରସାଦ ହାତୀର ଆଗ ପଟରେ ଥିଲେ । ହାତୀ ରଘୁବର ପ୍ରସାଦଙ୍କ ଆଡ଼କୁ ଆଗେଇବାକୁ ଚାହୁଁଥିଲା । ଜଞ୍ଜିର ପଛ ଗୋଡ଼ରେ ବନ୍ଧା ଥିଲା । ରଘୁବର ପ୍ରସାଦ ପଛପଟକୁ ଗଲେ । ହାତୀର ଜଞ୍ଜିର ଲଗା ଗୋଡ଼ ପାଖକୁ । ସେ ସାହସ କରି ଫାସରେ ଗଳା ହୋଇଥିବା ଆଙ୍କୁଡ଼ିକୁ କାଢ଼ିବାକୁ ଚେଷ୍ଟା କଲେ । ହାତୀର ଗୋଡ଼ ଟାଣି ହୋଇ

ରହିଥିଲା । ସେଥିପାଇଁ ଆଙ୍କୁଡ଼ି କଡ଼ା ଥିଲା । ବାହାରି ପାରୁ ନଥିଲା । ସାମନା ଗୋଡ଼ରେ ଯେବେ ଜଞ୍ଜିର ବନ୍ଧା ହୋଇଥାନ୍ତା ତେବେ ଖୋଲିବାକୁ ଡର ଲାଗିପାରେ ଯେ କାଳେ ସେ ଶୁଣ୍ଢରେ ଧରିନେବ । ଗୋଡ଼ ଟିକିଏ ଢିଲା ହେଲା । ହାତୀ ପଛକୁ ବୁଲିବାକୁ ଚାହୁଁଥିବ । ରଘୁବର ପ୍ରସାଦ ଜୋର ଲଗାଇ ଆଙ୍କୁଡ଼ିକୁ ଖୋଲିଦେଲେ । ସେ ପଛକୁ ହଟିଗଲେ । ହାତୀ ଏଇଲେ ବନ୍ଧା ହୋଇ ରହିନାହିଁ । ରଘୁବର ପ୍ରସାଦ ଆହୁରି ପଛକୁ ହଟିଗଲେ । ହାତୀର ଆଗକୁ ଆସିଲେ । ତା'ପରେ ଫେରି ଆସିଲେ ଯେପରି ହାତୀ ତାଙ୍କ ପଛେ ପଛେ ଆସିଯାଏ ।

ସେଇ ହାତୀଟିକୁ ଖୋଲି ଦେବାରୁ ତାଙ୍କୁ ଏତେ ଖୁସି ଲାଗୁଥିଲା ଯେ ଅନ୍ଧାରରେ ଏଣେ ତେଣେ ତାଙ୍କର ଆଗରେ ପଛରେ ଅନ୍ଧାରର ଅଲଗା ଅଲଗା ହାତୀଙ୍କର ଶୋଭାଯାତ୍ରାଟିଏ ବାହାରିଲା ପରି ଲାଗୁଥିଲା । ତଥାପି ସେ ପଛକୁ ବୁଲିପଡ଼ି ଦେଖି ନେଉଥାନ୍ତି ଯେ ତାଙ୍କ ପଛେ ପଛେ ହାତୀ ଆସୁଛି ନା ନାହିଁ । କିଛି ସମୟ ପର୍ଯ୍ୟନ୍ତ ତ ତାଙ୍କର ମନେହେଲା । ଯେ ହାତୀ ତାଙ୍କର ପଛେ ପଛେ ଆସୁଛି । ସେ ବେଗେ ବେଗେ ଘର ଆଡ଼କୁ ଆଗେଇ ଗଲେ ।

ସୋନସୀ ସାଙ୍ଗେ ସାଙ୍ଗେ ଦରଜା ଖୋଲି ଦେଇଥିଲା । ଭିତରକୁ ଆସି ସେ କବାଟ କିଳି ଦେଉ ଦେଉ କହିଲେ ଯେ ସେ ହାତୀକୁ ଖୋଲି ଦେଇଛନ୍ତି । ସେ ଖୁସି ଥିଲେ ।

''କାହିଁକି ଖୋଲି ଦେଲ ?''

''ବନ୍ଧା ଥିଲା ତ, ସେଇଥିପାଇଁ । କେତେ ଦିନ ଆଉ ବନ୍ଧା ରହିବ ?''

''ସେଇଠିକି ଯାଇ ଆମେ ତା'ର ଦେଖା ଚାହାଁ କରି ଦେଇଥାନ୍ତେ ।''

ସେଠିକି ଯାଇ ଦେଖା ଚାହାଁ କରିବା ସମ୍ଭବ ନୁହେଁ । ହୁଏତ ହାତୀ ଏଇଠି କି ଆସିଯିବ । ଏଠି ଦେଖାଚାହାଁ କରି ପାରିବା ।''

ସୋନସୀ କବାଟ ଖୋଲି କିଛି ସମୟ ଠିଆ ହୋଇ ରହିଲା । ହାତୀ ନାହିଁ । ଆସୁଥିବାର ବି ଦେଖାଯାଉନାହିଁ । ରାସ୍ତାର ଆଲୁଅରେ ତାକୁ ଦୂରରୁ ଦେଖି ହୋଇଥାନ୍ତା ଯେବେ ସେ ସେଇ ରାସ୍ତାର ଆସୁଥାନ୍ତା ।

''ହାତୀ ଆସୁନାହିଁ ।'' ସୋନସୀ କହିଲା । ରଘୁବର ପ୍ରସାଦ ବି ଚାହିଁଲେ । କିଛି ସମୟ ପରେ ଦୁହେଁ ଭିତରକୁ ଆସିଲେ ।

ଆସିବାକୁ ମନ ହେଲେ ଆସିବ । ଦୁହେଁ ରାତିସାରା ଶୋଇଲେ ନାହିଁ । ମଝିରେ ମଝିରେ ଉଠି କେତେବେଳେ ସୋନସୀ କେବେ ବା ରଘୁବର ପ୍ରସାଦ କବାଟ ଖୋଲି ଦେଖି ଆସୁଥାନ୍ତି । ହାତୀ ଘରକୁ ଆସି ନ ଥିଲା ।

ସକାଳ ହେବା ମାତ୍ରେ ରଘୁବର ପ୍ରସାଦ ଖୈରାଗଡ଼ ବାଡ଼ାକୁ ବି ଗଲେ । ସେଠି ପାଖ ଆଖରେ କୋଉଠି ହାତୀ ନାହିଁ । ରାସ୍ତା କଡ଼ରେ ଗୋଟିଏ ଚାହା ଦୋକାନ ଥିଲା । ସେ ଦୋକାନଟି ଏ ଯାକେ ଖୋଲି ନାହିଁ । ଦୋକାନୀ ସେଇଠି ରହେ । ସେ ଉଠି ଯାଇଥିଲା । ତାକୁ ପଚାରିଲେ । ଦୋକାନୀ ବି ହାତୀକୁ ଦେଖିନଥିଲା । ଦୂରରେ ବିଲରେ ଚଷାଟିଏ ଥିଲା । ତାକୁ ପଚାରିବାକୁ

ଦୂରକୁ ଯିବାକୁ ପଡ଼ିଥାନ୍ତା । ଆଖ ପାଖରେ କେହି ଦିଶୁ ନ ଥିଲା । ଜଞ୍ଜିରଟି ଗଛମୂଳେ ପଡ଼ିରହିଥିଲା । ସାଧୁର ଗୋଟେ ହେଲେ ଜିନିଷ ବାରଣ୍ଡା ଉପରେ ଛିଛତ୍ରା ହୋଇ ନ ଥିଲା । ଜଞ୍ଜିର ଓଜନିଆ ଥିଲା । କିଛି ସମୟ ପରେ ଗୋଟିଏ ରିକ୍ସା ମିଳିଗଲା । ଜଞ୍ଜିରକୁ ରିକ୍ସାରେ ରଖି ସେ ଘରକୁ ଆସିଲେ ।

ରଘୁବର ପ୍ରସାଦ ଓ ସୋନସୀ ସନ୍ଧ୍ୟା ବେଳେ ପ୍ରାୟତଃ ଦୂର ବାଟଯାକେ ଏଣେ ତେଣେ ବୁଲି ଦେଖନ୍ତି କାଳେ ହାତୀ ଦିଶିଯିବ । ପଡ଼ିଶା ଘରମାନଙ୍କର ଅନୁପସ୍ଥିତିରେ ସୋନସୀକୁ ଏକୁଟିଆ ଲାଗିଲା । ରଘୁବର ପ୍ରସାଦଙ୍କର ଆସିବାବେଳ ହେଲେ ସେ ଭାବେ ହୁଏତ ହାତୀରେ ବସି ସେ ଆସୁଥିବାର ଦେଖିବ, କିନ୍ତୁ ରଘୁବର ପ୍ରସାଦ ଚାଲି ଚାଲି ଧୀରେ ଧୀରେ ଆସୁଥିବାର ଦେଖାଯାଏ ।

ବାପାଙ୍କର ଚିଠି ପୁଣି ଆସିଥିଲା ଯେ ବୋହୂକୁ ପହଞ୍ଚାଇ ଦିଅ । ଏକଥା ବି ଲେଖାଥିଲା ଯେ ରଘୁବର ପ୍ରସାଦଙ୍କୁ ଯେବେ ଛୁଟି ମିଳୁ ନ ଥାଏ ତେବେ ବୋହୂକୁ ବସ୍‌ରେ ବସେଇ ଦିଅ । ସେ ଏକାକୀ ଚାଲିଆସିବ । ସୋନସୀ ଏକୁଟିଆ ଯିବାକୁ ପ୍ରସ୍ତୁତ । ସୋନସୀ ଖୁସି ହୋଇ ଯିବାକୁ ସଜ ହେଲା । ଗୋଟିଏ ଛୋଟିଆ ଟିଣ ବାକ୍ସ ଆଉ ଗୋଟିଏ ମୁଣି । ଜିନିଷ ବୋଲି କରି ଏତିକି । ସୋନସୀ ଏକାକୀ ଯିବ ।

ରଘୁବର ପ୍ରସାଦ ରିକ୍ସା ଡାକି ଆଣିଲେ । ରଘୁବର ପ୍ରସାଦ ସୋନସୀକୁ ଖର୍ଚ୍ଚ ଲାଗି କୋଡ଼ିଏ ଟଙ୍କା ଦେଇଥିଲେ । ମାଆକୁ ଦେବା ଲାଗି ପଚାଶ ଟଙ୍କା ଦେଲେ । ରିକ୍ସାରେ ବସିବା ଆଗରୁ ସୋନସୀ ରଘୁବର ପ୍ରସାଦଙ୍କର ହାତ ଧରି ପଚାରିଲା, ''ରାଗିଛ ?''

''ନାଇଁ ତ ।'' ରଘୁବର ପ୍ରସାଦ କହିଲେ । ସୋନସୀ ସୁନାର କଡ଼ା ପିନ୍ଧିଥିଲା । ଚୁଡ଼ିରେ ହାତ ଭର୍ତ୍ତିଥିଲା । ଗୋଡ଼ର ଆଙ୍ଗୁଠିରେ ବି ଗୋଡ଼ମୁଦି ପିନ୍ଧିଥିଲା ।

ବସ୍ ଯିବାକୁ ବସିଥିଲା । ରିକ୍ସାରେ ବସି ରଘୁବର ପ୍ରସାଦ ହାତ ଠାରି ଡ୍ରାଇଭରକୁ ରହିବାକୁ କହିଲେ । ସୋନସୀକୁ ବସାଇ ସେ ଫେରିବା ମାତ୍ରକେ ବସ୍ ଛାଡ଼ିଦେଲା, ସେ ଓହ୍ଲାଇଲା ବେଳେ ସୋନସୀ ଡରଡରରେ କହିଥିଲା, ''ତମେ ନେବାକୁ ଆସିବ ତ ?''

''ଆସି ପାରିବି ନାହିଁ । ଛୋଟୁ ସାଙ୍ଗରେ ଚାଲି ଆସିବ ।'' ରଘୁବର ପ୍ରସାଦ କହିଲେ । ବସ୍ ଏପରି ଛାଡ଼ି ଦେଲା ଯେମିତି ସୋନସୀକୁ ଜବରଦସ୍ତି ଛଡ଼େଇ ନେଇଯାଉଛି ।

ଫେରିବା ବେଳେ ଘରକୁ ଯିବା ଆଗରୁ ଗୁଲର ଗଛ ଆଡ଼କୁ ଚାଲିଆସିଲେ । ଗଛ ଉପରେ ପିଲା ନ ଥିଲା । ଘର ଭିତରକୁ ଯିବାକୁ ମନ ହେଉ ନ ଥାଏ । ବସି ପଡ଼ିବାକୁ ଇଚ୍ଛା ହେଉଥିଲା । କିଛି ସମୟ ପରେ ଯେତେବେଳେ ସେ ଘରକୁ ଗଲେ ସେଠାରେ ଖଟିଆର ଗୋଡ଼ ଉପରେ କଚା ହୋଇଥିବା ଗେଞ୍ଜି ଓ ଚଢ଼ିଟ୍ଟି ଟଙ୍ଗା ହୋଇଥିବାର ଦେଖିଲେ । ସୋନସୀ ଗାଧୋଇକରି ବଦଳି ଦେବାକୁ କହିଥିଲା । ସେ ପୋଖରୀକୁ ଗଲେ ନାହିଁ । ବାଲ୍‌ଟିରେ ପାଣି ଭର୍ତ୍ତି ଥିଲା । ସେଇଠି ଗାଧୋଇ ପଡ଼ିଲେ । ଗାଧୋଇ ପାଧୋଇ ଯେତେବେଳେ ମୁଣ୍ଡ କୁଣ୍ଡାଉଥିଲେ ସେତେବେଳେ ଝରକା ବାଟେ ହୋମ ବାସ୍ନା ଆସୁଥିଲା । ଖାଇବାର ସମୟ ହୋଇ ନ ଥିଲା । ଭୋକ ବି ଲାଗୁ ନ ଥିଲା ।

ତଥାପି ସେ ଖାଇବାକୁ ଯୋଗାଡ଼ ଆରମ୍ଭ କରିଦେଲେ । ପୁରି ତରକାରୀ ଅଛି । ଥାଳି ବାସନ ସୋନସୀ ଅଲଗା ବାହାର କରି ଥୋଇ ଯାଇଥିଲା ।

ଆଜିର ଦିନ ଥିଲା । କଲେଜ ଯିବା ଲାଗି ସେ ଆଗରୁ ବାହାରି ଗଲେ । ରାତି ସାରା ଅନ୍ଧାରର ଏଡ଼େ ସାହଚର୍ଯ୍ୟ ଥିଲା ଯେ ଦିନର ଆଲୁଅ ତାଙ୍କୁ ବହୁତ ବେଶୀ ଆଲୁଅ ମନେ ହେଉଥିଲା । ତାଙ୍କର ମନେହେଲା ଗୋଟିଏ ସୂର୍ଯ୍ୟରୁ ଏତେ ଆଲୁଅ ଆସି ନପାରେ । ଦୁଇଟି ସୂର୍ଯ୍ୟ ହୋଇଥିବେ । ସୂର୍ଯ୍ୟ ବୁଡ଼ିଗଲା ପରେ ଯେତେଟା ଅନ୍ଧାର ହେଉଥିଲା ତାହା ଗୋଟିଏ ସୂର୍ଯ୍ୟର ବୁଡ଼ିବାର ଅନ୍ଧାର ନୁହେଁ ଅନ୍ତତଃ ଦୁଇଟି ସୂର୍ଯ୍ୟ ବୁଡୁଥିବେ । ଟେମ୍ପୋ ଲାଗି ଦେଢ଼ ଘଣ୍ଟା ଆଗରୁ ଆସିଗଲେ । ତାଳଗଛର ପତ୍ର ଆଡ଼କୁ ତାଙ୍କର ଦୃଷ୍ଟି ଯାଇଥିଲା । ତାହା ଉପରେ ଦୃଷ୍ଟି ପଡ଼ିବାରୁ ତାଳର ଚାରିଟା ଗଛକୁ ସେ ଏକାଗଛ ଭଳି ଦେଖିଲେ । ଗଛଯାକ ଅଲଗା କରି ଦେଖିଲେ ନାହିଁ । ହାତୀ ଆସୁଥିବା ଭଳି ଦେଖାଯାଇ ପାରିଥାନ୍ତା । ହାତୀ ଉପରେ ସାଧୁ ବସିଥିବାର ବି ଦେଖାଯାଇ ପାରିଥାନ୍ତା । କିନ୍ତୁ ଏସବୁ କଥା ହେବା ଆଗରୁ ଏ ମଧ୍ୟରେ ଖାଲି ଟେମ୍ପୋଟାଏ ଆସିଯାଇଥିଲା, ଆଉ ସେ ବସି ପଡ଼ିଥିଲେ ।

କଲେଜରେ ବିଭାଗାଧ୍ୟକ୍ଷ ବି ଆଗରୁ ପହଞ୍ଚିଯାଇଥିଲେ । ରଘୁବର ପ୍ରସାଦ ବିଭାଗାଧ୍ୟକ୍ଷଙ୍କ ସଙ୍ଗେ କଥାବାର୍ତ୍ତା କରିବାକୁ ଚାହୁଁଥିଲେ । କାମରେ ବ୍ୟସ୍ତ ଥାଇ ବିଭାଗାଧ୍ୟକ୍ଷ ତାଙ୍କୁ ଆଡ଼କୁ ଧ୍ୟାନ ଦେଇନଥିଲେ ।

ରାତିରେ ରଘୁବର ପ୍ରସାଦଙ୍କର ନିଦ ଭାଙ୍ଗିଗଲା । କିଛି ସମୟ ବିଛଣାରେ ପଡ଼ିରହି ତା'ପରେ ସେ ଉଠିଲେ । ଦରଜା ଖୋଲି ବାହାରକୁ ଆସିଲେ । ସଡ଼କ କଡ଼ର ନିମ୍ବଗଛ ମୂଳେ ଠିଆ ହୋଇ ରହିଲେ । ରାସ୍ତାର ବତୀର ଆଲୁଅ ତାଙ୍କ ପାଖ ପହଞ୍ଚୁ ନ ଥିଲା । ତାଙ୍କର ଇଚ୍ଛା ହେଲା ରାତିର ନୀରବତା ଭିତରେ କହିବେ, ''ଏଠି ନାହିଁ'' ସେତେବେଳେ ନିଜ ଘର ବାହାରେ ବି ସେଇ ଲୋକଟା ବହୁତ ବେଳୁ ବସିଥିବ ଯେ କି ଆଗରୁ ରଘୁବର ପ୍ରସାଦଙ୍କର ''ଏଠି ନାହିଁ ।'' ଶୁଣିଥିଲା । ସେତେବେଳେ ସେ କହିଥିଲା, ''କିଏ ନାହିଁ, ଭାଇ ?'' ରାତିର ବାତାବରଣ ସେହିଭଳି ଥିଲା । ଗୁଲ୍ଲର ଗଛ ଉପରେ ଗୋଟିଏ ପକ୍ଷୀ ଏଇମିତି ପୁଣି ଉଡ଼ିଗଲା । ଏଥରକ ହୁଏତ ରଘୁବର ପ୍ରସାଦଙ୍କୁ ଦେଖିକରି ଉଡ଼ିଯାଇଥିବ । ଗଛ ଉପରେ ପିଲାଟା ନ ଥିବ । ନଥିବାର ବାତାବରଣଟି ବେଶ୍ ଗଭୀର ହୋଇଥିଲା । ଘର ଆଗରେ ବସିଥିବା ଲୋକଟିକୁ ଦୂରରୁ ଲାଗିଥିବ ଯେ ଦୂରରେ କେହି ଘରୁ ବାହାରକୁ ଆସିଛି । ସେ ଆଉ ସମ୍ଭାଳି ପାରିନଥିବ, ତାକୁ ଲାଗିଥିବ ପଚରାଯାଉ ''କିଏ ନାହିଁ ?'' ସେ ପାଟିକରି କହିଥିବ କିଏ ନାହିଁ ? ରଘୁବର ପ୍ରସାଦ ଶୁଣିଥିବେ । ଉତ୍ତରରେ ତାଙ୍କ ମୁହଁରୁ ବାହାରିଗଲା, ''ସୋନସୀ ନାହିଁ ।'' କାତର ମନରୁ ବାହାରି ପଡ଼ିଲା ଯେ ସୋନସୀ ନାହିଁ । ଯେ ହେଉ ସେ ଶୁଣିଲା । ସେ ଲୋକ ଦୀର୍ଘଶ୍ୱାସ ନେଇକରି ମୁଣ୍ଡ ହଲାଇ କିଛି ସମୟ ବସି ରହିଥିବ । ଯେପରି ସେ ସନ୍ତୁଷ୍ଟ ହୋଇଗଲା ଯେ ତାକୁ ଜବାବ ମିଳିଯାଇଛି । ସେ ଘର ଭିତରକୁ ଚାଲି ଯାଇଥିବ । ସେ ରାତିକ ତାକୁ ନିଦ ହୋଇ ନଥିବ । ସେ ଜାଣିବାକୁ ଚାହିଁଥିଲା ଯେ କିଏ ନାହିଁ । ଏବେ ସେକଥା ଜଣାଗଲା । ସେ ସୋନସୀକୁ ଜାଣିନାହିଁ । ଯାହାହେଉ ସେ ତଥାପି ସେ ରାତିରେ ଶୋଇପାରିବ ।

ରଘୁବର ପ୍ରସାଦଙ୍କର ଝରକା ପାରି ହୋଇ ସେ ଘଟକୁ ଯିବାକୁ ମନ ହେଉନଥିଲା । ବୁଢ଼ୀମାଆକୁ

ଏବେ ବି ଜଣାନାହିଁ ଯେ ସୋନସୀ ନାହିଁ । ରାତିରେ ସୋନସୀର ଯିବା କଥା ସ୍ଥିର ହୋଇଥିଲା ଆଉ ସକାଳୁ ସେ ଚାଲିଯାଇଛି । ବଖରା ଭିତରେ କୋଣରେ ହାତୀର ମୋଟା ଲମ୍ବା ଜଞ୍ଜିରଟି ପଡ଼ିଥିଲା । ହାତୀ ବି ଆସୁ ନ ଥିଲା । ସୋନସୀ କ'ଣ ହାତୀରେ ବସି ଆସିପାରେ ?

ଦରଜା ଖୋଲି ସେ ଆକାଶକୁ ଦେଖି ନେଉଥିଲେ । ସୋନସୀର ଚିଠି ଅଛି । ସୋନସୀ ବି ଦେଖି ନେଉଥିବ ଯେ ରଘୁବର ପ୍ରସାଦଙ୍କର ଚିଠି ଅଛି । କେବେ କେବେ ଆକାଶରେ ବହୁତ ତାରା ଥିବେ, କେବେ ବା ଗୋଟେ ଦୁଇଟି ଦିଶୁଥିବେ, ଗୋଟେ ଦୁଇଟି ତାରାର ଆକାଶ ଲେଖିବାକୁ ସମୟ ନ ଥିଲା ବା ଅଳ୍ପ ଅଳ୍ପ ଲେଖା ହେବାର ଚିଠି ଭଳି ଥିଲା ।

କଲେଜ ଯିବା ବାଟରେ ସେ ଗୁଲ୍ଲର ଗଛ ପାଖ ଦେଇ ବାହାରିଲେ । ସେ ମୁଣ୍ଡଟେକି ଉଙ୍କି ମାରିଲେ । ପିଲାଟା ନାହିଁ । କୌଣସି ଚଢ଼େଇ ବି ନ ଥିଲା । ଗଛବୃକ୍ଷ, ଲୋକମାନଙ୍କ ମଧ୍ୟରେ କେବଳ ସେଇ ହିଁ ଅଛନ୍ତି ଆଉ କେହି ନାହିଁ ଏପରି ଏକ ଅବସ୍ଥାରେ ସେ ଚାଲୁଥିଲେ । ଲୋକ ବୋଲି କେହି ନାହିଁ ଯେ କି ତାଙ୍କ ପାଖ ଦେଇ ଯା' ଆସ କରିବ । ଟେମ୍ପୋ ନାହିଁ ଭଳି ଗୋଟିଏ ଦୁଇଟି ଖାଲି ଟେମ୍ପୋ ଚାଲିଗଲେ । ଟେମ୍ପୋଟିଏ ରଘୁବର ପ୍ରସାଦଙ୍କ ଲାଗି ମଧ୍ୟ ରହିବ ରହିବ ହେଉଥିଲା । ଗୋଟିଏ ଟେମ୍ପୋରେ ସେ ବସି ପଡ଼ିଲେ ଏବଂ ତାଙ୍କୁ ଜଣା ବି ପଡ଼ିଲା ନାହିଁ ଯେ ସେ ଟେମ୍ପୋରେ ଯାଉଛନ୍ତି । କଲେଜକୁ ସେ ଆସୁଥିଲେ କିନ୍ତୁ ତାଙ୍କୁ ଜଣା ପଡୁ ନ ଥିଲା ଯେ ସେ କଲେଜକୁ ଆସି ଯାଉଥିଲେ । ପିଲାମାନଙ୍କୁ ସେ ଆଗ ପରି ଭଲ ପଢ଼ାଉଥିଲେ, ଆଉ ତାଙ୍କୁ ଜଣା ପଡୁନଥିଲା । ସବୁ କାମ ଆଗ ପରି ଚାଲୁଥିଲା ଯେପରି କିଛି ହେଲେ ଚାଲୁ ନଥିଲା ।

ସୋନସୀ ନିରାପଦରେ ପହଞ୍ଚିଥିବାର ଚିଠି ଆସିଯାଇଛି । ଛୋଟୁ ଚିଠି ଲେଖିଛି । ହୁଏତ ମାଆ ଲେଖାଇଛି କିମ୍ବା ସୋନସୀ । ସୋନସୀ ଲେଖିଥାନ୍ତା କି ! ରାତି ଆଠଟା ବେଳକୁ ଭାତ ହୋଇଗଲା । ଖାଇସାରି ସେ ଝରକା ବାଟେ ଡେଇଁଗଲେ । ବୁଢ଼ୀ ମାଆର କୁଡ଼ିଆ ଆଡୁ ଚୁଲି ଜାଳିବାର ଧୂଆଁ ଗନ୍ଧାଉଥିଲା । କିଛି ଥଣ୍ଡା ପବନ ବୋହୁଥିଲା । ପାଖ ଆଖରେ କେଉଁଠି ବର୍ଷା ହୋଇଥିବ । ଆକାଶରେ ବିଜୁଳି ଚୁପ୍ ଚାପ୍ ଝଲକ ଉଠୁଥିଲା । ଘଡ଼ଘଡ଼ିର ଶବ୍ଦ ଶୁଣା ଯାଉ ନ ଥିଲା । ଏତେ ନୀରବତା ଥିଲା । ବିଜୁଳି ଆଲୁଅରେ ଯାହା ସବୁ ଦେଖାଯାଉଥିଲା ସେସବୁ ଦେଖିଥିବାର ଭ୍ରମ ପରି ସତସତିକା ଥିବାର ଦିଶୁଥିଲା । ପୁଣି ଅନ୍ଧାର ଭିତରେ ସେହି ମୁହୂର୍ତ୍ତରେ ନ ଥିବା ଭଳି ହୋଇ ଯାଉଥିଲା । ବୋଧହୁଏ ସେ ନିଜ ପାଇଁ ହିଁ କହି ଦେଇଥିଲେ ଯେ ସୋନସୀ ନାହିଁ । ତାହାର ଉତ୍ତରରେ ସେ ମୁଣ୍ଡ ହଲାଇ ଆସ୍ତେ କରି କହିଲେ, "ହଁ, ସୋନସୀ ନାହିଁ ।"

ତାଙ୍କୁ ଜଣା ନ ଥିଲା ଯେ ତାଙ୍କୁ ଏକପଦୀ ରାସ୍ତାରେ ଯିବାକୁ ହେବ କିନ୍ତୁ ଏକପଦୀ ରାସ୍ତାକୁ ଜଣାଥିଲା ତେଣୁ ସେ ରଘୁବର ପ୍ରସାଦଙ୍କ ଚାଲିବାର ରାସ୍ତାରେ ରହିଥିଲା । ରଘୁବର ପ୍ରସାଦଙ୍କର ଯେ ଟିଲା ଉପରକୁ ଯିବାର ଥିଲା, ସେକଥା ରଘୁବର ପ୍ରସାଦଙ୍କୁ ଜଣା ନ ଥିଲା । ଟିଲା କିନ୍ତୁ ଜାଣିଥିଲା । ସେଥିପାଇଁ ଯେଉଁଠାକୁ ରଘୁବର ପ୍ରସାଦ ଆସିଥିଲେ ସେ ଜାଗାଟି ଟିଲା ଉପରେ ଥିଲା । ପୋଖରୀ ରଘୁବର ପ୍ରସାଦଙ୍କ ଦୃଷ୍ଟିରେ ଥିଲା । ପୋଖରୀରେ ତାରାଙ୍କର ଓ ଚାନ୍ଦର ଛାଇ

ପଡ଼ିଲା ଯଦ୍ୱାରା ରଘୁବର ପ୍ରସାଦଙ୍କ ଦୃଷ୍ଟି ପଡ଼ିପାରେ । କୁଳୁକୁଳିଆମାନେ ରଘୁବର ପ୍ରସାଦଙ୍କର ଆଗ ଦେଇ ଚାଲିଗଲେ । କଇଁ ଫୁଲଯାକ ରଘୁବର ପ୍ରସାଦ ଦେଖିପାରିବେ ବୋଲି ଚାନ୍ଦର ଆଲୁଅରେ ଥିଲେ । ରଘୁବର ପ୍ରସାଦ କେଉଁ ପଥର ଚାଙ୍ଗଟି ଉପରେ ଶୋଇପଡ଼ିଲେ । ସେଇ ପଥର ଚାଙ୍ଗ ଉପରେ ବସି ପଡ଼ିଥିଲେ ଯାହାକି କଷଟୀ ପଥରର ଥିଲା । ସେ କଷଟୀ ପଥରର ଚାଙ୍ଗ ଉପରେ ଶୋଇପଡ଼ିଲେ । ପଥର ଥଣ୍ଡା ଥିଲା । ସେ ପଥର ଚାଙ୍ଗଟି ଚିକ୍କଣ ଥିବାରୁ ତାହା ଗଡୁନଥିଲା । ରଘୁବର ପ୍ରସାଦଙ୍କର ନିଦ ଭାଙ୍ଗିଲା ସକାଳକୁ । ସେ କନ୍ଥା ଘୋଡ଼େଇ ହୋଇଥିଲେ । ବୁଢ଼ୀ ମାଆ ରାତିରେ ବାହାରିଥିବ । ରଘୁବର ପ୍ରସାଦଙ୍କୁ ଶୋଇଥିବାର ଦେଖି ସେ କନ୍ଥା ଆଣିଥିବ । ସକାଳ ହୋଇଯିବା ପରେ ମେଘ ଭିତରୁ ସୂର୍ଯ୍ୟ ଡେରିରେ ବାହାରିଲେ । ପକ୍ଷୀ ବି ଡେରିରେ ରାବିଥିଲେ । ସେଥିପାଇଁ ରଘୁବର ପ୍ରସାଦ ଡେରିଯାକ ଶୋଇଥିଲେ । ଏଠି ସେଠି ଜାଗା ଜାଗାରେ ଗୋବର ଏଇଲାଗେ ଲିପା ହୋଇଥିଲା । ଚିତା ଓ ମୁରୁଜ ଥିଲା । ଏଠାକାର ସବୁ କିଛି ସୋନସୀର ପ୍ରତୀକ୍ଷା କରୁଚନ୍ତି । ସକାଳୁ ଉଠି ରଘୁବର ପ୍ରସାଦଙ୍କର ମନେ ହେଲା ଯେ ଡେରି ହୋଇଗଲା । ସେ ଦାନ୍ତ ଘଷି କୁଳୁକୁଞ୍ଚା କଲେ । କୁଳୁକୁଞ୍ଚା କରି ଠିକ୍ ଉଠିଲା ବେଳକୁ ବୁଢ଼ୀ ମାଆ ଚାହା ନେଇ ଆସିଗଲା । ରଘୁବର ପ୍ରସାଦ ଏପରିଭାବରେ ଚାହା ନେଲେ ଯେପରି ବୁଢ଼ୀ ମାଆ ସେତେବେଳେ ସ୍ନେହରେ ତାଙ୍କ ମଥାରେ ହାତ ରଖିଥିଲା । ଚାହା ପିଇସାରି ରଘୁବର ପ୍ରସାଦ ବୁଢ଼ୀ ମାଆ ଆଡ଼କୁ ସୋନସୀ କେବେ ଆସିବ ଭଳି ଚାହିଁଲେ । ଦିନେ ଦି ଦିନ ଭିତରେ ଆସିଯିବ ଭଳି ଜବାବରେ ବୁଢ଼ୀ ମାଆ ରଘୁବର ପ୍ରସାଦଙ୍କ ଆଡ଼େ ଚାହିଁଲା । ବୁଢ଼ୀ ମାଆ କହିଲା, ''ଭାତ ଖାଇକରି ଯିବୁ ।'' ରଘୁବର ପ୍ରସାଦ ହଁ ବୋଲି କହିଲେ ।

କଲେଜର ବାରଣ୍ଡାରେ ଗୋଟିଏ ସାଇକେଲ ଚାରିଦିନ ହେଲା ବେଓ୍ୱାରିସ ହୋଇ ପଡ଼ିଛି । ଗଣିତ ବିଭାଗର ବାରଣ୍ଡାରେ ହିଁ ଡେରା ହୋଇ ରହିଛି । ବିଭାଗାଧକ୍ଷଙ୍କର ଦୃଷ୍ଟି ଥରଟାଏ ପଡ଼ିଥିଲା । ସାଇକେଲରେ ଯା ଆସ କରିବାର ଅଭ୍ୟାସ ନ ଥିବାରୁ ସେ ବି ଭୁଲି ଯାଇଥିବେ ।

''ଆପଣଙ୍କର କି ?'' ବାରଣ୍ଡାରେ ସାଇକେଲକୁ ଦେଖାଇ ବିଭାଗାଧକ୍ଷ ରଘୁବର ପ୍ରସାଦଙ୍କୁ ପଚାରିଲେ । ରଘୁବର ପ୍ରସାଦ ମୁଣ୍ଡ ହଲାଇ ନାହିଁ କଲେ ।

''ଯା ତ ହୋଇନି ଯେ ଦିନେ ଦିଦିନ ଭିତରେ ସାଇକେଲ ଆଣିଥିବେ ଆଉ ଭୁଲିଯାଇଥିବେ ?''

''ନା, ସାର୍, ମୁଁ ତ ରୋଜ ଟେମ୍ପୋରେ ଆସେ ।''

''ଚପରାସୀକୁ ପଚାରିବା ।'' ଚପରାସୀକୁ ଡକାଇ ସେ ପଚାରିଲେ ।

''ଏଇଟା କାହା ସାଇକେଲ ? ଦିଦିନରୁ ପଡ଼ିଛି ଏଠି ।''

''ଚାରିଦିନ ହେଲା ତ ମୁଁ ଦେଖୁଚି ମହାରାଜ ।''

ତେବେ କହିଲୁନି କାହିଁକି ? ବିଭାଗାଧକ୍ଷ ଏଣେ ତେଣେ ଆହୁରି ଲାଇନ୍ କରି ଡେରା ହୋଇଥିବା କିଛି ସାଇକେଲ ଆଡ଼କୁ ଚାହିଁଲେ ଯଦି ତହିଁରୁ ଗୋଟେ ଦିଟା ସାଇକେଲ ଭୁଲ୍‌ରେ ଛଡ଼ାଯାଇଥିବ ।

''ରଘୁବର ପ୍ରସାଦ ମନେପକାନ୍ତୁ କ'ଣ ଚାରିଦିନ ଆଗରୁ ଆପଣ ସାଇକେଲରେ ଆସିଥିଲେ ?

''ନାଇଁ ।''

''ମନେ ପକାନ୍ତୁ ।''

''ମନେ ଅଛି ।''

''ଏ ସାଇକେଲଟାର ତାଲା ଖୋଲା ଅଛି ।'' ରଘୁବର ପ୍ରସାଦ ପୁଣି କହିଲେ ।''

''ଏମିତି ଥିଲେ ଏଇଟା ଚୋରି ହୋଇଯାଇପାରେ ।''

''ଚୋରା ସାଇକେଲର ପୁଣି ଚୋରୀ ।''

''ସାଇକେଲରେ ଭଲା ତାଲା ଲଗାଇ ଏଠି ଭୁଲି ଛାଡ଼ିଯାଇଥାନ୍ତା ।'' ବିଭାଗାଧକ୍ଷ କହିଲେ ।

''କେଜାଣି କାହାର ସାଇକେଲ ଏଇଟା ।'' ରଘୁବର ପ୍ରସାଦ ବିଢ଼ିବିଢ଼ି ହୋଇ କହିଲେ ।

''ଯାହାର ହେଉ, ଆଉ ଚୋରି ହେବା ଦରକାର ନାହିଁ । ରଘୁବର ପ୍ରସାଦ ଆପଣ ସାଇକେଲରେ ତାଲା ଲଗାଇ ଚାବିଟି ନିଜ ପାଖରେ ରଖନ୍ତୁ ।

''ନାଇଁ ।''

''ମୁଁ ତ ସାଇକେଲ ରଖିବାକୁ କହୁନାହିଁ । ଚାବି ରଖିବାକୁ କହୁଛି ।''

ରଘୁବର ପ୍ରସାଦଙ୍କର ବାରମ୍ବାର ମନେ ହେଉଥିଲା ଯେ ବିଭାଗାଧକ୍ଷ ତାଙ୍କୁ ସାଇକେଲ ରଖିବାକୁ କହୁଛନ୍ତି ଯଦ୍ୱାରା ସେ ସାଇକେଲରେ ଯିବା ଆସିବା କରୁଥିବେ । ସେଥିପାଇଁ ସେ କହିଲେ, ''ମୁଁ ଆଉ କିଏ ଛାଡି ଯାଇଥିବା ସାଇକେଲ ଚଲାଇବି ନାହିଁ ।''

''ରଘୁବର ପ୍ରସାଦ ଛାଡ଼ି ଯାଇଥିବା ସାଇକେଲ ଚଲଉ ଚଲଉ ମନେ ପଡ଼ିଯିବ ଯେ ସାଇକେଲ ତୁମରି, ତା'ପରେ ତୁମେ ନିଜ ସ୍ମୃତିର ସାଇକେଲ ଚଳାଉଥିବ ।''

ଚପରାସୀ ଦେଖିପାରିଲା ଯେ ଗାଈ ମଇଁଷିଙ୍କ ପଲଟା ସାଇକେଲ ରଖିଥିବା ସ୍ଥାନ ଆଡ଼କୁ ପହଞ୍ଚୁଛି । ମଇଁଷିର ଧକ୍କା ଖାଇ ଗୋଟିଏ ସାଇକେଲ ଯେବେ ପଡ଼ିଯାଏ ସବୁଯାକ ପଡ଼ିଯିବେ । ଚପରାସୀ ଭାବୁଥିଲା ବିଭାଗାଧକ୍ଷଙ୍କୁ କହିଦବ ଯେ ଗାଈଗୋରୁଙ୍କ ସକାଶେ ସାଇକେଲ ଯାକ ପଡ଼ିଯିବ । ସେ ଯିବ ଯିବ ବି ହେଉଥିଲା ଅଡ଼େଇ ଦେବାକୁ କିନ୍ତୁ ଜାଣି ଜାଣି ଯାଇ ନଥିଲା । ତା'ର ମନେ ହେଉଥିଲା ଯେ ଗୋରୁ ମଇଁଷି ସାଇକେଲକୁ ନ ଛୁଇଁ ଚରନ୍ତି । ସେଇମିତି ହେଲା ବି । ଭୁଲ୍ ହୋଇଥିଲା ତ ବାରଣ୍ଡାରେ ସେଇ ଏକୁଟିଆ ବସି ରହିଥିବା ସର୍ବଶେଷ ଗାଈଟି । ବାରଣ୍ଡାରେ ବସିଥିବା ଗାଈଟି କେହି ଗାଈଟିକୁ ଛାଡ଼ି ଯାଇଥିବା ଭଙ୍ଗୀରେ ବସିଥିଲା । ଯାହାର ଗାଈ ହୋଇଥିବ ତା'ର ଯେବେ ମନେ ପଡ଼ିଯିବ, ସେ ଆସି ତାକୁ ଅଡ଼େଇ ନେଇଯିବ । ମନେ ରହିଥିବା ଯେଉଁ ଦୁନିଆଟିରେ ଥିଲା ତାହାଠାରୁ ଅଧିକ ସେ ଭୁଲିଯାଇଥିବା ଦୁନିଆରେ ଥିଲା ।

ଆଜିର ଦିନ ଥିଲା । କଲେଜକୁ ଯିବା ପାଇଁ ରଘୁବର ପ୍ରସାଦ ଠିଆ ହେଲେ । ତାଳ ଗଛ ଗୁଡ଼ିକୁ ସେ ଚାହିଁଲେ । କିନ୍ତୁ ତାଙ୍କୁ ଜଣା ନଥିଲା ଯେ ସେ ତାଳଗଛଗୁଡ଼ିକୁ ଚାହିଁଛନ୍ତି । ହାତୀ ଆସିବାର ଦିଗରୁ ସେ ଗୋଟିଏ ସାଧୁକୁ ସାଇକେଲରେ ଆସୁଥିବାର ଦେଖିଲେ । ସେ ସେହି ହାତୀ ବାଲା ସାଧୁ ଭଳି ଦିଶୁଥିଲା । ଯେପରି ହାତୀ ଚାଲିଯିବା ପରେ ବର୍ତ୍ତମାନ ସେ ସାଇକେଲରେ ଆସୁଥିଲା । ଦାଢ଼ି ଥିବାରୁ ଦୁହିଁଙ୍କ ମଧ୍ୟରେ କିଛି ସାଦୃଶ୍ୟ ଥିଲା । ନାକ ବା ମୁଖରେ ଯାହା ବା

ଭିନ୍ନତା ଥିବ ସେ ସବୁ ଏକାଭଳି ଦାଢ଼ି ମଧ୍ୟରେ ଲୁଚିଥିବ । ପାଖକୁ ଆସିବାରୁ ଜଣାଗଲା ସେ ଅନ୍ୟ ଜଣେ ସାଧୁ ।

ସାଧୁ ସାଇକେଲ ଠିଆ କଲା । ରଘୁବର ପ୍ରସାଦଙ୍କ ଆଡ଼କୁ ସେ ମୁରୁକି ହସି ଚାହିଁଲା । ସେ ଧୂଆଁପତ୍ର ଖାଇବା ଲାଗି ରହିଥିଲା । ତା'ର ମୁରୁକି ହସ ଦେଖି ରଘୁବର ପ୍ରସାଦଙ୍କ ମନରେ ଖଟକା ଲାଗିଥିଲା । ସେ ତାଙ୍କୁ ସାଇକେଲରେ ବସିବାକୁ କହି ଦବକି ଆଉ ! ହାତୀ ତ ତେବେ ବି ଭଲ ଥିଲା କିନ୍ତୁ ସାଇକେଲ ଉପରେ ଡବଲ ରାଇଡିଂ କରି କଲେଜ ଯିବାକୁ ବଡ଼ ମିହନ୍ତ ହୋଇଥାନ୍ତା ପବନ ଓଲଟା ତରଫରୁ ବହୁଥିଲା । ସାଧୁ ଯେତେବେଳେ ଚାଲିଗଲା ସେତେବେଳେ ମନେହେଲା ନାହିଁ ଯେ ଗୋଟିଏ ସାଇକେଲର ଜାଗା ସାଇକେଲଟା ଯିବାରୁ ବାହାରିଗଲା । ସେ ଯେତେବେଳେ ଥିଲା ସେତେବେଳେ ବି ପାଖ ଆଖରେ ବହୁତ ସାଇକେଲର ସ୍ଥାନ ଥିଲା । ଟେମ୍ପୋ କିଛି ସମୟ ପରେ ଆସିଥିଲା । ରଘୁବର ପ୍ରସାଦ ଟେମ୍ପୋରେ ବସି ସାଇକେଲବାଲା ସାଧୁଠାରୁ ବହୁତ ଆଗକୁ ବାହାରି ଯାଇଥିଲେ ।

କଲେଜ ଯାଇ ପହଞ୍ଚି ସେ ଦୃଷ୍ଟି ଦେଲେ ଯେ ବାରଣ୍ଡାର ସାଇକେଲ ସେଠି ନ ଥିଲା । ରଘୁବର ପ୍ରସାଦ ଚପରାସୀକୁ ପଚାରିଲେ । ଚପରାସୀ ବି କିଛି ଜାଣି ନ ଥିଲା । ସେ ଆଉ ରହି ପାରିଲେ ନାହିଁ । ବିଭାଗାଧକ୍ଷଙ୍କୁ ଯାଇ ପଚାରିଲେ, "ସାଇକେଲ ତ ଦେଖାଯାଉନାହିଁ । ଆପଣ କ'ଣ କୋଉଠି ନିରାପଦ ଜାଗାରେ ରଖାଇ ଦେଇଛନ୍ତି ?"

"ନାହିଁ ତ । ସେଠି ନାହିଁ କି ?"

"ତା' ହେଲେ ତ ଚୋରି ହୋଇଯାଇଛି । ସାଇକେଲରେ ତାଲା ଲଗାଇ ରଖିବା ଉଚିତ ଥିଲା । ମୁଁ ଭୁଲିଗଲି ।"

"ମୁଁ ବି ଭୁଲିଗଲି ।"

"ଏବେ କ'ଣ କରିବା ?"

"ଯାହାର ସାଇକେଲ ବୋଧେ ସେଇ ନେଇ ଯାଇଥିବ । ଯେବେ ତାଲା ଲଗାଇ ଦେଇଥାନ୍ତେ ତେବେ ସେ ନିଜର ସାଇକେଲ ନେଇ ପାରି ନ ଥାନ୍ତା ।"

"ତା ହୋଇପାରେ ।"

ରଘୁବର ପ୍ରସାଦ ଭାବୁଥିଲେ ଯେ ସେ ସାଇକେଲଟି ସେଇ ସାଧୁର ହୋଇଥିବ ଯାହାକୁ ସେ ଆଜି ସାଇକେଲରେ ବସି ଆସୁଥିବାର ଦେଖିଥିଲେ, ସେ ଚାରିଦିନ ପାଇଁ ନିଜର ସାଇକେଲ ଛାଡ଼ିକରି ଚାଲିଯାଇଛି ଆଉ କାଲି ନେଇ ଯାଇଛି ।

"ମୁଁ ଆଜି ଜଣେ ସାଧୁକୁ ସାଇକେଲ ଚଳାଉ ଥିବାର ଦେଖିଥିଲି । ହାତୀବାଲା ସାଧୁ ନୁହେଁ, ଆଉ ଜଣେ ସାଧୁ ବୋଧେ ସେ ସାଇକେଲବାଲା ସାଧୁ କଲେଜ ଆଡ଼କୁ ଆସୁଥିଲା ।"

"ଆଚ୍ଛା ।" ବିଭାଗାଧକ୍ଷ କହିଲେ ।

"ଧୂଆଁପତ୍ର ଖାଇବାକୁ ପାନ ଦୋକାନ ପାଖରେ ସେ ଓହ୍ଲାଇଥିଲା ?"

"ଆପଣଙ୍କୁ ସାଇକେଲରେ ବସିବାକୁ ସେ କହିଲା ନାହିଁ ତ ଆଉ ?"

"ନାଇଁ । ସେ ହାତୀବାଲା ସାଧୁର ଭାଇ ପରି ଲାଗୁଥିଲା । କେଜାଣି, ସେ ସାଇକେଲରେ ବସି ହାତୀକୁ ଖୋଜିବାକୁ ଆସିଥିବ !"

"ଆପଣଙ୍କୁ ସେ ସାଇକେଲରେ ବସିବାକୁ କହିଥିଲେ କ'ଣ ଆପଣ ବସି ଯାଇଥାନ୍ତେ ?"

"ନାଇଁ । ସେଇଟା ଟିକେ ଅଧିକା ହୋଇଥାନ୍ତା । ଡବଲ ରାଇଡିଂ କରିବାକୁ ମିହନ୍ତ ଲାଗେ । ଯେବେ ବେଳ କମ୍ ଥାଆନ୍ତା ତେବେ ବୋଧହୁଏ ବସିଯାଇଥାନ୍ତି, ଅଧାବାଟ ମୁଁ ବି ଡବଲ ରାଇଡିଂ ଚଲାଇଥାନ୍ତି ।"

"ତା'ର କ୍ୟାରିଅର୍‌ରେ ବରଗଛ ଡାଳ ତ ବୋଝେଇ ହୋଇ ନ ଥିଲା ?"

"କାହିଁକି" ବୋଲି ଦୃଷ୍ଟି ଦେଇ ରଘୁବର ପ୍ରସାଦ ବିଭାଗାଧକ୍ଷଙ୍କ ଆଡ଼କୁ ଚାହିଁଲେ ।

"ସାଧୁର ସାଇକେଲ କେଜାଣି ବରଗଛର ଡାଳ ଖାଉଥିବ ।"

କଲେଜ ପାରି ହୋଇ ଯୋଉ ପୋଖରୀରେ ସାଧୁ ହାତୀକୁ ଗାଧୁଆଏ ସେଠି ସାଇକେଲବାଲା ସାଧୁ ସାଇକେଲକୁ ଗାଧୋଇବାକୁ ଯାଉଥିବ । ରଘୁବର ପ୍ରସାଦ ସାଇକେଲକୁ 'ଗାଧୋଇବା' ବଦଳରେ 'ଧୋଇବା' ବି କହି ପାରିଥାନ୍ତେ । ହୁଏତ ତାହାରି ଜବାବରେ ବିଭାଗାଧକ୍ଷ କହିଲେ ।

"ଗାଧୋଇବାକୁ ଯାଉଥିବ ନୁହେଁ, ଗାଧୋଇ ଦେବାକୁ ନେଇ ଯାଉଥିବ ।"

"ଆଜ୍ଞା ।" ରଘୁବର ପ୍ରସାଦ କିଛି ବୁଝି ପାରିନଥିଲେ ।

"ରଘୁବର ପ୍ରସାଦ ଦେଖିବ ଆଜି କି କାଲି ଭିତରେ ତୁମର ଘର ଆଗରେ କେହି ନିଜର ସାଇକେଲକୁ ଲାୱାରିସ କରି ଛାଡ଼ି କରି ଚାଲିଯିବ ।"

"କାହିଁକି ?"

"ଏଇମିତି ତାକୁ ରେଳଗାଡ଼ିରେ ଏଲାହାବାଦ ବା କାଶୀ ଯିବାର ଥିଲେ, ସେ କଣ କରିବ ?"

"ସାଇକେଲରେ ତାଲାଦେଇ ସେ ନିଜ ଘରେ ରଖିଦେବ ନାହିଁ ?"

"ଘର କାହିଁ । ପଲା ହୋଇଥିବ । ଗଛମୂଳେ ଭଙ୍ଗାଘର ବାରଣ୍ଡାରେ । ସେଠାରୁ ସାଇକେଲ ଚୋରି ହୋଇଯିବ ।"

"ସାଇକେଲ ଯୋଗୁ କିଛି ହଇରାଣ ନାହିଁ । ଘର ବାହାରେ ଗୋଟେ କି ଦି'ଟା ସାଇକେଲ ଛାଡ଼ି ଯାଉ ।"

ସାଇକେଲ ଖରାବର୍ଷା ଖାଇ ପଦାରେ ପଡ଼ି ରହିବ । ତମକୁ ତ ଏଇଟା ଭଲ ଲାଗିବ ନାହିଁ । ଆଉ ତମେ ତାକୁ ନେଇ ଘର ଭିତରେ ଥୋଇଦବ ।

"ନାଇଁ, ମୁଁ ପୁଲିସରେ ରିପୋର୍ଟ ଲେଖାଇ ଦେବି, ଘର ଭିତରେ ରଖିବି ନାହିଁ ।"

ରଘୁବର ପ୍ରସାଦ ଭାବୁଥିଲେ ଯେ ସାଇକେଲବାଲା ସାଧୁ ଆଉ ହାତୀବାଲା ସାଧୁ ଦୁହେଁ ପରସ୍ପରକୁ ଚିହ୍ନିଥିବେ । ସେ ଯୋଉ ସାଇକେଲ ଚଢ଼ି କଲେଜ ଗଲେ ବାଟରେ ହଠାତ୍ ସାଇକେଲବାଲା ସାଧୁ ତାଙ୍କ ସାଥିରେ ଚାଲି ଆସିବ, ଆଉ କଲେଜ ପର୍ଯ୍ୟନ୍ତ ତାଙ୍କରି ସାଥିରେ ଚାଲୁଥିବ । ଫେରିବା

ବେଳେ ବି ସେଇକଥା, ପ୍ରତିଦିନ ନ ହେଉ ଟେମ୍ପୋରେ ଯା ଆସ କରିବା ଭଲ । କିନ୍ତୁ ଯିବା ବାଟରେ ଅନିଶ୍ଚିତ ଭାବେ ଠିଆ ହୋଇ ରହିବାକୁ ଭଲ ଲାଗେ ନାହିଁ ।

ଆଜି ମଧ୍ୟ ସୋନସୀ କଥା ମନେ ପଡୁଥିଲା । ଯା'ଆସ କରୁଥିବା ଲୋକ, ଗଛବୃକ୍ଷ, ଘର, ସଡ଼କ, ଶବ୍ଦମାନ, ସବୁ ସେ ଦେଖୁଥିଲେ ଶୁଣୁଥିଲେ କିନ୍ତୁ ସୋନସୀ କଥା ମନେ ପଡୁଥିଲା । ଆକାଶରେ ତାଙ୍କୁ ଗୋଟିଏ ଛୋଟିଆ ଖଣ୍ଡ କଳା ବାଦଲ ଦିଶୁଥିଲା ଯାହାକି ଆସ୍ତେ ଆସ୍ତେ ଘୁଞ୍ଚି ଯାଉଥିଲା । ତାଙ୍କର ସେଇ କଷଟୀ ପଥରର ଚାଇଁ କଥା ମନେ ପଡ଼ିଥିଲା । କଳା ବାଦଲ ଉପରେ ତାଙ୍କୁ ରୂପେଲି ଓ ସୁନେଲି ସୂର୍ଯ୍ୟ କିରଣ ଭଳି ଚିହ୍ନ ଦିଶିଗଲା । ଏହି ମନେ ପଡ଼ିବା ଭିତରେ କିଛି ତାରତମ୍ୟ ହୋଇ ପାରିଥାନ୍ତା କିନ୍ତୁ ଦିନର ସଡ଼କ ଉପରେ ଚାଲୁ ଚାଲୁ ତାଙ୍କର ରାତିର ଏକପଦୀ ଉପରେ ଯିବାର ମନେ ପଡୁଥାଏ । ଏକପଦୀରେ ଗୋବର ଲିପା ହୋଇଥିଲା ଆଉ ଆଗ ପଟରେ କିଛି ସମୟ ପୂର୍ବରୁ ସୋନସୀର ଯିବାର ଆଭାସ ମିଳିଥିଲା ଯେ ସେ ସୋନସୀର ପଛେ ପଛେ ଥିଲେ । ଏଥିରେ ବି ଟିକିଏ ତାରତମ୍ୟ ହୋଇ ପାରିଥାନ୍ତା । ଘର ସାମନାରେ ଆସି ସେ କିଛି ସମୟ ପାଇଁ ଅଟକି ଯାଇ ଠିଆ ହୋଇପଡ଼ିଲେ । ସେ ଚାଲି ଚାଲି ନୁହେଁ ହାତୀରେ ବସିକରି ଆସିବା କଥା ମନେ ପକାଉଥିଲେ । ସାଙ୍ଗରେ ସୋନସୀ ଥିଲା ଯେ, ହାତୀ ତଳେ ବସିଲେ ସେ ଓହ୍ଲାଇବେ ତା'ପରେ ସୋନସୀ ଓହ୍ଲାଇବ, ହାତୀ ବସୁ ନ ଥିଲା । ଆଉ ସେ ଅଟକି ରହିଲେ ।

ମନେ ପଡ଼ିବାରେ କୌଣସି ପଦାର୍ଥ, ଦୃଶ୍ୟ, ସମୟ ଇତ୍ୟାଦିର ବହୁତ ଆଧାର ବା ତାରତମ୍ୟ ହୋଇ ପାରୁ ନ ଥିଲା । ଖାଲି ବଖରା ଭିତରକୁ ପଶିଛନ୍ତି କି ନାହିଁ ପଡ଼ିଶା ଘରର ସ୍ତ୍ରୀ ଡାକିଲା, ''ରଘୁବର ପ୍ରସାଦ !'' ସେ ବାହାରି ଆସିଲେ ।

''ଆଜି କ'ଣ ଶୀଘ୍ର ଛୁଟି ହୋଇଗଲା ?'' ପଡ଼ିଶାଘର ସ୍ତ୍ରୀ ପଚାରିଲା ।

''ହଁ ।'' ସେ କହିଲେ

''ଚାହା ପିଇବ ?''

''ନାଇଁ । କହି ସେ ଭିତରକୁ ଚାଲିଗଲେ । କିଛି ସମୟ ଖଟିଆ ଉପରେ ଶୋଇ ରହିଲେ । ଚଟାଣ ଉପରେ ହାତୀର ମୋଟା ଜଞ୍ଜିରଟା ଖେଳେଇ ହୋଇ ପଡ଼ିଥିଲା । ଉଠିକରି ସେଇଟିକୁ ସଜାଡ଼ିଲେ । ପଦାକୁ ଆସିଲେ । ସେତିକିବେଳେ ଆର ପଡ଼ିଶା ଘରର ସ୍ତ୍ରୀଟି ନିଜର କବାଟ ଆଗରେ ଠିଆ ହୋଇଥିଲା । ସେ ଯେପରି ରଘୁବର ପ୍ରସାଦଙ୍କୁ ଅପେକ୍ଷା କରିଥିଲା ।

''ବୋହୂ କେବେ ଆସିବ ?''

''ଆଜି କି କାଲି ଭିତରେ ଆସିଯିବ ।''

''ତାର ଚିଠି ଆସିଛି କି ?''

''ନାଇଁ, ଛୋଟୁର ଚିଠି ଆସିଛି ।''

''ଖିଆ ପିଆ କରିଛ ?''

''ହଁ ।''

"କ'ଣ ରାନ୍ଧିଥିଲ ?"

"କାଲିର ଯାହା ଥିଲା ।"

"ସନ୍ଧ୍ୟାବେଳେ ଘରକୁ ଆସି ଖାଇନେବ ।"

"ପରେ ଖାଇନେବି ।"

ଏହା କହି ସେ ଭିତରକୁ ଚାଲିଗଲେ । ଖଟିଆରେ ଗଡ଼ିପଡ଼ିଲେ ଓ ଶୋଇଗଲେ ।

ସୋନସୀର ବସ୍ ସନ୍ଧ୍ୟା ବେଳକୁ ଆସିଲା ବାଟରେ ଖରାପ ହୋଇ ଯାଇଥିଲା । ମରାମତିରେ ତିନି ଘଣ୍ଟା ଲାଗିଗଲା । ବସ୍‌ଟି ଉଚ୍ଚା ଆମ୍ବଗଛ ପାଖରେ ରହିଥିଲା । ବସ ଅଟକିବା ମାତ୍ରେ ଗଛ ଉପରୁ ଗୋଟିଏ ବଡ଼ ମାଙ୍କଡ଼ ବସ୍‌ର ଛାତ ଉପରେ ଡେଇଁ ପଡ଼ିଥିଲା । ଜିନିଷ ପତ୍ର ଓହ୍ଲାଇବା ଲାଗି କୁଲି ଯେତେବେଳେ ବସ୍‌ରେ ଚଢ଼ିଗଲା ତାକୁ ମାଙ୍କଡ଼ଟି ଦେଖାଗଲା । ଗୋଟିଏ ନୁଆଣିଆ ଆମ୍ବଡାଳ ଉପରେ ଡେଇଁପଡ଼ି ମାଙ୍କଡ଼ଟି ପଳାଇଯାଇଥିଲା । ବସ୍ ଉପରେ ମାଲପତ୍ର ଲଦା ହୋଇଥିଲା । ଅଖାରେ ମକା, କୋବି, ଲଙ୍କା ଭର୍ତ୍ତି ହୋଇଥିଲା । ସୋନସୀ ବାଟଯାକ ଠାଏ ଠାଏ ମାଙ୍କଡ଼ଙ୍କ ଦଳ ଦେଖିଛି । ଥରଟାଏ ଚଳନ୍ତି ବସ୍ ଆଗରେ ଦୁଇ ଦୁଇଟା ମାଙ୍କଡ଼ ଜଣକ ପଛରେ ଜଣେ ରାସ୍ତାକୁ ପାରି ହୋଇଥିଲେ ।

ବସ୍ ଷ୍ଟାଣ୍ଡ ଗୋଟିଏ ଛୋଟିଆ ଖାଲି ପଡ଼ିଆ ଥିଲା । ତା'ର ଚାରିକଡ଼େ ଅଧିକାଂଶ ଆମ୍ବ ଗଛଥିଲା । ଗଛ ଉପରେ ଶୁଆ ବସିଥିଲେ । ଦଳ ଦଳ କରି ଶୁଆ ଉଡ଼ିଆସୁଥାନ୍ତି ଆଉ ଦଳ ଦଳ କରି ଶୁଆ ଉଡ଼ିଯାନ୍ତି । ଗୋଟିଏ ଦିଟା ଶୁଆ ରହିଯାଉଥାନ୍ତି । ଗଛ ମୂଳରେ ଗୋଟିଏ ଟୋକେଇରେ ତାଜା ପିଜୁଳି ନେଇ ପିଜୁଳି ବିକାବାଲି ବସିଥିଲା । ଗୋଟିଏ ଶୁଆ ପିଜୁଳି ଟୋକେଇରେ ଆସି ବସି ଯାଇଥିଲା । ଆଉ ପିଜୁଳିକୁ ଖୁମ୍ପିବାକୁ ଲାଗିଥିଲା । ଖୁମ୍ପା ପିଜୁଳିଟି ଭିତରୁ ଲାଲ ସସ ଦିଶୁଥାଏ । ହଠାତ୍ ଶୁଆଟା ଉଡ଼ିଗଲା । ପିଜୁଳି ବାଲି ତାକୁ ଭଗାଇ ନାହିଁ । ବରଂ କାଳେ ଶୁଆ ଚମକି ଉଡିଯିବ ସେଥିପାଇଁ ପିଜୁଳି ବାଲି ହଲ୍‌ଚଲ୍ ବି ହୋଇନାହିଁ ଏବଂ ମୂର୍ତ୍ତି ଭଳି ବସି ରହିଛି । ଯେତେବେଳେ ଶୁଆ ଉଡ଼ିଗଲା । ପିଜୁଳି ବାଲି ଶୁଆର ଅଧାଖିଆ ପିଜୁଳିଟିକୁ ଖାଇବାକୁ ଲାଗିଲା ।

ସୋନସୀ ବସ୍‌ରୁ ଓହ୍ଲାଇ ପାଛୁଡ଼ା ଘୋଡ଼ିହୋଇ ଠିଆ ହୋଇଥିଲା । ଗୋଟିଏ ରିକ୍ସାବାଲା ରିକ୍ସା ନେଇ ଆସିଲା ।

"ଭାଇ, ବସ୍‌ରୁ ସାଇକେଲଟା ଓହ୍ଲାଇ ଦିଅ ।" ରିକ୍ସାବାଲାକୁ ସେ କହିଲା । ବସ୍ ଉପରେ ଚଢ଼ିଥିବା କୁଲିଟି ରିକ୍ସାବାଲାକୁ ସାଇକେଲ ଧରାଇ ଦେଲା । ରିକ୍ସାବାଲା ହାତରୁ ସାଇକେଲଟା ପଡୁ ପଡୁ ରହିଯାଇଥିଲା । ସେତେବେଳେ ସୋନସୀ ବି ସାଇକେଲକୁ ସମ୍ଭାଳି ନେବାକୁ ଚେଷ୍ଟା କରିଥିଲା ।

ସୋନସୀ ତା'ର ବାକ୍ସ ବ୍ୟାଗ ଧରି ରିକ୍ସାରେ ବସିଯାଇଥିଲା । ତା'ପରେ ରିକ୍ସାବାଲା ସାଇକେଲଟିକୁ ରଖିଲା । ସାଇକେଲକୁ ଧରି ସୋନସୀ ବସିଥିଲା । ରିକ୍ସା ଚାଲିବା ମାତ୍ରେ ଦଳେ ଶୁଆ ରିକ୍ସା ଉପର ଦେଇ ଉଡ଼ିଯାଇଥିଲେ । ଶୁଆଙ୍କ ଦଳଟି ସୋନସୀର ଘର ଆଡ଼କୁ ଉଡ଼ିଥିଲେ ।

ସୋନସୀ ଦୂରରୁ ଘରକୁ ଦେଖିବାରୁ ଦୀର୍ଘ ନିଃଶ୍ୱାସ ନେଲା । ନିଃଶ୍ୱାସ ନେଲାବେଳେ କେଉଁ ଫୁଲର ବାସନା ପାଇଥିଲା । ଘରେ ପହଞ୍ଚୁ ପହଞ୍ଚୁ ଆହୁରି ସନ୍ଧ୍ୟା ହୋଇଯାଇଥିଲା । ଯିବା ଆସିବା

କରୁଥିବାରୁ କେଉଁଠି କାଳେ ରଘୁବର ପ୍ରସାଦ ଦିଶିଯିବେ ସେଇପରି ସେ ହେଉଥିଲା । ରିକ୍ସାବାଲାକୁ ସେ ବାଟ କହି କହି ଯାଉଥିଲା ।

ଘରର କବାଟ ବନ୍ଦ ଥିଲା । ସାଇକେଲଟି ତଳକୁ ଓହ୍ଲାଇ ଦେଇ ହ୍ୟାଣ୍ଡଲ୍‌ରେ ଝୁଲାଟି ବାନ୍ଧିଦେଇ ରିକ୍ସା ବାଲା ଚାଲିଗଲା । ବାକ୍ସକୁ ସୋନସୀ ଓହ୍ଲାଇଥିଲା । ବାକ୍ସ ନେଇ ସେ ଦରଜା ପାଖକୁ ଆସିବା ସମୟରେ ଗୋଟିକ ପରେ ଗୋଟିଏ କରି ପଡ଼ିଶାଘରର କବାଟ ଖୋଲିଗଲେ । ସୋନସୀ ଖୁବ୍ ଖୁସି ଥିଲା ।

''ବହୁତ ଡେରି କରିଦେଲୁ ।'' ମୁରୁକି ହସି ପଡ଼ିଶାର ସ୍ତ୍ରୀ କହିଲା ।

''ଖୁବ୍ ଜଲଦି ଆସିଗଲୁ ।'' ଆଉ ପଡ଼ିଶାଟି ହସିକରି କହିଲା । ସୋନସୀ ସେ ଦୁହିଁଙ୍କର ପାଦ ଛୁଇଁଲା ଓ ଚୁପ୍‌ଚାପ୍ ଠିଆ ହୋଇ ରହିଲା । ସେ ସୁସ୍ଥ ଓ ସୁନ୍ଦର ଲାଗୁଥିଲା । ବଖରା ଭିତରେ ତ ରଘୁବର ପ୍ରସାଦଙ୍କର କିଛି ସୋର ଶବ୍ଦ ନାହିଁ । ଝରକା ବାଟେ ସେ ପଟକୁ ଚାଲିଯାଇଥିବେ । ଝରକା ବାଟେ ଡେଇଁ କରି ରଘୁବର ପ୍ରସାଦଙ୍କ ପାଖକୁ ଦଉଡ଼ିଯିବାକୁ ଉତଲା ପରି ହୋଇ ସେ ଶାନ୍ତ ଭାବେ ଠିଆ ହୋଇଥିଲା ।

''ଭିତରକୁ ଯା'ମ ।'' ଗୋଟିଏ ପଡ଼ୋଶିନୀ କହିଲା । ଭିତରକୁ ଯିବାକୁ ତାକୁ ତିନି ପାଦ ଆଗେଇ ଯିବାକୁ ପଡ଼ିଥାନ୍ତା । ଆଉ ପଡ଼ୋଶିନୀର ଦୟା ହୋଇଗଲା । ସେ କହିଲା, ''ଆଚ୍ଛା ଯା ।'' ଆଉ ନିଜର କବାଟକୁ ଧୀରେ ବନ୍ଦ କରିଦେଲା । ଆଉ ଜଣକ ବି କବାଟ ବନ୍ଦ କରିଦେଲା । ସୋନସୀ ବହୁତଗୁଡ଼ିଏ ଚୁଡ଼ି ଆଉ ଛୁନ୍-ଛୁନ୍ ଶବ୍ଦର ସାନ ସାନ ଘୁଙ୍ଗୁର ଲଗା ପାଇଝରୀ ପିନ୍ଧି ଥିଲା । ରଘୁବର ପ୍ରସାଦ ଖଟିଆ ଉପରେ ଗଡୁ ଗଡୁ ଶୋଇପଡ଼ିଥିଲେ । ସେ ଆସ୍ତେ କରି ବାକ୍ସକୁ ଭିତରେ ଥୋଇଲା । ଦରଜା ବନ୍ଦ କଲା । ସାଇକେଲଟି ପଦାରେ ହିଁ ରହିଗଲା । ତହିଁରେ ତାଲା ନଥିଲା । ପାଛୁଡ଼ା ଆଉ ମୁଣି ସେଠି ଟଙ୍ଗା ହୋଇ ରହିଗଲେ ।

ସେ ରଘୁବର ପ୍ରସାଦଙ୍କ ପାଖକୁ ଗଲା । ଆସ୍ତେ କରି ସେ ଶୋଇଗଲା । ରଘୁବର ପ୍ରସାଦଙ୍କର ପିଠି ଯେଉଁଠି ଖୋଲା ଥିଲା ସେଠାରେ ସେ ନିଜର ହାତକୁ ଛୁଆଁଇଲା ଓ ହଲଚଲ ନ ହୋଇ ଅନେକ ଦିନରୁ ଥକିଲା ଥିବାରୁ ତାକୁ ନିଦ ଆସିଗଲା ।

ଅଧ ରାତିରେ ରଘୁବର ପ୍ରସାଦଙ୍କୁ ଶୋଇ ଶୋଇ ଜଣାପଡ଼ିଗଲା ଯେ ସୋନସୀ ଆସିଯାଇଛି ଆଉ ତାଙ୍କ ପାଖରେ ଶୋଇଛି । ସେ ବହୁତ ଗଭୀର ନିଦରେ ଆହୁରି ଗଭୀର ନିଦରେ ଶୋଇଥିବା ସୋନସୀକୁ କହିଲେ, ''ମୁହଁକୁ ଏକଡ଼କୁ ବୁଲା ।'' ସୋନସୀ କଡ଼ ଲେଉଟାଇ ରଘୁବର ପ୍ରସାଦଙ୍କ ତରଫକୁ ମୁହାଁଇଗଲା । ଶୋଇଥିବା ଭିତରେ ଶୋଇଲା ସୋନସୀକୁ ଚୁମ୍ବନ କରିବାରୁ ସୋନସୀ ପବନରେ ପହଁରିବାକୁ ଲାଗିଲା । ରଘୁବର ପ୍ରସାଦ ପବନରେ ପହଁରା ଜାଣି ନ ଥିଲେ । ସେ ବୁଡ଼ିଗଲେ । ପବନରେ ବୁଡ଼ି ବୁଡ଼ି ସେ ଗଭୀର କରି ନିଃଶ୍ୱାସ ମାରୁଥିଲେ । ପାଣିରେ ତ ବୁଡ଼ି ନଥିଲେ ଯେ ତାଙ୍କୁ ନିଃଶ୍ୱାସ ରୋକିବାକୁ ହୋଇଥାନ୍ତା । ସୋନସୀ ନିଦ ଭିତରେ ବି ହାତ ଉପରକୁ ଖସାଇ ଚୁଡ଼ିଗୁଡ଼ିକୁ କଷି ନେଇଥିଲା ଯେପରି ନ ବାଜେ ।

ପବନରେ କୂଳରେ ଯେତେବେଳେ ସୋନସୀ ଆସି ଲାଗିଲା ସେତେବେଳେ ଥଣ୍ଡା ହାୱାରୁ ଦମକାଏ ଥୁଆ ହୋଇଥିଲା । ତହିଁରେ ରଜନୀଗନ୍ଧାର ମହକ ଭର୍ତ୍ତି ହୋଇଥିଲା । ଯେପରି ଥଣ୍ଡା ହାୱାର ପୁଟୁଳିରେ ଥୁଆ ହୋଇଛି । ଥଣ୍ଡା ପବନର ଦମକା ଚାରିପଟେ ବାସନାର ଜଙ୍ଗଲ ଥିଲା ସେ ବାସନାର ସ୍ପର୍ଶ ଜଙ୍ଗଲି ଓ ଖଦଖଦଡ଼ିଆ ଥିଲା ଯେପରି ଆଞ୍ଚୁଡ଼ି ହୋଇଗଲା ।

ଶୋଇଥିବା ସୋନସୀକୁ ରଘୁବର ପ୍ରସାଦ ବିଳବିଳେଇ କହିଲେ, ''ରାତ୍‌-ରାଣୀ''(ରଜନୀଗନ୍ଧାର ହିନ୍ଦୀ ନାମ)

ଏହାକୁ ସୋନସୀ ଶୁଣିଲା, ''ପାଣି'' ବୋଲି । ତା'ର ଉଠିବାକୁ ଇଚ୍ଛା ହେଉ ନ ଥିଲା । ସେ ବୋଧହୁଏ ସ୍ୱପ୍ନରେ ଥିଲା ସେଥିପାଇଁ ସ୍ୱପ୍ନରେ ଉଠିପଡ଼ିଥିବ ଯେ ରଘୁବର ପ୍ରସାଦଙ୍କର ପାଣି ପିଇବାର ଅଛି । ଯେଉଁ ଆକାରରେ ସୋନସୀ ଶୋଇଥିଲା ସେହି ରକମ ଲାଖି ହୋଇଥିବା ଆକାରରେ ରଘୁବର ପ୍ରସାଦ ଥିଲେ । ଆଉ ସୋନସୀର ଆକାରଟି ରଘୁବର ପ୍ରସାଦଙ୍କ ଆକାର ସଙ୍ଗେ ବନ୍ଧା ହୋଇଥିଲା । ରଘୁବର ପ୍ରସାଦଙ୍କୁ ଖୋଲିବା ସୋନସୀ ଦ୍ୱାରା ସମ୍ଭବ ହେଉନଥିଲା । ରଘୁବର ପ୍ରସାଦଙ୍କ ସଙ୍ଗେ ବନ୍ଧା ଅବସ୍ଥାରେ ସେ ହାତକୁ ଲଟକାଇ ଅଣ୍ଡାଳି ଦେଖିଲା କୋଉଠି ରଘୁବର ପ୍ରସାଦ ପାଣିର ଢାଳ ରଖିଥିବ । ପାଣି ଢାଳ ନ ଥିଲା । ସେଇଠୁ ସେ ଚଟାଣରେ ପଡ଼ିଥିବା ଗୋଟିଏ ପିନ୍ଧିବା ପୋଷାକକୁ ଅଣ୍ଡାଳିଲା, ସେ ତା'ର ଜମା ଥିଲା । ସେ ଜାମାକୁ ଆଣି ପିନ୍ଧିବାକୁ ଚାହୁଁଥିଲା କିନ୍ତୁ ଶୋଇଗଲା ଏବଂ ତା'ର ଲଟକିଥିବା ହାତରୁ ଜାମାଟି ଆସ୍ତେ ଆସ୍ତେ ଛାଡ଼ିଗଲା ।

''ଉଠିପଡ଼ ।'' ବୋଲି ରଘୁବର ପ୍ରସାଦ କହିଲେ । ସୋନସୀ ଶୁଣିଲା 'ଉଠନା' । ରଘୁବର ପ୍ରସାଦ ଉଠିବାକୁ ଚାହୁଁଥିଲେ, ସୋନସୀର ନିଜ ଆଡୁ ଖୋଲିବାର ମନ ବି ହେଉ ନ ଥିଲା ସେତେବେଳେ ସୋନସୀ କହିଲା, ''ତୁମେ ମୋ ଉପରେ ରାଗିଛ ?''

''ମୁଁ ଆଜି କଲେଜ ଯିବିନାହିଁ ।''

''କଲେଜ ଜଲଦି ଯିବି ।'' ବୋଲି ସୋନସୀ ଶୁଣିଲା ।

''କାହିଁକି ?'' ସୋନସୀ ପଚାରିଲା ।

''ଏଇମିତି ।'' ରଘୁବର ପ୍ରସାଦ କହିଲେ ।

''ଶୁଣ ! ମୁଁ ବାପାଙ୍କର ସାଇକେଲ ନେଇ ଆସିଛି ।

କାହିଁ ? କୌତୂହଳୀ ହୋଇ ସେ ପଚାରିଲେ । ସେ ସହଳ ଉଠିଥିଲେ । ଆଲୁଅ ଜଳାଇ ଦେଇ ସେ ଦେଖିଲେ ବଖରା ଭିତରେ ସାଇକେଲ ନାହିଁ । ପଦାରେ ତ ରହିଯାଇନାହିଁ ଆଉ ! ତାଲା ବି ଲଗାଇ ନ ଥିବ । ଚୋରି ହୋଇଗଲା । ଘାବରେଇ ଯାଇ ସୋନସୀ ଉଠି ଛିଟିକିଣି ଖୋଲିକରି ବାହାରକୁ ଆସିଲା । ''ଅଛି ।'' ସେ ଗଭୀର ନିଃଶ୍ୱାସ ନେଇ କହିଲା । ସାଇକେଲରେ ତା'ର ପାଛୁଡ଼ା ଆଉ ମୁଣି ସେହିଭଳି ଟଙ୍ଗା ହୋଇଥିଲା । ରଘୁବର ପ୍ରସାଦ ସାଇକେଲକୁ ଭିତରକୁ ଘର ଭିତରକୁ ନେଇ ଆସିଲେ । ବିଜୁଳି ଆଲୁଅରେ ସେ ସାଇକେଲକୁ ସେଇଭଳି ଦେଖିଥିଲେ । ବଖରାର ବତୀ ଲିଭାଇ ଦେଇ ଦୁହେଁ ଶୋଇପଡ଼ିଲେ । ତା'ପରେ ସୋନସୀ କହିବାକୁ ଆରମ୍ଭ କଲା - ବାପା

ସାଇକେଲ ମରାମତି କରାଇଛନ୍ତି । ଛୋଟୁ କଳା ରଙ୍ଗ ଦେଇ ପେଣ୍ଟ କରାଇଥିଲା । ବାପା ଆସିଲେ ନାହିଁ, କାରଣ ଯିବା ଆସିବାରେ ଆହୁରି ଖର୍ଚ୍ଚ ହୋଇଥାନ୍ତା । ସାଇକେଲ ଉପରେ ତ ଖର୍ଚ୍ଚ ହୋଇଯାଇଛି । ଛୋଟୁର ପରୀକ୍ଷା ଥିଲା ନୋହିଲେ ସେଇ ଆସିଥାନ୍ତା । ଦୁହେଁ କଥା ହେଉ ହେଉ ଝରକା ଆଡ଼କୁ ଚାହିଁଥିଲେ । ଝରକା ପାଖରେ ଝରକାରୁ ଆସୁଥିବା ଆଲୁଅ ଓ ଚାଲିଯାଉଥିବା ଅନ୍ଧାର ମଧ୍ୟରେ ଏପରି ମନେ ହେଉଥିଲା ଯେ ହାତୀର ଶୁଣ୍ଢ ପ୍ରଶ୍ନ ଚିହ୍ନ ପରି ଉଠି ହୋଇ ରହିଛି । ସୋନସୀର ମଥା ରଘୁବର ପ୍ରସାଦଙ୍କ ବାହୁ ଉପରେ ଥିଲା । ସେ କହିଲା, ''ହାତ ବାହାର କରିନିଅ । କଷ୍ଟ ହେଉଥିବ ।'' ରଘୁବର ପ୍ରସାଦ ସୋନସୀକୁ ଉଠିବାକୁ ଦେଲେନାହିଁ । କହିଲେ, ''କଷ୍ଟ ହେଉନାହିଁ ।''

ସକାଳ ପ୍ରାୟ ଆଠଟା ବେଳେ ବିଭାଗାଧ୍ୟକ୍ଷ ସ୍କୁଟରରେ ରଘୁବର ପ୍ରସାଦଙ୍କ ଘର ଆଗ ଦେଇ ଗଲେ । ସେ ରଘୁବର ପ୍ରସାଦଙ୍କ ଘର ଆଗରେ ଗୋଟିଏ ସାଇକେଲ ଠିଆ ହୋଇଥିବାର ଦେଖିଲେ । ସେ ବିଚାରିଲେ ରଘୁବର ପ୍ରସାଦଙ୍କ ଘର ଆଗରେ କେହି ତ ଆଉ ସାଇକେଲଟିକୁ ଲାୱାରିସ କରି ଛାଡ଼ି ଦେଇ ଯାଇନାହିଁ । ସେ ଟିକେ ତରବରିଆରେ ଥିଲେ, ନୋହିଲେ ଅଟକିଥାନ୍ତେ । ଘର ଆଗର ନିମ୍ବଗଛଟି ରଘୁବର ପ୍ରସାଦଙ୍କ ଘର ଆଗରେ ଏପରି ଭାବରେ ରହିଥିଲା ଯେପରି ତାକୁ କେହି ଛାଡ଼ି ଯାଇନାହିଁ । ବିଭାଗାଧ୍ୟକ୍ଷ ନିମ୍ବଗଛ ଆଡ଼କୁ ହୁଏତ ଦୃଷ୍ଟି ଦେଇନଥିବେ ।

---

ବିନୋଦ କୁମାର ଶୁକ୍ଳଙ୍କର ଏହି ଉପନ୍ୟାସ ମଧ୍ୟରେ କୌଣସି ମହାନ୍ ଘଟଣା, କୌଣସି ବିରାଟ ସଂଘର୍ଷ, କୌଣସି ଉଦ୍ଦେଶ୍ୟ ବା ସନ୍ଦେଶ ନାହିଁ । କାରଣ ଏଥିରେ ସେହି ଜୀବନ—ଯାହା ଏ ଦେଶର, ସେହି ଜୀବନଯାତ୍ରା—ଯାହାକି ଅନ୍ୟ କିଛି ଉପଯୁକ୍ତ ଶବ୍ଦର ଅଭାବରେ ନିମ୍ନ ମଧ୍ୟବିତ୍ତ କୁହାଯାଏ, ତାହା ଏତେ ସ୍ପଷ୍ଟ ରୂପରେ ଉପସ୍ଥିତ ଅଛି ଯେ ତାହାର କୌଣସି ମଧୁର ବର୍ଣ୍ଣନାର ପ୍ରୟୋଜନ ନାହିଁ । ଏଠାରେ କୌଣସି ଖଳନାୟକ ନାହିଁ କିନ୍ତୁ ମୁଖ୍ୟ ଚରିତ୍ରମାନଙ୍କର ଅସ୍ତିତ୍ୱର ସରଳତା, ତାଙ୍କର ନିରୀହତା, ତାଙ୍କ ରହଣି, ଜୀବନଯାପନର ଏପରି ବିରଳ ବିବରଣ ମିଳେ ଯହିଁରୁ ଆପେ ଆପେ ସବୁ ଅନୁଭବ ହୋଇଯାଏ । ବିନୋଦ କୁମାର ଏହି ଜୀବନର ବହୁତ ଗଭୀର ସ୍ଥଳରେ ପହଞ୍ଚି ଦାମ୍ପତ୍ୟ, ପରିବାର, ପାଖପଡ଼ିଶା, କାମ କରିବାର ସ୍ଥାନ, ସ୍ନେହୀ ଅସମ୍ପର୍କିତମାନଙ୍କ ସଙ୍ଗେ ସମ୍ବନ୍ଧଙ୍କ ମାଧ୍ୟମରେ ଏପରି ଏକ ଅବଶ୍ୟ ଆସ୍ଥା ସ୍ଥାପିତ କରିଛନ୍ତି ଯେ ତାହା ପାଖରେ ଅନୁପସ୍ଥିତ ସମୁଦାୟ ମାନବ ବିରୋଧୀ ଶକ୍ତିମାନ କେବଳ କଦର୍ଯ୍ୟ ନୁହେଁ, ଶୂନ୍ୟଗର୍ଭ ମନେ ହେଉଛନ୍ତି । ନିମ୍ନ ମଧ୍ୟବିତ୍ତ ଭାରତୀୟ ଜୀବନରେ ଏପରି ଏକ କୁହୁକ ରହିଛି ଯାହା ଅନ୍ୟତ୍ର କାହିଁ ହେଲେ ନାହିଁ ।

୧ ଜାନୁଆରୀ ୧୯୩୭ ଦିନ ମଧ୍ୟପ୍ରଦେଶର ରାଜନାନ୍ଦଗାଓଁରେ ଜନ୍ମ ହୋଇଥିବା ଶ୍ରୀ ବିନୋଦ କୁମାର ଶୁକ୍ଳଙ୍କର କିଛି ରଚନାମାନଙ୍କର ଅନୁବାଦ ମରାଠି, ଉର୍ଦ୍ଦୁ, ମାଲାୟାଲାମ୍, ଇଂରାଜୀ ଓ ଜର୍ମାନ ଭାଷାରେ ହୋଇଛି । ବହୁ ପୁରସ୍କାରରେ ସମ୍ମାନିତ ଶ୍ରୀଯୁକ୍ତ ଶୁକ୍ଳଙ୍କୁ ମଧ୍ୟପ୍ରଦେଶ ସରକାରଙ୍କର 'ଶିଖର ସମ୍ମାନ' ୧୯୯୫ରେ ମିଳିଥିଲା । ଡିସେମ୍ବର ୧୯୯୬ରେ ସେ ଅବସର ଗ୍ରହଣ କରି ଏବେ ପୂର୍ଣ୍ଣ ସାହିତ୍ୟକର୍ମରେ ଲିପ୍ତ ଅଛନ୍ତି ।

ରମ୍ୟରଚନାକାର ଚଉଧୁରୀ ହେମକାନ୍ତ ମିଶ୍ରଙ୍କର ଓଡ଼ିଆ ଅନୁବାଦ ମୂଳରଚନାର ସ୍ୱାଦ ଆଣିଦେବାରେ ଅବଶ୍ୟ ସହାୟକ ହେବ ।

ପ୍ରଚ୍ଛଦ : ତନୁଜ ମଲ୍ଲିକ

ମୂଲ୍ୟ : ୮୦ ଟଙ୍କା

ISBN : 81-260-1545-4